# ବତିଶ ସିଂହାସନ



ଝଉଡ଼ଣା ଜଗନ୍ନାଥ କ...
— କଟକ-୨ —

ମୂଲ୍ୟ : ଏକଟଙ୍କା ପଚାଶ ପଇସା

# ବତ୍ରିଶ ସିଂହାସନ

ଲେଖକ ଓ ପ୍ରକାଶକ

ଶ୍ରୀ ଜଗନ୍ନାଥ ସିଂହ

ସର୍ଜ ସଂସ୍କରଣ

ପ୍ରାପ୍ତିସ୍ଥାନ

ଓଡ଼ିଶା ଜଗନ୍ନାଥ କମ୍ପାନି
ଶ୍ରୀ ଜଗନ୍ନାଥ ସିଂହ
ବାଲୁବଜାର ପୋ: ଚାନ୍ଦନୀଚୌକ
କଟକ

ମୂଲ୍ୟ ୧ ୧୫ ଏକଟଙ୍କା ପନ୍ଦର ପଇସା।

# ବତ୍ରିଶ ସିଂହାସନ



## ସୁଧର୍ମା ସଭାରେ ଇନ୍ଦ୍ରଙ୍କର ଗନ୍ଧର୍ବସେନ ପ୍ରତି ଶାପ

ଜୟ ଜୟ ସଦାଶିବ ଗଉରୀରମଣ । ଜୟ ଜଟାଜୂଟଧର ତ୍ରିଲୋକ ଶରଣ ॥ ଦୀନବନ୍ଧୁ କୃପାସିନ୍ଧୁ ଏକାମ୍ର ବିହାରୀ । ଭକତବତ୍ସଳ ପ୍ରଭୁ ତ୍ରିପୁର ବଇରୀ ॥ ତୁମ୍ଭ ଶ୍ରୀଚରଣେ କରେ ବିନତି ବିଶେଷ । ପୂର୍ଣ୍ଣକର ମନୋବାଞ୍ଛା ପ୍ରଭୁ ତ୍ରିଲୋକେଶ ॥ ଗାଥା ପଦ୍ୟ ରଚନାରେ ଦ୍ୱାତ୍ରିଂଶ ପୁତ୍ତଳି । ବିଷୟ ବର୍ଣ୍ଣନା ଆଶେ ବସିଅଛି ଭାଳି ॥ ଆଜ୍ଞା ଦିଅ ହେଉ ଶେଷ ନିର୍ବିଘ୍ନରେ ତାହା । ତୁମ୍ଭ ବିନା ଜଗତରେ ନାହିଁ କେହି ସାହା ॥

—ଃ୦ଃ—

ଏଥୁଅନ୍ତେ ସାଧୁଜନେ ମନ ଦେଇ ଶୁଣ । ପବିତ୍ର ଅଟଇ ଏହି କଥା ପୁରାତନ । ବତ୍ରିଶ ସିଂହାସନ ଯେ ନାମ ଯାର ଅଟେ ॥ କଥା ଛଳେ ନୀତିଶାସ୍ତ୍ର ପୂରିଅଛି ଯେତେ ॥ ସ୍ୱର୍ଗପୁରେ ଦିନକରେ ଇନ୍ଦ୍ରଙ୍କ ସଭାରେ । ନୃତ୍ୟକଲେ ଅପସରୀ ଗାନ୍ଧାର ବିଧିରେ ॥ ଦେଖି ଦେଖି ନୃତ୍ୟେ ଭୋଳ ହେଲେ ମଘବାନ । ଉପହାସ କଲା ତାଙ୍କୁ ସେ ଗନ୍ଧର୍ବସେନ ॥ ତାହା ଜାଣି ଶାପ ଦେଲେ କୋପେ ପୁରନ୍ଦର । ଏହିକ୍ଷଣି ଦୁରାତ୍ମା ତୁ ଛାଡ଼ ସ୍ୱର୍ଗପୁର ॥ ଗର୍ଦ୍ଦଭ ରୂପରେ ହୁଅ ମର୍ତ୍ତ୍ୟପୁରେ ଜାତ । ଉପହାସ ପ୍ରତିଫଳ ଭୁଞ୍ଜି ତୁ ବହୁତ । ଶାପ ଶୁଣି ମହାଭୟେ ସେ ଗନ୍ଧର୍ବସେନ । ସବିନୟେ ପାଦେ ତାଙ୍କ କଲା

ନିବେଦନ ॥ ନ ଜାଣି ମୁଁ ଅପରାଧ କଲି ତୁମ୍ଭ ପାଶ । କ୍ଷମାକର ମୋର ପ୍ରଭୁ ଏକବାର ଦେଷ ॥ ପ୍ରଭୁ ଯେବେ ଭୃତ୍ୟ ଦୋଷ କ୍ଷମା ନ କରଇ । ତାର ଆଜ୍ଞ ପରିତ୍ରାଣ ତିନିଲୋକରେ ନାହିଁ ॥ ଗନ୍ଧର୍ବର ଏ ବଚନକୁ ଶୁଣି ବଜ୍ରପାଣି । କୋପ ଶାନ୍ତ କରି ତାକୁ କହିଲେ ଏ ବାଣୀ ॥ ଆମ୍ଭର ଆଜ୍ଞାରେ ଗଧ ରୂପ ନିଶ୍ଚେ ହେବୁ । ମର୍ତ୍ତ୍ୟପୁରେ ଭଦ୍ରସେନ ରାଜ୍ୟେ ଜନମିବୁ ॥ ଦିବସରେ ଗଧ ହୋଇ ବୁଲୁଥିବୁ ତହିଁ । ଗନ୍ଧର୍ବ ହୋଇବୁ ପୁଣି ରାତ୍ର ହେଲେ ଯାଇ ॥ ବିହରିବୁ ଦେବଯାନେ ମହା ସମାରୋହେ । ଭ୍ରମିବୁ ରଜନୀ ଶେଷେ ସେହି ଦେହେ ॥ ଭଦ୍ରସେନ ଦୁହିତାକୁ ତହିଁ ବିଭା ହେବୁ । ରସ ରଙ୍ଗେ ରାତ୍ରି ସାରି ସୁଖେ କଟାଇବୁ ॥ ଯେ କାଳେ ଦଗଧ ହେବ ସେ ଗଧ ଶରୀର । ସେହି ସମୟରେ ଶାପମୁକ୍ତ ହେବ ତୋର ॥ ମର୍ତ୍ତ୍ୟପୁର ଛାଡ଼ି ପୁଣି ଆସି ସ୍ୱର୍ଗପୁରେ । ବିହରିବୁ ପୂର୍ବପରି ମହା ଆନନ୍ଦରେ ॥ ଏତେ ଭଣି ନିଜ ପୁରେ ଗଲେ ମଘବାନ । ଜନମିଲା ଗଧ ହୋଇ ସେ ଗନ୍ଧର୍ବସେନ ॥ ମର୍ତ୍ତ୍ୟେ ଭଦ୍ରସେନ ନରପତିଙ୍କ ରାଜ୍ୟରେ । ଦିନଯାକ ଭ୍ରମୁଥାଇ ପୁଷ୍କରଣୀ କୂଳେ । ରାତ୍ର ହେଲେ ନିଜ ରୂପେ କରଇ ଭ୍ରମଣ । ଏହିରୂପେ ଗଲା ବହୁ ତହିଁ କେତେ ଦିନ । ଜଗନ୍ନାଥ ସିଂହ କହେ କଲା କର୍ମଫଳ । ଭୁଞ୍ଜିଲା ଗନ୍ଧର୍ବସେନ ହୋଇଲା ବିଫଳ ॥

—:0:—

ଏହା ପରେ ଯାହା ହେଲା ଶୁଣ ବିର୍ଯ୍ୟରସ । ଗଧରୂପେ ସେ ଗନ୍ଧର୍ବ ତହିଁ କରେ ବାସ । ଅନେକ ସେ ବାଟେ ଏକ ଗରିବ ବ୍ରାହ୍ମଣ । ଭିକ୍ଷା ମାଗି ଯାଉଥିଲେ ହରି ତାଙ୍କ ନାମ ॥ ଡାକି ସେ ଗନ୍ଧର୍ବ ତାଙ୍କୁ କହିଲା ଏ ବାଣୀ । କହିବି ମୁଁ କଥାଟିଏ ଶୁଣ ଦ୍ୱିଜମଣି ॥ ଭଦ୍ରସେନ ନରପତି ନିକଟକୁ ଯିବ । ବିନାଭୟେ ତାଙ୍କୁ

ଏହି କଥାଟି କହିବ ॥ ତାଙ୍କ କନ୍ୟାଟିକୁ ମୋତେ ବିଭା କରାଇବେ । ନ କଲେ ମୋ ଯୋଗୁଁ ସର୍ବନାଶ ହିଁ ଭୋଗିବେ ॥ ଏହା ଶୁଣି ବିପ୍ରବର ତକ୍ଷଣେ ଚଳିଲା । ଭଦ୍ରସେନ ନରପତି ପାଶେ ପହଞ୍ଚିଲା ॥ ସଭାତଳେ ଠିଆ ହୋଇ କହଇ ବଚନ । ଆଶ୍ଚର୍ଯ୍ୟ ଘଟଣା ଏକ ଶୁଣ ନରରାଣ ॥ ସରସୀ ତୀରରେ ଏକ ଗଧ ଚରୁଥିଲା । ଆସୁଥିଲି ଡାକ ମୋତେ ଏହା ବଖାଣିଲା ॥ ଆଜ୍ଞା ମୋର ଶୀଘ୍ର ଯାଇ କହିବୁ ରାଜାକୁ । କନ୍ୟା ତାର ଅଛି ବିଭା ହେଉ ସେ ଆମ୍ଭଙ୍କୁ ॥ ନ କରିବ ଯେବେ ମୁହିଁ କହୁଛି ଅବଶ୍ୟ । ମୁହୂର୍ତ୍ତିକେ ରାଜ୍ୟ ତାର କରି ଦେବି ଧ୍ୱଂସ ॥ ଏହା ଶୁଣି ମହାରାଜା ପ୍ରଜ୍ୱଳିତ ହୋଇ । ବ୍ରାହ୍ମଣକୁ ତିରସ୍କାର ବହୁତ କରଇ ॥ ଅପମାନ ପାଇ ବିପ୍ର ଗଲା ବାହୁଡ଼ିଣ । ଗଧ ଆଗେ ସବୁ କଥା କରିଲା ବର୍ଣ୍ଣନ ॥ ବ୍ରାହ୍ମଣ ପାଆନ୍ତେ ସେହୁ ରାଜା ଭଦସେନ । ପାତ୍ର ମନ୍ତ୍ରୀ ଘାଇ ତାଙ୍କୁ କହିଲା ବଚନ ॥ ଦେଖ ଟିକେ ଯାଇ ପେଷି କେବଣ ସେ ଗଧ । ରାଜଦୁଲାଳୀକୁ କପାଁ କରିଅଛି ସାଧ ॥ କିବା ମାୟାରୂପୀ ଅଟେ ସେହି ନିଶାଚର । ନ ବୁଝିବା ଆମ୍ଭ ପକ୍ଷେ ନୁହେଁ ସୁବିସ୍ତର । ଏହା ଶୁଣି ଦୂତମାନେ ବେଗେଣ ଧାଇଁଲେ । ସରୋବର ତୀରେ ଯାଇଁ ଗଧକୁ ଭେଟିଲେ ॥ ରାଜଦୂତ ଦେଖି ଗଧ କୋପେ ଥରହର । ବୋଲେ ନ ଚିହ୍ନିଲା ମୋତେ ତୁମ୍ଭ ନୃପବର ॥ ମୋହ ଆଜ୍ଞା ଅବଜ୍ଞା ସେ କଲା ହୁରମତି । ଜାଣିଥାଅ ନିଶ୍ଚେ ତାର ଘଟିବ ବିପତ୍ତି ॥ ଏହା ଶୁଣି ଦୂତ ଭୟେ କଲେ ପଳାୟନ । ଗଧ ପଣ ରାଜା ଆଗେ କରିଲେ ବର୍ଣ୍ଣନ ॥ ଶୁଣି ରାଜା ମନ ମଧ୍ୟେ ହୋଇ ଆଚମ୍ବିତ । ପାତ୍ର ମନ୍ତ୍ରୀ ଘେନ ତହିଁ ଗମିଲେ ତ୍ୱରିତ ॥ ପ୍ରଶ୍ନ କଲେ କିଏ ତୁମ୍ଭେ ହେ ଗର୍ଦ୍ଦଭରାୟ । ପିତାମାତା କୁଳ ଆଦି ଦିଅ ପରିଚୟ ॥ ରାଜାବାକ୍ୟ ଶୁଣି ଗଧ ପୂର୍ବର କାହାଣୀ । ଯାହା ହୋଇଥିଲା ତାହା କହିଲା ବଖାଣି ॥ ଶୁଣ

ସବୁ ନରପତି ଆନନ୍ଦିତ ହେଲେ । ଗଧ ସନ୍ନିଧାନେ ଘାଟ କଥାଏ କହିଲେ ॥ ହେ ଗନ୍ଧର୍ବରାଜ ଆଜ ରଜନୀ ଭିତରେ । ମୋ ନଗର ଘୁରିଦଗେ ପାଚେରି ସୁନାରେ ॥ କରିପାର ଯେବେ କନ୍ୟା କରିବ ପ୍ରଦାନ । ସତ୍ୟ ସତ୍ୟ ବାଣୀ ମୋର ନହୋଇବ ଆନ ॥ ଏହା କହି ନିଜପୁରେ ଗଲେ ନରସାଇଁ । ଜଗନ୍ନାଥ ସିଂହ ଗୀତ ରସରେ ଭଣଇ ॥

---

## ରାଜଦୁହିତା ସଙ୍ଗେ ଗନ୍ଧର୍ବସେନଙ୍କ ପରିଣୟ

ଭଦ୍ରସେନ ରାଜା ମୁଖଁୁ ଏ ବଚନ ଶୁଣି । ଗଧରୂପୀ ଯୋଗଧ୍ୟାନେ ବସିଗଲା ପୁଣି ॥ ମନେ ମନେ ଇନ୍ଦ୍ରଙ୍କୁ ସେ କଲା ବହୁ ସ୍ତୁତି । ସ୍ୱର୍ଗପୁରେ ସୁରପତି ଜାଣିଲେ ଝଟତି ॥ ବିଶ୍ୱକର୍ମାଙ୍କୁ ସେ ଡାକି ଦେଲେ ଉପଦେଶ । ଭଦ୍ରସେନ ନଗରକୁ ଯିବ ହେ ଅବଶ୍ୟ ॥ ରାତି ମଧ୍ୟେ କରିଆସିବ ସୁବର୍ଣ୍ଣ ପ୍ରାଚୀର । ନ ଜାଣିବେ ନରପତି ଆଉ ନାରୀ ନର । ଆଜ୍ଞା ପାଇ ବିଶ୍ୱକର୍ମା ବେଗେ ଗଲା ଚଳି । ଭଦ୍ରସେନ କଟକରେ ଗଢିଲା ପାଚେରି ॥ ସୁବର୍ଣ୍ଣରେ ନିର୍ମିତ ସେ ଦିଶେ ଅଦଭୁତ । ହୀରା ନୀଳା ଆଦି ରତ୍ନେ ହୋଇଛି ଜଡ଼ିତ । କାର୍ଯ୍ୟ ଶେଷ କରି ସେହୁ ଗଲା ଅଲକ୍ଷିତେ । କିଛିକ୍ଷଣ ପରେ ରାତି ପାହିଲା କହିତେ ॥ ପ୍ରଭାତରୁ ନିଦ୍ରା ତେଜି ଦେଖେ ନରବର । ବେଢିଅଛି ଗଡ଼ସାକ ସୁବର୍ଣ୍ଣପ୍ରାଚୀର॥ ସିଂହଦ୍ୱାର ମନୋହର ଦିଶେ ଚତୁର୍ଦ୍ଦିଗେ । ହୀରାନୀଳା ମଣିମାଳା ଚହଁରେ ଝଟକେ ॥ ଦେଖି ମନେ ବିଚାରି ସେ କରେ ନରରାଣ । ଗଧ ନୁହେ ନିଶ୍ଚେ ଅଟେ ସେ ଗନ୍ଧର୍ବସେନ ॥ ଅନ୍ତପୁରେ ଚହିଁ ରାଜା ବେଗେଣ ମିଳିଲେ । ରାଣୀ ଆଗେ ଗଧ କଥା ବୁଝାଇ କହିଲେ । କନ୍ୟା ବିଭାଘର କଥା ଚହି କଲେ ସ୍ଥିର । ସର୍ବେବର ଷରେ ରାଜା

ତୋଳିଲେ ନବର ॥ ଶୁଭବେଳେ ଶୁଭଲଗ୍ନେ କନ୍ୟାଟିକୁ ନେଲେ । ଉତ୍ସବ କରାଇ ରଥ ଉପରେ ସମର୍ପିଲେ ॥ ଗାନ୍ଧର୍ବ ବାଦ୍ୟରେ ଉଚ୍ଚ ବଢ଼ିଲା ନିନାଦ । ସୈନ୍ୟ ସେନା ନରପତି ହୋଇଲେ ବିଦାୟ ॥ ରଥପାଶେ ରାଜକନ୍ୟା ରହିଲା ସେଠାରେ । ଅସ୍ତଗିରି ଶିରେ ଦିନନାଥ ଆରୋହିଲେ ॥ ଦିବା ଅନ୍ତେ ସେ ଗନ୍ଧର୍ବ ଧରିଲା ସ୍ୱଅଙ୍ଗ । ଅଦ୍ଭୁତେ ମୂର୍ତ୍ତିମନ୍ତ ହେଲା କି ଅନଙ୍ଗ ॥ ଅତି ଆନନ୍ଦରେ ତାଙ୍କୁ ଦେଖି ରାଜ ସୁତା । କଲା ଆଲିଙ୍ଗନ ମନୁ ଛାଡ଼ି ଘୋର ଚିନ୍ତା ॥ ନାନା କଉତୁକେ କେଳି ବଢ଼ିଲା ଅଶେଷ । ପୁଣି ରଥ ହେଲା ଯହୁଁ ରାତ୍ରହେଲା ଶେଷ ॥ କେତେଦିନ ଏହିପରି ସୁଖେ ବହିଗଲା । ଦିନୁ ଦିନ ବେନିଙ୍କର ପୀରତି ବଢ଼ିଲା । ଗନ୍ଧର୍ବଙ୍କୁ ରକ୍ଷାକର ସଙ୍କଟ୍ ଶ୍ରୀହରି । ଜଗନ୍ନାଥ ସିଂହ ଭଣେ ପଦ୍ୟବନ୍ଧ ଧରି ॥

---

## ଶକାଦିତ୍ୟଙ୍କ ଜନ୍ମ

ଏ ଉତ୍ତରେ ଶୁଣ ନରେ ହୋଇ ସ୍ଥିର ଚିତ୍ତ । କହୁଅଛି ଶକାଦିତ୍ୟ ଜନମ ଚରିତ ॥ ବିଜକେମା ସଙ୍ଗେ ସେହି ଗନ୍ଧର୍ବ ରାଜନ । ରତିବେଳେ ଜାଣି ବଞ୍ଚୁଥାଇ ନିତି ଦିନ ॥ ଦାସୀ ଏକ କେମାଙ୍କର ଥିଲା ସେହି ପୁରେ । ବିହରିଲା ସେ ଗନ୍ଧର୍ବ ସେ ଦାସୀ ସଙ୍ଗରେ ॥ ଜାଣେ ନାହିଁ ରାଜକେମା ଗୁପ୍ତ ସମାଚାର । କେତେଦିନ ପରେ ଗର୍ଭ ସଞ୍ଚରିଲା ତାର । ବାହାରିଆଡେ଼ ଏ ଖବର ପ୍ରକାଶ ପାଇଲା । ପୁତ୍ରଟିଏ ଶୁଭବେଳେ ସେହୁ ପ୍ରସବିଲା ॥ ରାଜ ଚକ୍ରବର୍ତ୍ତୀ ଚିହ୍ନ ଦେହେ ବିରାଜଇ । ନିରେଖି ତାକୁ ଆନନ୍ଦରେ ଗନ୍ଧର୍ବ ଭାଷଇ ॥ ଏହା ନାମ ଶକାଦିତ୍ୟ ହେଉ ଏ ଧରାରେ । ଫେରାଇ ରଖିବ କୀର୍ତ୍ତି ଶକ ସେ ନାମରେ ॥ ଦଶସିଂହ ବଳ ଦେହେ ବହିବ ସେ ଜାଣ । ଏହା କହି ଯତ୍ନେ ସେହୁ ପାଳଇ ନନ୍ଦନ ॥ ରାଜସୁତା ସଙ୍ଗେ କଲା ସୁଖେ ବିହ-

ଗଣ । ଏଥି ଅନନ୍ତ ଯାହା ହେଲା ଶୁଣ ସାଧୁଜନ । ରାଜକନ୍ୟା ଶୁଭଯୋଗେ ହେଲା ଗର୍ଭବତୀ । ଦିନୁ ଦିନ ଦେହେ ତାର ପ୍ରକାଶିଲା ଜ୍ୟୋତି ॥ ଏ ବାରତା ପାଇ ରାଜା ବୀର ଭଦ୍ରସେନ । ପାତ୍ର ମନ୍ତ୍ରୀ ଅମାତ୍ୟ ସଙ୍ଗତେ ଘେନିଣ ॥ ଦୁହିତାକୁ ଦେଖିବାର ଇଚ୍ଛା ମନେ କରି । ବହୁବିଧ ଉପହାର ଦ୍ରବ୍ୟମାନ ଧରି ॥ ସରୋବର ତୀରବାସେ ହୋଇଲେ ପ୍ରବେଶ । ପିଅରଙ୍କୁ ଦେଖି ଜେମା ହେଲା ହସ ହସ ॥ ଓଳଗି ହୋଇଣ କହେ ସୁମଧୁର ବାଣୀ । ଶୁଣ ତାତ ସ୍ଥିର ମନେ ଅପୂର୍ବ କାହାଣୀ ॥ ଜାମାତା ତୁମ୍ଭର ଦିନେ ଗଧ ହୋଇଥାନ୍ତି । ଅପୂର୍ବ ଗନ୍ଧର୍ବ ମୂର୍ତ୍ତି ରାତ୍ରେ ଧରନ୍ତି ॥ ଏହି ଗୃହଦ୍ୱାରେ ପଡିଥାଇ ଗଧ ଦେହ । ଆନନ୍ଦିତ ହେଲେ ଶୁଣି ନୃପ ମହାଶୟ ॥ ଡଗରକୁ ଡାକି ଏହା କହିଲେ ରାଜନ । ଆଜ ରାତ୍ରେ କରିବୁ ତୁ ଏପରି ବିଧାନ ॥ ଯେତେବେଳେ ଗଧ ଦେହ ଗନ୍ଧର୍ବ ଛାଡ଼ିବ । ସେ ଗଧକୁ ଏଣୁଠାରୁ ବାହା ଘେନିଯିବ । ଅନଳ ଲଗାଇ ନଷ୍ଟକଲେ ପୋଡ଼ି-ଦେବ ॥ ଏ କଥାଟି ଗୁପ୍ତ ହେବ କେହି ନ ଜାଣିବ ॥ ଆଜ୍ଞା ପାଇ ସେ ଡଗର ରାତ୍ରି ଜଗିଥିଲା । ଗଧ ଦେହ ଭସ୍ମ କଲା କେହି ନ ଜାଣିଲା ॥ ଗଧ ଦଗ୍ଧ ହେବା ଦେଖି ସେ ଗନ୍ଧର୍ବସେନ । ଡକାଇଲା ମହା ସମାଦରେ ନରରାଣ ॥ କହଇ ଗନ୍ଧର୍ବସେନ ଶୁଣ ନରସାଇଁ । ତୁମ୍ଭକନ୍ୟା ଗର୍ଭେ ଅଛି ସନ୍ତତି ଏକଇ ॥ ହୋଇବ ସେ ମହାଧନୁର୍ଦ୍ଧର ଧରଣୀରେ । ଶତସିଂହ ବଳ ସେହୁ ବହିବ ଶରୀରେ ॥ ଏକଛତ୍ର ରାଜତ୍ୱ ସେ କରିବ ଜଗତେ । ବିକ୍ରମଆଦିତ୍ୟ ନାମେ ଖ୍ୟାତ ହେବ ସତେ ॥ ପାଳ ତୁମ୍ଭ କନ୍ୟା ଯତ୍ନେ ଆହେ ନରପତି । ମିଳ ସ୍ୱର୍ଗପୁର ଶାପୁଁ ପାଇଲି ମୁକତି ॥ ଏତେ କହି ସେ ଗନ୍ଧର୍ବ ଶୂନ୍ୟମାର୍ଗେ ଗଲା । ରାଜନନ୍ଦିନୀର ମନେ ଗୁରୁ ଚିନ୍ତା ହେଲା ॥ ଗନ୍ଧର୍ବର ଶାପଫଳ ହେଲା ସମାପତି । ଜଗନ୍ନାଥ ସିଂହ କହେ ସ୍ମରି ଉମାପତି ॥

---

## ବିକ୍ରମାଦିତ୍ୟଙ୍କର ଜନ୍ମ ଓ ରାଜକନ୍ୟାର ସ୍ୱର୍ଗାରୋହଣ

ଏଥିଅନ୍ତେ ବିଚାରଇ ରାଜା ଭଦ୍ରସେନ । ଗନ୍ଧର୍ବର ଔରସ୍ୟ ପୁତ୍ର ଲଭିଲେ ଜନମ ॥ ସର୍ବନାଶ କରି ଦେବ ନିଶ୍ଚୟ ସେ ମୋର । ରାଜ୍ୟ ନେଇଯିବ ଖଟାଇଣ ବାହୁ ବଳ ॥ ଏବେ ଭାବ ଦୁଆରୀଙ୍କ ନିକଟେ ଡକାଇ । ଜଗିଥିବୁ ଏ କନ୍ୟାକୁ ଆକଟେ କହଇ ॥ କୁମର ଜନ୍ମିଲେ ମୋତେ କହିବୁ ତୁରିତେ । ଏତେ କହି ନରପତି ଗଲେ ଇଚ୍ଛାମତେ ପିତାର ବିଚାର ଜାଣି ଗନ୍ଧର୍ବ ଦୁହିତା । ମନ ମଧ୍ୟେ ବାରମ୍ବାର କଲା ଘୋର ଚିନ୍ତା ॥ ବିଚାରଇ ଥିଲା ପୂର୍ବେ ଦୁଷ୍ଟ କଂସ ଦୈତ୍ୟ । ବନ୍ଦୀକରି ଭଗିନୀକୁ ରଖିଲା ତୁରିତ । ଅନିମିତ୍ତେ ଛଅ ପୁତ୍ର ତାର କଲା ନାଶ । ସ୍ୱାମୀ ଥିବା ଯୋଗୁଁ କେବେ ନ ଛାଡ଼ଇ ଆଶ ॥ ଭାଗ୍ୟବଳେ ପୁଣି ତାର କୃଷ୍ଣ ଜନମିଲେ । ରୋଷେ ବଢ଼ି କଂସାସୁର ଜୀବନ ନାଶିଲେ । ପିତା ମୋର ଛାଡ଼ି ମୋତେ ଗଲେ ସ୍ୱର୍ଗପୁର । କପରି ବଞ୍ଚିବ ପୁତ୍ର ହୋଇଲେ ଅନ୍ତର ॥ ଏହାଭାବି ସେହି କନ୍ୟା ମୁଷଳଟେ ଆଣି । ବେନି କରେ ଧରି ଗର୍ଭେ ପିଟିଲାକ ପୁଣି । ମୁଷଳ ବଜାନ୍ତେ ରାଜକନ୍ୟା ପ୍ରାଣ ଗଲା । ପୁତ୍ର ଗୋଟି ନିରାପଦେ ଜନମ ଲଭିଲା ॥ ତାହା ଦେଖି ଦ୍ୱାରପାଳ ରାଜା ପାଶେ ଧାଇଁ । ଦେଖିଲା ସନ୍ଦେଶ ସବୁ ଦେଲାକ ଜଣାଇ ॥ ତୁମ୍ଭ ସୁତା ଏକ ପୁତ୍ର କରି ଆଜି ଜାତ । ପଡ଼ିଅଛି ଭୂମିପୃଷ୍ଠେ ହରାଇ ଜୀବତ ॥ ଏହା ଶୁଣି ଭଦ୍ରସେନ ଶୀଘ୍ରେ ଗଲା ଚଳି । କନ୍ୟା ମୃତ୍ୟୁ ଦେଖି ରାଜା ଛାଡ଼ିଲା ବୋବାଳି ॥ ପୁତ୍ରଗୋଟି ରାଜା ଚକ୍ଷୁଁ ନିରୋପି ଦେଖିଲା । ରାଜଚିହ୍ନ ବିରାଜିତ ତେଜ ଅନର୍ଗଳା ॥ ଘେନାଇ ସେ କୁମରକୁ ନିଜେ ଯାଇ ପୁରେ । ସମର୍ପିଲା ରାଣୀ ପାଶେ ଆନନ୍ଦ ମନରେ ॥ ପୁତ୍ରଟି ଆମ୍ଭର ବୋଲି ରାଣୀ ଆଗେ କହି ଦଗଧ କଲା କନ୍ୟା ଶବ ଅନଳେ ପକାଇ ॥ ରାଣୀ ସେହି କୁମରକୁ ସନ୍ତାନ ଭାବରେ ।

ପାଳୁଥାନ୍ତି ପ୍ରତି ନିତ୍ୟ ମହା ଆନନ୍ଦରେ ॥ ପୁରୋହିତ ଡକାଇଣ ରାଜା ଯଥାକୃତ୍ୟ । ବିଧିକରି ନାମ ଦେଲେ ବିକ୍ରମ ଆଦିତ୍ୟ ॥ ଯଥାକାଳେ ବିଦ୍ୟାଶିକ୍ଷା କୁମର କରଇ । ଜ୍ୟେଷ୍ଠ ଭାଇ ଶକାଦିତ୍ୟ ସଙ୍ଗେ ତାର ଥାଇ ॥ କହେ ଜଗନ୍ନାଥ ପ୍ରଭୁ ରଖିବେ ଯାହାକୁ । କେ ଅଛି ଜଗତ ମଧ୍ୟେ ମାରିବ ତାହାକୁ ॥

---

## ବିକ୍ରମାଦିତ୍ୟଙ୍କୁ ରାଜ୍ୟରୁ ବାହାର କରାଇବା ଲାଗି ତିଲୋତ୍ତମା କଳ୍ପନା

ଏଥୁଅନ୍ତେ ଭାଇ ଦୁହେଁ ଏକମେଳ ହୋଇ । ଆନନ୍ଦରେ ଖେଳୁଥାନ୍ତି ସ୍ନେହଭାବ ବହି ॥ ବେଦ ବିଦ୍ୟା ଧନୁର୍ବେଦ ଅସ୍ତ୍ର ଶସ୍ତ୍ରମାନ । ଶିକ୍ଷା କରି ବେନିଭାଇ ହୋଇଲେ ନିପୁଣ ॥ କାଳକ୍ରମେ ଶକାଦିତ୍ୟ ଯୌବନ ପାଇଲେ । ତାହା ଦେଖି ଭଦ୍ରସେନ ଆନନ୍ଦିତ ହେଲେ ॥ କନ୍ୟା ଖୋଜିବାର ଲାଗି ପଠାଇଲେ ଦୂତ । କୋଶଳ ଦେଶରେ ଥିବା ପାଇଲେ ତଦନ୍ତ ॥ ରୂପ ଗୁଣ ଲବଣ୍ୟରେ ଅଟେ ଅନୁପମା । ଏଣୁ ତାର ନାମ ହୋଇଥିଲା ତିଳୋତ୍ତମା । ସେ କନ୍ୟାକୁ ଶକାଦିତ୍ୟ ସଙ୍ଗେ ବିଭାକଲା । ଏହିପରି କେତେଦିନ ବିତି ଚାଲିଗଲା ॥ ଦିନେ ବିଚାରଇ ମନେ ରାଜା ଭଦ୍ରସେନ । ଶକାଦିତ୍ୟେ ସମର୍ପିବି ରାଜ ସିଂହାସନ ॥ ଡକାଇଲା ସବୁ ପାତ୍ରମନ୍ତ୍ରୀ ଅମାନାତ୍ୟ । ଶକାଦିତ୍ୟ ଶିରେ ଟେକାଇଲା ରାଜଛତ୍ର ॥ ବାନପ୍ରସ୍ଥ ଆଶ୍ରମକୁ ଗଲେ ଭଦ୍ରସେନ ଏଥୁଅନ୍ତେ ଯାହା ହେଲା କହୁଅଛି ଶୁଣ ॥ ତିଳୋତ୍ତମା ରୂପେ ଶକାଦିତ୍ୟ ମୁଗ୍ଧ ହୋଇ । ସବୁବେଳେ କ୍ରୀଡ଼ା କରେ ଅନ୍ତଃପୁରେ ଥାଇ ॥ ରାଜ୍ୟଦୋଷ ହାନି ଲାଭ କିଛି ନ ବୁଝିଲା । ଅରାଜକ ପୃଥ୍ୱୀ ପରି ଦେଶ ହୋଇଗଲା ॥ ପାତ୍ର ମନ୍ତ୍ରୀ ପ୍ରଜାଗଣ ବିରସ ହୋଇଲେ । କେତେ ମଧ୍ୟ ଦେଶ ଛାଡ଼ି ଅନ୍ୟ ଦେଶେ ଗଲେ ॥ ପ୍ରଜାଙ୍କ ଦୁଃଖ

ନ ସନ୍ତ ବିକ୍ରମ ଆଦିତ୍ୟ । ଅନ୍ତଃପୁର ମଧ୍ୟେ ଯାଇ ହେଲେ ଉପସ୍ଥିତ ॥ ଭାଇ ଆଗେ ରାଜ୍ୟ ନାଶ ବିଷୟ ବର୍ଣ୍ଣିଲେ । ତାହା ଶୁଣି ଶକାଦିତ୍ୟ ଲଜ୍ଜିତ ହୋଇଲେ ॥ ଅନ୍ତଃପୁର ଗୃହ ସେହୁ ତତକ୍ଷଣେ ଗଲେ । ରାଜନୀତି ଅନୁରୂପେ ଚରିତ୍ର ପାଳିଲେ ॥ ତିଲୋତ୍ତମା ଏହା ଦେଖି କୋପ ମାନସରେ । ଶଯ୍ୟା ଛାଡ଼ି ଭୂମି ପରେ ନୀରବେ ଶୋଇଲେ ॥ ରାଜ୍ୟେଶ୍ୱର ବୁଦ୍ଧି ଶକାଦିତ୍ୟ ନରପତି । ଅନ୍ତଃପୁରେ ପହଞ୍ଚିଲେ ପ୍ରବେଶନ୍ତେ ରାତି । ପ୍ରିୟବତୀ ତିଲୋତ୍ତମା ଭୂମିରେ ଶୟନ । ଦେଖି ତାକୁ ପଚାରନ୍ତି ମଧୁର ବଚନ ॥ ଆଗୋ ପ୍ରିୟେ କରିଅଛ ମାନ କି କାରଣେ । କହ ମୋର ଆଗେ ତାହା ନ ରଖି ଗୋପନେ ॥ ଯାହା ତୋର ପ୍ରିୟ ହେବ ନିଶ୍ଚେ କରିବଇ ସତ୍ୟକରି କହୁଅଛୁ ଧର୍ମକୁ ଅନାଇଁ । ଶକାଦିତ୍ୟ ସତ୍ୟବାଣୀ ତିଲୋତ୍ତମା ଶୁଣି । ଛେଡ଼ିଲା ଧରଣୀ ଆନନ୍ଦରେ ସେହିକ୍ଷଣି । କହିଲା ହେନାଥ ଶୁଣ ମୋହର ବଚନ । ବିକ୍ରମାଦିତ୍ୟଙ୍କୁ ରାଜ୍ୟୁ କର ନିର୍ବାସନ ॥ ସେହୁ ଥିଲେ ଜାଣ ମୋର ଆଶା ନାହିଁ ପ୍ରାଣେ । ହୀରାକଣୀ ଖାଇ ନିଶ୍ଚେ ବରିବି ମରଣେ ॥ ଏହା ଶୁଣି ଶକାଦିତ୍ୟ କିଛି ନ ବୁଝିଲେ । ବିକ୍ରମାଦିତ୍ୟଙ୍କୁ ରାଜ୍ୟୁ ବାହାର କରିଲେ ॥ ଜଗନ୍ନାଥ ସିଂହ କହେ ନାରୀବଶ ଯେହୁ । ତାର ଅବା ହିତାହିତ ଜ୍ଞାନ ହେବ କାହୁଁ ॥

———

## ବିକ୍ରମାଦିତ୍ୟଙ୍କର ବନଗମନ ଓ ବ୍ରାହ୍ମଣର ଫଳଲାଭ

ବିକ୍ରମ ଆଦିତ୍ୟ ଆଜ୍ଞା ମାଇ ଭାଇଙ୍କର । ମନରେ ନବହି ଖେଦ ଗଲେ ଦେଶାନ୍ତର ॥ ଏକ ଧନୀ ସୌଦାଗର ଥିଲା ସେ ଦେଶରେ । ବିକ୍ରମ ସହିତ ଯାଇ ରହିଲେ ତା ଘରେ ॥ ଏଥିଅନ୍ତେ କଥା ରସଶୁଣ ଆହେ ନରେ । ରହିଲେ ସେଦିନୁ ଶକାଦିତ୍ୟ ଅନ୍ତଃପୁରେ।।ପ୍ରିୟବତୀ

ତଲୋତ୍ତମା ସଙ୍ଗେ ରତି ରତି । ରାଜ୍ୟ ରାଷ୍ଟ୍ରକଥା ଆଉ ନ ବୁଝିଲେ କିଛି । ସେ ଦେଶରେ ବିପ୍ର ଥିଲା ଯଜ୍ଞଦତ୍ତ ନାମେ । ଭବାନୀଙ୍କି ସେବାକରି ମନ୍ତ୍ରସିଦ୍ଧି ଜାଣେ ॥ ଭଗବତୀ ଦେଲେ ତାଙ୍କୁ ସନ୍ତୋଷରେ ବର । ଏହି ଫଳଗୋଟି ନିଅ ଆହେ ଦ୍ୱିଜବର ॥ ଏ ଫଳ ଖାଇଲେ ନିଶ୍ଚେ ହୋଇବ ଅମର । କ୍ଷୁଧା ତୃଷ୍ଣା ରୋଗ ବ୍ୟାଧି ଭୟ ହେବ ଦୂର ॥ ଏହା କହି ଭଗବତୀ ଅନ୍ତର୍ଧାନ ହେଲେ । ଫଳଘେନି ନିଜ ଗୃହେ ବ୍ରାହ୍ମଣ ମିଳିଲେ ॥ ପତ୍ନୀ ଆଗେ ସବୁ କଥା ବିସ୍ତାରି କହିଲେ । ଭଗବତୀଙ୍କର ଯାହା ଆଜ୍ଞା ପାଇଥିଲେ ॥ ଶୁଣିଣ ବ୍ରାହ୍ମଣୀ ତହୁଁ କହଇ ଏ ଗିର । ଉଚିତ ନୁହଇ ତୁମ୍ଭେ ଫଳ ଖାଇବାର ॥ ନୃପତିଙ୍କୁ ଦିଅ ନେଇ ଖାଆନ୍ତୁ ସେ ଫଳ । ଅମର ସେ ହେଲେ ହେବ ଦେଶର ମଙ୍ଗଳ ॥ ଚିରକାଳ ବସି ସେହୁ ରାଜ୍ୟକୁ ପାଳିବେ । ସୁଖ ଶାନ୍ତି ସବୁବେଳେ ପ୍ରଜାଏ ଲଭିବେ ॥ ଏହା ଶୁଣି ଫଳଟିକୁ ଘେନି ବିପ୍ରବର । ପ୍ରବେଶ ହୋଇଲେ ଯାଇ ରାଜାର ନଗର ॥ ଫଳ ଦେଇ ଶକାଦିତ୍ୟ ବିଶ୍ୱାସେ କହିଲେ । ଆଜ୍ଞା ଦେଇଥିଲେ ଭଗବତୀ ଯେ ପ୍ରକାରେ । ମେଲାଣି ହୋଇଣ ବିପ୍ର ସ୍ୱ ଗୃହେ ଫେରିଲେ । ଶକାଦିତ୍ୟ ଫଳ ନେଇ ରାଣୀ କରେ ଦେଲେ ॥ ତହିଁର କାରଣସବୁ କହିଲେ ବୁଝାଇ । ଯେଉଁରୂପେ ଯଜ୍ଞଦତ୍ତ ପାଇଥିଲେ କହି ॥ ମିର ଖୋର ନାମେ ଥିଲା ଏକ ଘୋଡ଼ାଘାସୀ । ରାଣୀଙ୍କର ଅଟେ ସେହି ଅତିବ ବିଶ୍ୱାସୀ ॥ ପ୍ରେମ ଭାବେ ଥିବା ଯୋଗୁଁ ରାଣୀ ସେହି ଫଳ । ଦେଇ ତାଙ୍କୁ ବୁଝାଇଲେ କାରଣ ସକଳ ॥ ବେଶ୍ୟାସଙ୍ଗେ କରିଥାଏ ମିର ଖୋର ପ୍ରୀତି । ଫଳଗୋଟି ନେଇ ତାଙ୍କୁ ଦେଲାକ ତଡ଼ିତ ॥ ସେ ଫଳର ଗୁଣ ତାଙ୍କୁ ବିସ୍ତାରି କହିଲା । ତାହା ଶୁଣି ଲକ୍ଷହୀରା ମନରେ ଭାବିଲା । ମୋର ଯୋଗ୍ୟଫଳ ଏହୁ ଯୁକତେ ନୁହଇ । ସମର୍ପିବି ରାଜାଙ୍କର ହସ୍ତେ ଏହା ନେଇ । ଏହା ଭାବି ଫଳ ନେଇ ନୃପ ପାଶେ

ଗଲ । ଫଳ ଗୁଣ କହି ରାଜାକରେ ସମର୍ପିଲ ॥ ଶକାଦିତ୍ୟ ବେଶ୍ୟା-ଠାରୁ ଫଳକୁ ଲଭିଲେ । ମୁଣ ଶୁଣି ତିଳୋତ୍ତମା ମସ୍ତକ ଝୁଣ୍ଟିଲେ । କହେ ଜଗନ୍ନାଥ ଏ ତ ଅପୂର୍ବ ଚରିତ । ବ୍ରହ୍ମା ଜାଣି ନ ପାରନ୍ତି ନାରୀଙ୍କ ଚରିତ ।

---

## ବିକ୍ରମାଦିତ୍ୟଙ୍କ ଦ୍ୱାରା ଶକାଦିତ୍ୟ ବଧ

ମନେ ବିଚାରନ୍ତି ଫଳ ଧରି ଶକାଦିତ୍ୟ । ଆମେ ରାଣୀ ହୃଦେ ମୁହିଁ ଥାଉ ଅନୁରକ୍ତ । ଦାସୀ ହୀନଜାତି ରାଣୀ ଭୋଗେ ନାହିଁ ତୃପ୍ତି । ବେଶ୍ୟା ସଙ୍ଗେ ତାର ପୁଣି ଅଛଇ ପୀରତି ॥ ଏ କାରଣୁ ମୁହିଁ ଧିକ ଧିକ ସେହୁ ରାଣୀ । ଧିକ ଯୋଡ଼ାବାସୀ ଧିକ ମଦନକୁ ଭଣି ॥ ପଞ୍ଚ-ଦତ୍ତ ବିପ୍ର ଫଳ ପାଇଥିଲ କଷ୍ଟେ ॥ ଧିକ ସେହୁ ସେ ଫଳକୁ ଦେଲା ଯାହା ମୋତେ ॥ ଫଳ ଗୋଟି ଲୁଚାଇଣ ଧରି ନିଜ କରେ । ପ୍ରବେଶ ହୋଇଲେ ରାଜା ରାଣୀଙ୍କ ପାଖରେ ॥ କହିଲେ ଗୋ ପ୍ରିୟେ ଯେଉଁ ଫଳ ମୁଁ ତୁମ୍ଭଙ୍କୁ । ଦେଇଥିଲି ଦିଅ ଏବେ ଖାଇବି ମୁଁ ତାକୁ ॥ ଏହା ଶୁଣି ରାଣୀ ହସି କହେ ମୃଦୁବାଣୀ । ଖାଇଅଛୁ ମେ ଫଳକୁ ଦେବି କାହୁଁ ଆଣି ॥ ଶୁଣି ଶକାଦିତ୍ୟ ହେଲେ କ୍ରୋଧେ କମ୍ପମାନ । ଦେଖାଇଲେ ରାଣୀ ଆଗେ ଫଳକୁ କାଢ଼ିଣ ॥ ଭତ୍ସିନା କରିଣ ତାକୁ ନାକ କାଟି ଦେଲେ । ବନସ୍ତେ ଛାଡ଼ିଲେ ଚୂନ କଳା ଦେଇ ଗାଲେ ॥ ତହିଁପରେ ଶକାଦିତ୍ୟ ବିଚାରିଲେ ମନେ । ମୁଁ ଯୋଗୁଁ ଭାଇକି ଛାଡ଼ିଦେଲି ଅକାରଣେ ॥ ଏତେ ଭାଳି ସେହିକ୍ଷଣି ଦୂତକୁ ପଠାଇ । ବିକ୍ରମାଦିତ୍ୟଙ୍କୁ ବେଗେ ଆଣିଲେ ଖୋଜାଇ ॥ ବେନିଭାଇ ମିଳି ରାଜ୍ୟ ବୁଝାସୁଝା କଲେ । ପୂର୍ବଠାରୁ ବଳି ସ୍ନେହେ ପରଜା ପାଳିଲେ ॥ କେତେକାଳ କଲାପରେ ସୁଖେ ସେ ରାଜତ୍ୱ । ଦିନେ ପଶାକାଠି ଧରି ଗଲା ଶକାଦିତ୍ୟ ॥ ଡାକିଲା ସେ ବିକ୍ରମଙ୍କୁ ଖେଳିବାର ପାଇଁ ।

କହିଲେ ବକ୍ରମାଦିତ୍ୟ ଯୁକତି ନୁହଇ ॥ ପଶା ଖେଳ ନଳ ରଜା ପୁଣି ଯୁଧିଷ୍ଠିର । ରାଜ୍ୟଧନ ହାରି ହୋଇଥିଲେ ବନଚର ॥ ଶୁଣିକରି ଶଳାଦିତ୍ୟ ପୁଣି ହିଁ ଡାକଲେ । ବକ୍ରମ ଆଦିତ୍ୟ ସଙ୍ଗେ ଖେଳ ଆରମ୍ଭିଲେ ॥ ଖେଳୁଖେଳୁ ଉତପାତ ହେଲେ ଭାଇଦୁଇ । ବକ୍ରମ ଆଦିତ୍ୟ ତହୁଁ ପଶାକାଠି ନେଇ ॥ ଅତି ଆଣ୍ଟେ ଶଳାଦିତ୍ୟ ମୁଖେ ପ୍ରହାରନ୍ତେ । ଶଳାଦିତ୍ୟ ପ୍ରାଣତ୍ୟାଗ କଲେ ସେହି ଘାତେ ॥ ଭାଇକ ବକ୍ରମ ମାରି ବସୁରନ୍ତି ଶୋକେ । ମହାପାପ ଅରଜିଲି ଯିବି କୁମ୍ଭୀପାକେ ॥ ପାପ କଲେ ପ୍ରାୟଶ୍ଚିତ୍ତ ଶାସ୍ତ୍ର ଅଛି କହି । ପୁଣ୍ୟକ୍ଷେତ୍ରେ ଜପତପ ଯାଇ କରିବଇଁ ॥ ଏହିପରି ମନ ମଧ୍ୟେ ଭାବି ଅବରତ । ପଳାଇଲେ ରାଜ୍ୟ ଛାଡ଼ି ବକ୍ରମ ଆଦିତ୍ୟ ॥ ନାନା ଉତପାତ ହେଲା ଉଜ୍ଜ୍ୱଳ ନଗରେ । ଦାନ ଧର୍ମ ଦଣ୍ଡ ମାନ୍ତି ସବୁ ଗଲା ଦୂରେ ॥ ଅପାଳକେ ପ୍ରଜାଗଣ ହେଲେ ଛାରଖାର । କେତେ ପୁଣି ପଳାଇଲେ ଦୂର ଦେଶାନ୍ତର । ମନେ ମନେ ଜଗନ୍ନାଥ ହିଂହ ବସୁରଇ । ଯୋଗଥିବା କଥା ଗୋଟି ଅବଶ୍ୟ ଘଟଇ ।

---

## ବକ୍ରମାଦିତ୍ୟଙ୍କ ତୀର୍ଥଭ୍ରମଣ, ଅସୁରୀର ଉତ୍ପାତ

ଏଥୁଅନ୍ତେ ଯାହା ହେଲା ଶୁଣ ଆହେ ନରେ । ଉତପାତ ଜନମିଲା ଉଜ୍ଜ୍ୱଳ ନଗରେ । ପରଜାଏ ରହିଥାନ୍ତି ମହାଭୟେ ଡ଼ରି । ଅରାଜକ ଦେଖି ଆସି ଏକଇ ଅସୁରୀ ॥ ରାଜ୍ୟ ମଧ୍ୟେ ପଶି କରେ ନାନା ଉପଦ୍ରବ । ସମସ୍ୟା ପୂରଣ ସର୍ବ ମଧ୍ୟେ ପରୀକ୍ଷିବ ॥ ନାନା ପରକାରେ ରୂପ ଧରି ଦେଶେ ବୁଲେ । ହାତି ଘୋଡ଼ା ବାଘ ହୋଇ ପ୍ରଜାଙ୍କୁ ସଂହାରେ ॥ ଏହା ଦେଖି ପ୍ରଜାଗଣ ହୋଇଣ ବକଳ । ସଭାକଲେ ସବୁ ଲୋକ ଥାଏ ହୋଇ ଠୁଳ । ସ୍ଥିର କଲେ ନ ଥିବାରୁ ଦେଶରେ

ରାଜନ । ଏ ରାକ୍ଷସୀ ପଣି କଲା ବହୁତ ବିପନ୍ନ ॥ ଆଜଠାରୁ ପାଳି କରି ଆମ୍ଭେ ଜଣେ ଜଣେ । ରାଜା ହେବା ଶୁଣିଥାଅ ସର୍ବେ ଧନେ ଧନେ ॥ ଭାଗ୍ୟବଳେ ସମସ୍ୟା ଯେ କରିବ ପୂରଣ । ଚିର-କାଳ ସ୍ଥାୟୀଭାବେ ରାଜା ହେବ ଜାଣ ॥ ଯାହା ଘରେ ଯେଉଁ ଦିନ ପାଳି ପଡ଼ୁଥାଏ । ଜଣେ ଆସି ତାହା ଘରୁ ନରପତି ହୋଏ । ରାତ୍ରି-କାଳେ ସେହିଦିନ ଆସଇ ରାକ୍ଷସୀ । ନ ପାଇଲେ ସମସ୍ୟା ସେ ଖାଏ ହୋଇ ଖୁସି ॥ ଯେବଣ ଘଟଣା ହେଲା ଏଥୁଅନ୍ତେ ଶୁଣ । ତୀର୍ଥାଟନେ ଯାଇଥିଲେ ବିକ୍ରମ ରାଜନ ॥ ବୁଲି ନାନା ପୁଣ୍ୟ ତୀର୍ଥ ମିଳିଲେ କେଦାରେ । ଦେଖି ତାଙ୍କ ଭକ୍ତି ହର ସନ୍ତୋଷେ କହିଲେ ॥ ବର ମାଗ ନୃପତି ହେ ଯାହା ତୁମ୍ଭ ଇଚ୍ଛା । ଲଭିଲୁ ସନ୍ତୋଷ ପୂରାଇବୁ ମନୋବାଞ୍ଛା ॥ ଶୁଣି ନରପତି କହେ ଯୋଡ଼ି ଦେନି କର । ନୋହିବେଟି ସମ ମୋର ଦେବାସୁର ନର । ଅଷ୍ଟାଦଶ ବିଦ୍ୟାରେ ମୁଁ ହୋଇବି ନିପୁଣ । ବିଚାରନ୍ତେ ସମସ୍ୟା ମୁଁ କହିବି ତକ୍ଷଣ ॥ ଦୀର୍ଘଜୀବୀ ହୋଇ ମୁହିଁ କରିବି ରାଜତ୍ୱ । ମନ୍ତ୍ର ଅର୍ଥ ଗୂଢ଼ ନ୍ୟାୟ ଜାଣିବି ଉଚିତ । ଏହି ବର ଦିଅ ମୋତେ ଆହେ ତ୍ରିଲୋଚନ । କରିଛି ଆଶ୍ରୟ ଏକା ତୁମରି ଚରଣ ॥ ତଥାସ୍ତୁ କହିଣ ଶିବ ହେଲେ ଅନ୍ତର୍ଦ୍ଧାନ ॥ ଏଥୁ ଅନ୍ତେ ଯାହା ହେଲା ମନ ଦେଇ ଶୁଣ ॥ ବିକ୍ରମ ସେଠାରୁ ଚଳିଗଲେ ବର ପାଇ ॥ ଭେଟିଲେ ଶ୍ରୀ ଜଗନ୍ନାଥେ କ୍ରମେ କ୍ରମେ ଯାଇ । ବନ୍ଦାପନା ସାରି ଚତୁର୍ଦ୍ଧା ବାହୁଡ଼ିବା ବେଳେ । ଭେଟିଲେ ସେ ବଶିଷ୍ଠଙ୍କୁ ତହିଁ ଭାଗ୍ୟଫଳେ ॥ ରାକ୍ଷସ ବିଦ୍ୟାକୁ ତାଙ୍କଠାରୁ ଶିକ୍ଷା କଲେ । ଫେରିକରି ସେଠାରୁ ରାଜ୍ୟକୁ ଆସିଲେ ॥ ଯାଉ ଯାଉ ବାଟେ ଏକ ତଟିନୀ ତୀରରେ । ପହୁଞ୍ଚନ୍ତେ ରାତ୍ରିହେଲା ରହିଲେ ସେଠାରେ । ସେହି ନଦୀସ୍ରୋତେ ଭାସୁଥିଲା ଏକ ଶବ । ଦେଖିଣ ଶୃଗାଳ ତାକୁ ଉଚ୍ଚେ ଦେଲା ରବ ॥ କେ ଅଛ ହୋ ଏ ଶବକୁ

ସାହସେ ଧରିବ । ଦୁଇବୋଝ ରତ୍ନ ଅଛି ତାହାଠାରେ ନେବ ।
ରତ୍ନନେଇ ସେ ଶବକୁ ଛାଡ଼କରି ଗଲେ । ତାକୁ ଖାଇ ମୋର ଆତ୍ମା
ତୋଷ ହେବ ଭଲେ ॥ ବିକ୍ରମ ଆଦିତ୍ୟ ସଦାଶିବଙ୍କର ବରେ । ପଶୁ
ପକ୍ଷୀ କୀଟଙ୍କର ଭାଷା ବୁଝୁଥିଲେ । ନଦୀରେ ପଶିକରି ସେହି ଶବକୁ
ଧଇଲେ । ରତ୍ନ ନେଇ ସେଠାବରେ ଶବ ଫିଙ୍ଗିଦେଲେ ॥ ହରଷ
ହୋଇଣ ଯାଇ ଖାଇଲା ଶୃଗାଳ । ସେ ଉତ୍ତରେ ଚଳିଗଲେ ବିକ୍ରମ
ନୃପାଳ ॥ ନିଜର ରାଜ୍ୟରେ ଯାଇ ପ୍ରବେଶ ହୋଇଲେ । ଜଗନ୍ନାଥ
ସିଂହ ତାହା ଗୀତରେ ଗାଇଲେ ।

---

## ବିକ୍ରମାଦିତ୍ୟଙ୍କର ପୁନର୍ବାର ରାଜ୍ୟଭାର ଗ୍ରହଣ

ତୀର୍ଥଯାତ୍ରୀ ବେଶରେ ସେ ବିକ୍ରମ ନରେଶ । ଉଜ୍ଜ୍ୱଳ ନଗରେ
ପୁଣି ହେଲେ ପରବେଶ ॥ ଦେଖିଲେ ସେ ଦେଶ ସାରା ହୋଇ
ଛାରଖାର । ଭାଙ୍ଗି ଯାଉଅଛି ଯେତେ ଦେବତା ମନ୍ଦିର ॥ ପ୍ରଜା-
ମାନେ ବନକରେ ତହିଁ ବାସ କରି । ରହିଛନ୍ତି ମୃତପ୍ରାୟ ରାକ୍ଷସ କି
ଡରି ॥ ଏହା ଦେଖି ପଚାରିଲେ ବିକ୍ରମ ନରେଶ । କାହିଁପାଇଁ
ପରଜାଏ ହେଉଛନ୍ତି ଅତାଶ । ତାହାଶୁଣି ଏକ ବିପ୍ର କହେ ତାଙ୍କୁ
ବାଣୀ । ରହୁଛି ନଗରେ ଆସି ଏକ ରାକ୍ଷସୁଣୀ ॥ ବିକ୍ରମ ଆଦିତ୍ୟ
ରାଜା ପୂର୍ବେ ତହିଁଥିଲେ । ଭ୍ରାତୃବଧ କରି ସେହି ତୀର୍ଥଯାତ୍ରୀ ହେଲେ ।
ଅରାଜକ ରାଜ୍ୟ ଦେଖି ରାକ୍ଷସୀ ଅଇଲା । ଘୋର ଉପଦ୍ରବ କରି
ପ୍ରଜାଙ୍କୁ ଖାଇଲା ॥ ଭୟେ ତାର ପ୍ରଜାଗଣ କରିଣ ବିଚାର । ଜଣେ
ଜଣେ ପ୍ରତିଦିନ ହେଲେ ନରବର ॥ ଯେ ତୋଷିବ ରାକ୍ଷସୀକୁ
ରାଜତ୍ୱ ପାଇବ । ନୋହିଲେ ସେଦିନ ତାକୁ ରାକ୍ଷସୀ ଖାଇବ ।
ସେହିପରି ପାଳ କରି ଜଣେ ରାଜା ହୁଏ । ସମସ୍ୟା ନ ପାଇ ତାକୁ
ରାକ୍ଷସୁଣୀ ଖାଏ । ପାଳାକ୍ରମେ ଏହିପରି ଯେତେରାଜା ହେଲେ । ତା

କହନ୍ତି ଜଣେ କେହି ବାହୁଡ଼ି ନଇଲେ । ଦଇବରେ ଆଜ ପାଳି
ପଡ଼ିଛି ମୋହର । ନିଶ୍ଚୟ କରିବ ଆଜ ମୋତେ ସେ ଆହାର ॥ ଏହା
ଶୁଣି ମନମଧ୍ୟେ ବିଚାରିଲେ ନୃପେ । ମୋ ଯୋଗୁ ସିନା ଏ ଦୁଃଖ
ପାଇଲେ ପ୍ରଜାଏ ॥ ନିଜ ନାମ ଗୁପ୍ତ ରଖି ବିପ୍ରକୁ କହିଲେ । ତୁମ୍ଭ-
ପାଇଁ ଆଜ ମୁହିଁ ରାଜା ହେବି ଭଲେ ॥ ଶୁଣି ବିପ୍ର କହେ ଏହା
ଉଚିତ ନୁହଇ । ମୋ ପୁଅର ଜୀବନପାଇଁ ବିଦେଶୀ ମରଇ ॥ କିପରି
ହୋଇଣ ଏହା କହୁଛ ଆପଣ । ଏହାସେ ବିଦେଶୀ କହଇ
ବଚନ ॥ ଆହେ ବିପ୍ର ମୋର ଭାର୍ଯ୍ୟା ପୁତ୍ର କଥା ନାହିଁ ।
ଉପକାରେ ମଲେ ସ୍ୱର୍ଗ ଭୁଞ୍ଜିବଇଁ ॥ ଈଶ୍ୱରଙ୍କ ଦୟାହେଲେ ହୋଇବି
ନୃପତି । ନୋହିଲେ ତ ପରଲୋକେ ପାଇବି ସଦ୍‌ଗତି ॥ ଏଥିପାଇଁ
ମନେ ମୋର ନାହିଁ କିଛି ଭୟ । ରାଜା ହେଲେ ତୁମ୍ଭେମାନେ
ମାନିବ କି କହ ॥ ଉତ୍ତର ନଦେଲେ ଏହାଶୁଣି ମନ୍ତ୍ରୀମାନେ । କି
ଘଟିବ ଏଥୁ ବୋଲି ରହିଲେ ମଉନେ ॥ ମାନସରେ ଅତି ତୋଷ
ହୋଇ ସେ ବ୍ରାହ୍ମଣ । ବିଷ୍ଣୁ ଚିନ୍ତି ବିଦେଶୀର ବାଞ୍ଛଇ କଲ୍ୟାଣ ॥ ପ୍ରଜା
ମାନେ ଦେଖି ତାକୁ ଆନନ୍ଦ ହୋଇଲେ । ଈଶ୍ୱର ରଖନ୍ତୁ ବୋଲି
ଆଶୀର୍ବାଦ କଲେ ॥ ଆରୋହିଲେ ମତ୍ତହସ୍ତୀ ବିକ୍ରମ ମିହିର । ବାଜିଲା
ଟମକ ଢୋଲ ଶଙ୍ଖ ଖରତୁର ॥ ଚଢ଼ି ଯାଇ ସିଂହଦ୍ୱାରେ ପ୍ରବେଶ
ହୋଇଲେ । ପାଞ୍ଚ ମନ୍ତ୍ରୀ ସେବାକାରୀ ସକଳେ ମିଳିଲେ ॥ ହରଷା
ଆସିଲା ଦେଖି ସରବ ମାନସେ । ଚଢ଼ି ଯାଇ ରାଜସିଂହାସନେ
ବସିଲେ ସେ ॥ ଛତ୍ର ଟେକାଇଣ ଶିରେ ଅଭିଷିକ୍ତ ହେଲେ । ପ୍ରଜା
ମନ୍ତ୍ରୀ ଦେଶବାସୀ ଚରଣେ ଭେଟିଲେ । ବ୍ରାହ୍ମଣେ ହୋଇଣ ତୁଷ୍ଟ
ଦିଅନ୍ତି ଆଶିଷ । ଚିରଞ୍ଜୀବୀ ହୋଇ ଏହୁ ପାଳନ୍ତୁ ଏ ଦେଶ ॥ ଜଗନ୍ନାଥ
କହେ ପାପ ଦଶା ହେଲେ ଶେଷ । ଅନାୟାସେ ଶୁଭଫଳ ମିଳଇ
ଅବଶ୍ୟ ॥

———

# ରାକ୍ଷସୀ ନିକଟରେ ବିକ୍ରମାଦିତ୍ୟଙ୍କ ବିଜୟଲାଭ

ଏଥିଅନ୍ତେ ରାଜା ହୋଇ ବିକ୍ରମ ନୃପତି । ଡକାଇ ପ୍ରଜାଙ୍କୁ ତହୁଁ କହିଲେ ଝଟିତି ॥ ଦେଶବାସୀ ପରଜାଏ ଶୁଣ ମୋ ବଚନ । ଏହି ସବୁ ଖାଦ୍ୟ ଦ୍ରବ କରିବ ରନ୍ଧନ ॥ ମହଣ ମହଣ ତଣ୍ଡୁଳରେ ହେବ ଅନ୍ନ । ହାଣ୍ଡିମାନଙ୍କର ତାହା ରହିଥିବ ପୂର୍ଣ୍ଣ ॥ ଦଧି ଘୃତ କ୍ଷୀର ଛେନା ପଣା ଯୋଗାଡ଼ିବ । କ୍ଷିରି ପିଠା ନାନାବିଧ ବ୍ୟଞ୍ଜନ ରାନ୍ଧିବ ॥ ନାନାବିଧ ପଶୁ ପକ୍ଷୀ ମାଛ ମାଂସ ଭୁଲେ । ପାକ କରି ସୁବିଧାରେ ଯାଇଥିବ ଭଲେ ॥ ଆଜ ସୂର୍ଯ୍ୟ ଅସ୍ତ ହେବା ପୂର୍ବରୁ ଆଣିବ । ଏହି ରାଜ ନଗରରେ ସକଳ ରଖିବ ॥ ଲଙ୍ଘନ କରିବ ଆମ୍ଭ ଆଜ୍ଞା ଯେଉଁ ଜନ । ରାଜ ଦଣ୍ଡ ପାଇବ ସେ ନ ହୋଇବ ଆନ ॥ ଏହା ଶୁଣି ମନ୍ତ୍ରୀଗଣ ଆଜ୍ଞା ଶିରେ ନେଇ । ଦିଆଇଲେ ଘୋଷଣା ସେ ନଗର ଜଗାଇ । ଆଜ୍ଞା ପାଇ ପୁରଜନେ ପାକ ସିଦ୍ଧ କଲେ । ସନ୍ଧ୍ୟାହେବା ପୂର୍ବୁ ତାହା ନିକଟରେ ଆଣିଲେ । ନରପତି ଆଗେ ନେଇ ରଖିଲ ସମସ୍ତ । ବିକ୍ରମ ଶୟନ ଘରେ ଥୋଇଲେ ତୁରନ୍ତ ॥ ସନ୍ଧ୍ୟା ହେଲା ଦିନକର ଅସ୍ତ ଯହୁଁ ହେଲେ । ବିକ୍ରମମିତ୍ରର ସମସ୍ତଙ୍କୁ ବିଦାକଲେ । ସମସ୍ତେ ଚଳିଗଲ ଆଜ୍ଞା ପାଇ ଯେଝାପୁରେ । ନରପତି ତହୁଁ ଯାଇ ଆସନେ ବସିଲେ ॥ ଇଷ୍ଟଦେବ ସ୍ମରି ରାତ୍ରି ପ୍ରହରେ ହୋଇଗଲ । ରାକ୍ଷସୀ ତକ୍ଷଣେ ଆସି ସେଠାରେ ମିଳିଲ ॥ ଦେଖିଲ ଆସନେ ବସିଛନ୍ତି ନରସାଇଁ । ତାଙ୍କପାଖେ ବଳି ଭୋଜା ବହୁତ ଅଛଇ ॥ ଖାଇବାକୁ ବଳି ସେହୁ ବଳାଇଲ ମନ । ତାହା ଦେଖି ପଚାରିଲେ ବିକ୍ରମ ରାଜନ ॥ କହ ତୁମ୍ଭ ନାମ କିଏ କାହୁଁ ଅଛ ଆସି । ଗନ୍ଧର୍ବୀ କିନ୍ନରୀ ଅବା ପିଶାଚୀ ରାକ୍ଷସୀ । ପ୍ରବେଶ ହୋଇଲ ଏଥି ଭୟଙ୍କର କାୟ । ଦେଖିଲକ୍ଷଣି ତ ମନେ ଲାଗଇ ସଂଶୟ । ତାହାଶୁଣି କହିଲ ସେ ମୂର୍ଖ ନିଶାଚରୀ । ଯୁଝିବ ତୁମ

ନରପତେ ତଳେହେଁ ନ ଡର । ସ୍ବରଗୋଟି ସମସ୍ୟା ଯେ ପଚ୍ଚାରବ ମୁହିଁ । ସ୍ବରଥରେ ତାହା ପୂର୍ଣ୍ଣ କରଦେବ କହ୍ବ । ସ୍ବର ପ୍ରହରରେ ସମସ୍ୟା ନକଲେ ପୂରଣ । ତହିଁପରେ ଭୂମ୍ଭଙ୍କୁ ମୁଁ କରବ ଭୋଜନ ॥ ନରପତ ତାହା ଶୁଣି କହନ୍ତେଲ ଏ ଗିର । ଭୂମ୍ଭ ଇଚ୍ଛାମତେ ବେଗେ ସମସ୍ୟା ପଚ୍ଚର । ତହୁଁ ନିଶାଚର ଅତ ଉଚ୍ଚ ସ୍ବର କର । ବୋଇଲା ସମସ୍ୟା ଶୁଣ ଆହେ ଦଣ୍ଡଧାରୀ ।

## ରାକ୍ଷସ୍ୟୁବାଚ

ଶ୍ଳୋକଃ—ପୃଥ୍ବୀ ଗୁ ରୁତରା କା ଚ କ ଉଚ୍ଚୋ ଗଗନାଦପି ।
ତୃଣାଲ୍ଲଦ୍ଧୁତରା କା ଚ କଶ୍ଚଲଃ ପବନାତ୍ପୃରଃ ।

କେ ବା ଗୁ ରୁ ମହୀଠାରୁ ଉଚ୍ଚ ଆକାଶରୁ । ପବନରୁ ଚଞ୍ଚଳ କେ ମାତ ତୃଣଠାରୁ ॥

## ରାଜୋବାଚ

ଶ୍ଳୋକଃ—ପୃଥ୍ବୀ ଗୁ ରୁତରା ମାତା ପିତା ଚ ଗଗନାଦପି ।
ତୃଣାଲ୍ଲଘୁତରା ଭକ୍ଷ୍ୟ୍ବାଚାଗ୍ରେ ଚଲତେ ମନଃ ।

କହିଲେ ରାଜନ ମାତା ଧରଣୀରୁ ଗୁ ରୁ । ପିଅର ଅତ୍ୟନ୍ତ ଉଚ୍ଚ ଜାଣ ଗଗନରୁ । ପବନରୁ ଚଞ୍ଚଳଟି ମନ ବୋଲି ଜାଣ । ଭିକ୍ଷୁଠାରୁ ମାତ ହୋଇ ନାହିଁ କିଛି ଆନ ॥ ଶୁଣି ନିଶାଚର ବଳ ଖାଇ ଚୋଉ ମନେ । ବଚାରିଲା ହେବ ଏହୁ ସୁପଣ୍ଡିତ ଜଣେ ॥ ତହୁଁ ଯାଇ ପୁଣି ରାତ୍ର ଦ୍ୱିତୀୟ ପ୍ରହରେ । ଆଉ ଏକ ସମସ୍ୟା ସେ ରାଜାଙ୍କୁ ପଚ୍ଚରେ ॥

## ରାକ୍ଷସ୍ୟୁବାଚ

ଶ୍ଳୋକଃ—କଥମୁତ୍ପଦ୍ୟତେ ଧର୍ମଃ କଥଂ ଧର୍ମଃ ପ୍ରବର୍ତ୍ତତେ
କଥଂ ବା ସ୍ଥାପିତୋ ଧର୍ମଃ କଥଂ ଧର୍ମୋ ବିନଶ୍ୟତି ॥

କ କଲେ ଜନମେ ଧର୍ମ କାହିଁ ପ୍ରବର୍ତ୍ତଇ । କେଉଁଠାରେ ଧର୍ମ ପୁଣି ରହେ ସ୍ଥିର ହୋଇ ॥ କେବଣ ମାର୍ଗରେ ଧର୍ମ ହୁଅଇ ବନାଶ । ଉତ୍ତର ଏହାର ତହୁଁ ଢଅନ୍ତ ନରେଶ ॥

## ରାଜୋବାଚ

ଶ୍ଳୋକଃ—ଦୟୟୋତ୍ପଦ୍ୟତେ ଧର୍ମଃ ଧର୍ମଃ ସତ୍ୟେ ପ୍ରବର୍ତ୍ତତେ ।
କ୍ଷମୟା ସ୍ଥାପିତୋ ଧର୍ମଃ ଲୋଭେ ଧର୍ମେ ବିନଶ୍ୟତି ॥

ଦୟାଦ୍ୱାରା ଜନ୍ମେ ଧର୍ମ ପ୍ରବର୍ତ୍ତଇ ସତ୍ୟେ । କ୍ଷମାହେତୁ ସ୍ଥିର ହୁଏ ଲୋଭେ କ୍ଷୟ ନତ୍ୟେ ॥ ଏହା ଶୁଣି ନିଶାଚରୀ ବଳଭୋଜା ଖାଇ । ଗୃଲଗଲ ଫୁଲଇଣ ମନ୍ଦ୍ର ହର୍ଷ ହୋଇ ॥ ତୃତୀୟ ପ୍ରହର ଗତ ହୋଇବାରୁ ପୁଣି । ପ୍ରଶ୍ନ କଲା ନୃପତିଙ୍କୁ ଆସି ରାକ୍ଷସୁଣୀ ।

## ରାକ୍ଷସ୍ୟୁବାଚ

ଶ୍ଳୋକଃ—କୋଽସୌ ନାମ ମହାରାଜା କା ସା ବୈତରଣୀ ନଦୀ ।
କା କାମଦୁହାଧେନୁଃ କଃ ସନ୍ତୋଷଜନନଂମନଃ ॥

ରାଜା ବୋଲି କାହାକୁ ହେ କହଇ ଜଗତ । କିଏ ହୁଏ ବୈତରଣୀ ନଦୀ ନାମେ ଖ୍ୟାତ । କାହା ନାମ କାମଧେନୁ ବୋଲି ହୋଇଅଛି । ମନକୁ କେ ସବୁକାଳେ ସନ୍ତୋଷ ଦେଉଛି ॥

## ରାଜୋବାଚ

ଶ୍ଳୋକଃ—ଧର୍ମତଃ ପାଲ୍ୟତେ ରାଜା ଆଶା ବୈତରଣୀ ନଦୀ ।
ବିଦ୍ୟା କାମଦୁହାଧେନୁ ସ୍ତୁଷ୍ଟେ ଶ୍ଚାତ୍ମନି ତୁଷଂତି ।

ନରେଶ ବୋଇଲେ ଧର୍ମେ ଯେ ରାଜ୍ୟ ପାଳଇ । ରାଜା ସେହି ପୁଣି ଆଶା ବୈତରଣୀ ନଈ ॥ ବିଦ୍ୟା କାମଧେନୁ ବୋଲି ଜଗତେ ବିଦିତ । ଆତ୍ମା ତୁଷ୍ଟ ହେଲେ ପ୍ରାଣୀ ହୁଅଇ ସନ୍ତୁଷ୍ଟ ॥ ଏହା ଶୁଣି ବଳଭୋଜା ଖାଇ ନିଶାଚରୀ । ସନ୍ତୋଷ ମନରେ ଚଳିଁ ଗଲା ସେ ବାହାରି ॥ ଚତୁର୍ଥ ପ୍ରହର ଜାଣି ସହୁଁ ପ୍ରବେଶିଲା । ରାଜାପାଶେ ପରିବେଶ ରାକ୍ଷସୀ ହୋଇଲା ॥ କହିଲା ସେ ଉଚ୍ଚସ୍ୱରେ ଶୁଣ ହେ ରାଜନ । ଏହି ଶେଷ ସମସ୍ୟାକି କର ବେଗେ ପୂର୍ଣ୍ଣ ॥

## ରାକ୍ଷସ୍ୟୁବାଚ

ଶ୍ଳୋକଃ—ଦିବା ବିଭେତି କାକେଭ୍ୟୋ ରାତ୍ରୌ ସଂତରତେ ନଦୀଂ
ତଥା ନକ୍ର ଭୟଂ ନାସ୍ତି ତତ୍ତ୍ୱଜାନନ୍ତି ତଦ୍‌ବିଦଃ ॥

କାକରବ ଶୁଣିଲେ ଯେ ଦିବସେ ଡରଇ । ରାତ୍ରେ ପୁଣି କପଟ ସେ ନଦୀ ପାର ହୋଇ ॥ ସ୍ତ୍ରୀଶକ ପୁରୁଷ କେହୁ କହ ସେ ଅଟଇ । କୁମ୍ଭୀରକୁ କ ଲଗି ସେ ଭୟ ନ କରଇ ॥

## ରାଜୋବାଚ

ଶ୍ଳୋକଃ—ଦୃଷ୍ଟ୍ୱା ସ୍ତ୍ରୀ ନୃପତିର୍ଦ୍ଦେହେ କାକରାବେଣ ମୂର୍ଚ୍ଛିତା ।
ନାପ୍ତୁକାର୍ଥେ ନଦୀପାରଂ ହରତ୍ୟୁମର୍ଦ୍ଦନଂ ତଥା ॥

ଏହା ଶୁଣି ନରପାଳ ଏ ଉତ୍ତର ଭାଷେ । ଯେଉଁ ରାଜସ୍ତ୍ରୀ ଯାଏ ଜାରପୁଂସ ପାଶେ ॥ ଭୟପାଏ କାକ ରବ ଶୁଣି ସେ ଦିବସେ । ରଜନୀରେ ନଦୀ ପାର ହୁଏ ପୁଂସ ଆଶେ ॥ ଦେହରେ ହଳଦୀ ସେହୁ ବୋଳ ହୋଇଥାଏ । ସେଥିପାଇଁ କୁମ୍ଭୀରର ଭୟ ତାର ନୋହେ ॥ ତହୁଁ ନୃପତିଙ୍କି ହାରିଗଲା ନିଶାଚରୀ । ଅବଶିଷ୍ଟ ବଳଭୋଜା ସୁଖେ ଗଲା ଚରି ॥ ସନ୍ତୋଷେ ନରପାଳଙ୍କୁ ଯାଚିଲା ସେ ବର । କହିଲା ଯା ଇଚ୍ଛା ଅଛି ମାଗ ହେ ସତ୍ୱର ॥ ବିକ୍ରମ ପୁଚ୍ଛିଲେ କେତେ ଆୟୁଷ ମୋହର । ଦୟାକରି ହେ ରାକ୍ଷସୀ କହ ମୋ ଆଗର ॥ କହେ ନିଶାଚରି ଶୁଣ ତାରିଶ ପଞ୍ଚାଶ । ବରଷ ଯେ ତିନମାସ ଦିନସପ୍ତଦଶ ॥ ଏଥୁଊଣା ଅଧିକ ଯେ ନୁହେ କେତେବେଳେ । ଏଥିକଥା ତଥ୍ୟକରି କହିଲି ମୁଁ ହେଲେ ॥ ଏହାଶୁଣି କହିଲେ ସେ ବିକ୍ରମ ମିହିର । ତହୁଁ କିଛି ଊଣା ଅବା ଅଧିକ ଯେ କର ॥ ରାକ୍ଷସୀ କହିଲା ତାହା ମୋ ହାତରେ ନାହିଁ । ଏ ବରକୁ କଦାଚିତେ ଦେଇ ନପାରଇ ॥ ଏହା ଶୁଣି ନରପତି ପୁଚ୍ଛିଲେ ତାହାକୁ । ତେବେ ଆଜ କ ପ୍ରକାରେ ଖାଆନ୍ତୁ ଆମ୍ଭଙ୍କୁ ॥ ଏହା ଶୁଣି ନିଶାଚରୀ ସନ୍ତୋଷ ମନରେ ।

ଯୋଗାସନ ମନ୍ତ୍ର ଦେଲ ନୃପତି କର୍ଣ୍ଣରେ ॥ କହିଲ ଏ ବିଦ୍ୟାବଳେ ବସି ଯୋଗାସନେ । ଯହିଁ ଇଚ୍ଛା ତହିଁ ଯିବ ମୋହର ପ୍ରସନ୍ନେ ॥ ଯେତେବେଳେ ମନେ ମନେ ସ୍ମରୁଥିବ ମୋତେ । ହେବ ପରବେଶ ଜାଣ ତୁମ୍ଭର ଅଗ୍ରତେ ॥ ପରମାଦ କେବେ ତୁମ୍ଭ ରାଜ୍ୟ ନ ପଡ଼ିବ । ତୁମ୍ଭର ହୋଇବ ସବୁଠାରେ ଜୟସ୍ତୁଭ ॥ ବରଦେଇ ନିଶାଚରୀ ହେଲା ଅନ୍ତର୍ଦ୍ଧାନ । ରାତ୍ରେ ଉଜାଗର ରହିଥିଲେ ନରରାଣ ॥ ସେ ସକାଶୁଁ ପ୍ରଭାତରୁ ପଲ୍ୟଙ୍କେ ନୃପତି । ଶୋଇଲେ ନିଶ୍ଚିନ୍ତ ମନେ ଗୁଡ଼ି ଦେଇ ଖଟି ॥ ଦେଖୁ ଦେଖୁ ଦିନ ଆସି ହେଲା ପାଞ୍ଚ ଘଡ଼ି । ବିସ୍ମରିଲେ ମନ୍ତ୍ରୀମାନେ ରାଜା ଗଲା ମରି ॥ ଜାଇଥିଲେ ପ୍ରଭାତରୁ ଅବଶ୍ୟ ଉଠନ୍ତା । ଏତେ ଭାବି ମନେ ତାଙ୍କ ହେଲା ଗୁରୁ ଚିନ୍ତା ॥ କହେ ଜଗନ୍ନାଥ ସିଦ୍ଧି ନ ହୁଅ ବିକଳ । ଦୁଃଖ ଗଲା ପ୍ରକାଶିବ ଏବେ ଶୁଭବେଳ ॥

---

## ବିକ୍ରମାଦିତ୍ୟଙ୍କର ପରିଚୟ ପ୍ରଦାନ

ଏଥିଅନ୍ତେ ସାଧୁଜନେ ମନ ଦେଇ ଶୁଣ । ଏକଚିତ୍ତେ ବିସ୍ମରନ୍ତି ଯେତେ ମନ୍ତ୍ରିଗଣ ॥ ଗତ ରାତ୍ରେ କି ଘଟିଲା ଜଣା ଗଲା ନାହିଁ । ମଲା କି ବା ନରପତି ଅଛି ପ୍ରାଣେ ରହି ॥ ଏତେ ଭାବି ତହୁଁ ଦୂତ ଏକ ପଠାଇଲେ । ଦେଖି ଆସ ନରପତି ଜୀବିତ କି ମଲେ ॥ କେହି ତ ରାକ୍ଷସୀ ମୁଖୁ ବଞ୍ଚି ଆସି ନାହିଁ । ଏହାଙ୍କୁ କି ନିଶାଚରୀ ରଖିଛି ନ ଖାଇ ॥ ମନ୍ତ୍ରୀ ଆଜ୍ଞା ଘେନି ଚର ଚଳିଗଲା ବେଗେ ॥ ଏମନ୍ତ କହିଲା ଦେଖି ଆସି ମନ୍ତ୍ରୀ ଆଗେ ॥ ବସିଛି ପୁରୁଷ ଏକ ଦେଖିଲି ଭିତରେ । ବିସ୍ମରନ୍ତି ଶୁଣି ମନ୍ତ୍ରୀ ଭୂତ ହୋଇପାରେ ॥ କିବା ନିଶାଚରୀ ତାଙ୍କୁ ଖାଇନାହିଁ ରହ । ଦେଖିବାକୁ ଯିବା ନାହିଁ ହୁଏ ଭୟଜାତ ॥ ଏପରି ସମୟେ ତହିଁ ଏକଇ ବ୍ରାହ୍ମଣ । ପଢ଼ୁଥିଲେ

ହରିନାମ ମୁଖେ ଉଚ୍ଚାରଣ ॥ ତାଙ୍କୁ ଦେଖି ମନ୍ତ୍ରୀଗଣ କଲେ ନମସ୍କାର ପଠାଇଲେ ଦେଖି ଆସ ବୋଲି ରାଜପୁର ॥ ବ୍ରହ୍ମତେଜେ ନିର୍ଭୟରେ ସେହୁ ବିପ୍ରବର । ପଶିଯାଇ ଦେଖିଲେ ଯେ ବିକ୍ରମ ସିହ୍ନର ॥ ବସିଛନ୍ତି ପଲ୍ୟଙ୍କରେ ଦୂର କରି ଭୟ । କହେ ବିପ୍ର ଦଣ୍ଡଧାରୀ ଜୟଯୁକ୍ତ ହୁଅ ॥ ଶୁଣି ରାଜା ଉଠି ତାଙ୍କୁ ପ୍ରଣାମ କଲେ । ପାତ୍ରମନ୍ତ୍ରୀ କାହିଁ ଗଲେ ବୋଲି ପଚାରିଲେ ॥ ବିପ୍ର ଭାଷେ ଭୂତ ଭୟେ ନ ଆସନ୍ତି ଏଥି । ଏକତ୍ରିତ ହୋଇ ସର୍ବେ ଦୁଆରେ ଅଛନ୍ତି ॥ ଏଠାବରେ ଆଜଯାଏ ରାଜା ଯେତେ ହେଲେ । ରାକ୍ଷସୀ ମୁଖରୁ କେହି ବର୍ତ୍ତି ନ ପାରିଲେ ॥ କି ଉପାୟେ ତୁମ୍ଭେ ଆଜ ରହିଛ ଜୀବିତ । କିଏ ତୁମ୍ଭେ ମହାତମା କହ ସତ୍ୟ ॥ ଶୁଣି ରାଜା ସବିନୟେ କହିଲେ ଏମନ୍ତ । ଆମ୍ଭେ ତୁମ୍ଭ ପୂର୍ବ ରାଜା ବିକ୍ରମ ଆଦିତ୍ୟ । ତହୁଁ ରାଜାବିପ୍ର ଆଗେ ସକଳ କହିଲେ । ରାତ୍ରେ ଯାହା ହୋଇଥିଲା ରାକ୍ଷସୀର ତୁଲେ ॥ ଶୁଣି ଦ୍ୱିଜ ବେଦମତେ ଆଶୀର୍ବାଦ କଲେ । ବିକ୍ରମ ନୃପତି ତାଙ୍କୁ ଧନ ରତ୍ନ ଦେଲେ ॥ ମେଲାଣି ହୋଇଣ ଦ୍ୱିଜ ତହୁଁ ଚାଲି ଗଲେ । ସବୁକଥା ମନ୍ତ୍ରୀଙ୍କର ଆଗେ ଜଣାଇଲେ ॥ ତାଙ୍କଠାରୁ ଧନ ପାଇ ଗଲେ ଦ୍ୱିଜବର । ବାହାରିଲେ ମନ୍ତ୍ରୀମାନେ ଘେନିଉପହାର ॥ ବହୁବିଧ ଭେଟି ଦ୍ରବ୍ୟ ସଙ୍ଗତେ ଘେନିଣ । ଆନନ୍ଦେ ରାଜାଙ୍କୁ ଯାଇ କଲେ ଦରଶନ ॥ ତାଙ୍କୁ ଦେଖି ଆଜ୍ଞା ଦେଲେ ବିକ୍ରମ ସିହ୍ନର । ହୁଆଅ ଘୋଷଣା ଦେଶୁଁ ଭୟ ହେଲା ଦୂର ॥ ନିଶାଚରୀ ଭୟ ଆଉ ନୋହିବ ତୁମ୍ଭର । ମହାସୁଖେ ପୂର୍ବ ପରି ସର୍ବେ ବାସ-କର ॥ ଆଜ୍ଞା ପାଇ ମନ୍ତ୍ରୀଗଣ ଚାଲିଗଲେ ଘରେ । ଅଭୟ ଘୋଷଣା ଦେଶଯାକ ହୁଆଇଲେ ॥ ଗୀତ ଛନ୍ଦେ କହେ ଏହା ସିଂହ ଜଗନ୍ନାଥ । ସୁଖେ ବସି ପ୍ରଜା ପାଳ ଆହେ ନରନାଥ ॥

———

## ବତ୍ରିଶ ସିଂହାସନର ଉତ୍ପତ୍ତି ବୃତ୍ତାନ୍ତ

ଏଥିଅନ୍ତେ କଥାରସ ଶୁଣ ସାଧୁ ଜନେ । ସ୍ୱର୍ଗେ ନୃତ୍ୟ କରୁଥିଲେ ଅପସରା ଗଣେ ॥ ହୁହୁ ଗନ୍ଧର୍ବର ଥିଲେ ବତିଶ କୁମର । ଅପସରାଙ୍କର ଦେଖି ରୂପ ମନୋହର ॥ ଠାରଦେଲେ କାମବଶେ ନୟନପ୍ରାନ୍ତରେ । ନାଚୁଣୀର ତାଲ ଭଙ୍ଗ ହେଲା ସେହିଠାରେ ॥ ଦେଖି ତାହାଠାରେ କୋପ କଲେ ପୁରନ୍ଦର । କହେ ଅପସରା ତାଙ୍କୁ ଯୋଡ଼ି ବେନିକର ॥ ମୋହଠାରେ ଦୋଷ କିଛି ନାହିଁ ସୁରସାଇଁ । ଏମାନଙ୍କ ନେତ୍ରଠାରେ ଭ୍ରମିଗଲା ମୁହିଁ । ତାଳ ମୋର ଭୁଲିହେଲା ଏ ସତ୍ୟ ଅଟଇ । ଏହା ଶୁଣି ଅତିକ୍ରୋଧେ ତାଙ୍କୁ ଶଚୀସାଇଁ କହିଲେ ଗନ୍ଧର୍ବ ପୁତ୍ରେ ହୁଅ କାଠରୂପ । ଦୁରାତ୍ମର ବ୍ୟବହାରୁ ଘେନ ଏହି ଶାପ ॥ ଶୁଣିଣ ସେମାନେ ପୁରନ୍ଦର ପାଦେ ପଡ଼ି । ଜଣାଇଲେ ଅତିଦୁଃଖେ ଶିରେ କର ଯୋଡ଼ି ॥ ତୁମ୍ଭ ଅଭିଶାପେ ଯେବେ ଆମ୍ଭେ ହେବୁ କାଷ୍ଠ । କହ କି ରୂପରେ ପୁଣି ହୋଇବୁ ମୁକତ ॥ ସେମାନଙ୍କ ଭକ୍ତି ଦେଖି ତୋଷେ ସୁରରାଣ । କହିଲେ ମୋହର ବାକ୍ୟ ଏବେ ଭଲେ ଶୁଣ ॥ କାଷ୍ଠ ହୁଅ ତାହାକୁ ମୁଁ କରି ସିଂହାସନ । ବିକ୍ରମଆଦିତ୍ୟ ହସ୍ତେ କରିବ ପ୍ରଦାନ ॥ ତହିଁରେ ସେ ବସି ରାଜ୍ୟ ଶାସନ କରିଲେ । ସେ ସକାଶୁ ଅଧେପାପ ଖଣ୍ଡିବ ହେ ଭଲେ ॥ ତାଙ୍କ ଅନ୍ତେ ତାଙ୍କ ପୁତ୍ର ହେବ ଯେବେ ରାଜା । ସେହି ସିଂହାସନେ ବସି ପାଳିବ ପରଜା ॥ ସେ ସମୟେ ପାଦେ ପାପ ହୋଇବ କ୍ଷାଳନ ସେହୁ ସ୍ୱର୍ଗେ ଯାନ୍ତେ ପୋତା ହେବ ସିଂହାସନ ॥ ମାଟିତଳେ ବହୁଦିନ ତୁମ୍ଭେ ରହିଥିବ । ଭୂମିରେ ତୁମ୍ଭର ପୁଣି ପାଦେ ପାପ ଯିବ ॥ ଉଜ୍ଜୟିନୀ ନଗରେ ଭୋଜ ହେବ ନରରାଣ । କିଛିକାଳେ ସିଂହାସନ ପାଇବେ ସେ ପୁଣ ॥ ବସିବାକୁ ତା ଉପରେ ଯିବେ ଯେତେବେଳେ । ତୁମ୍ଭେ ମାନେ ନିବେଧିବ ତାଙ୍କୁ ସେହିକାଳେ । ବିକ୍ରମଙ୍କ କୀର୍ତ୍ତି ତାଙ୍କୁ

ଜଣେ ଜଣେ କହ । ତନ୍ତୁଁ ଆସ ସ୍ୱର୍ଗସ୍ଥାନେ ନିଜ ଦେହ ପାଇ ॥ ଏହା ଅଟେ ଜାଣ ଭୂମ ଲଲାଟ ଲିଖନ । ନଷ୍ଟେ ଭୋଗ ହେବ କେବେ ନ ହୋଇବ ଆନ ॥ ଗନ୍ଧର୍ବଙ୍କ ମୁଖେ ଏତକଥା କାନ୍ତି ହେଲେ । ଡାକଣ ବିଶ୍ୱକର୍ମାଙ୍କୁ ଇନ୍ଦ୍ର ଆଜ୍ଞା ଦେଲେ ॥ ରତ୍ନମୟ ସିଂହାସନ ଯତନେ ରଚିବ । ଏ ବତିଶ ପିତ୍ତୁଳାକୁ ତହିଁରେ ଖଞ୍ଜିବ ॥ ଶୀଘ୍ର ଆଣି ସମର୍ପିବ ଆମ୍ଭ ଶ୍ରୀମୁଖରେ । ଏହା ଶୁଣି ବିଶ୍ୱକର୍ମା କଲା ସେ ପ୍ରକାରେ ॥ ଜଗନ୍ନାଥ ସିଂହ କହେ ଦେଖ ଭାଗ୍ୟ ଖେଳ । ପାଇବେ ସେ ସିଂହାସନ ବିକ୍ରମ ନୃପାଳ ।

---

## ବିକ୍ରମାଦିତ୍ୟଙ୍କ ସିଂହାସନ ଲାଭ

ସ୍ୱର୍ଗପୁରେ ସିଂହାସନ କେତେଦିନ ଥାଏ । ଇନ୍ଦ୍ରଙ୍କ ଆଗରେ ସଭା ସମୀପରେ ଥାଏ ॥ ଦିନକରେ ସ୍ୱର୍ଗ ସଭା ମଧ୍ୟେ ପୁରୁହୂତ । ରମ୍ଭା ଉର୍ବଶୀଙ୍କି ଡାକ କରାଇଲେ ନୃତ୍ୟ ॥ ସେ ଦୁହେଁ ତ ଧରିସମା ବିବାଦେ ନର୍ତ୍ତନ । କଲେ ତହିଁ ହାର ଜିଣା ନୋହିଲା ଦର୍ଶନ ॥ ନୃତ୍ୟ ଦେଖି ଗନ୍ଧର୍ବଙ୍କୁ ଇନ୍ଦ୍ର ପଚାରିଲେ । କିଏ ଊଣା କେ ଅଧିକ କହିବନି ଭଲେ । ଏହା ଶୁଣି ଚିତ୍ରସେନ ଉତ୍ତର ଦିଅଇ ॥ ଉଜ୍ଜୟିନୀ ନଗରେ ରାଜା ବିକ୍ରମ ଅଛଇ ॥ ଗନ୍ଧର୍ବସେନର ସେହୁ ଅଟଇ ନନ୍ଦନ । ସେ ଆସିଲେ ହାର ଜିଣା କହିବ ହେ ଜାଣ ॥ ଇନ୍ଦ୍ରଙ୍କ ଆଜ୍ଞାରେ ଗନ୍ଧର୍ବେକ ଚଳିଗଲା । ବିକ୍ରମାଦିତ୍ୟଙ୍କୁ ରଥେ ବସାଇ ଆଣିଲା ॥ ପରବେଶ କଲା ନେଇ ଦେବସଭା ମଧ୍ୟେ । ନରେଶ ପୂଜିଲେ ପୂଜା କରି ଇନ୍ଦ୍ର ପାଦେ ॥ କାହିଁପାଇଁ ଅଣାଇଲ ସତେ ସ୍ୱର୍ଗପୁର । ଯାହା ଆଜ୍ଞା ହେବ କରିବି ମୁଁ ପୁରନ୍ଦର ॥ ପଚାରିଲେ ଦେବରାଜ ଏ ଦୁହିଙ୍କ ନୃତ୍ୟ । ମଧ୍ୟେ ଭଲ କହ କାର ବିକ୍ରମ ଆଦିତ୍ୟ ॥ ଶୁଣି ନୃପ କହେ ଦେବ ଯୋଡ଼ିଏ ଭ୍ରମର । ଅଣାଇଲେ କହିବି ମୁଁ ନୃତ୍ୟ

ଭଲ କାର । ଭ୍ରମର ଗୋଟି ଆଣି ଦେଲେ ସେ ତକ୍ଷଣ । ହସ୍ତେ ଧରି ନୃତ୍ୟ ଦେଖୁଥିଲେ ନରଗଣ ॥ ଯତନେ ସେ ତାହା ଛାଡ଼ିଦେଲେ ଗୁପତରେ । ଦୁହେଁ ଯାଇ ଦୁହିଙ୍କର ଦଂଶିଲେ ସ୍ତନରେ । ନୃତ୍ୟ ଖେଳେ ରମ୍ଭା ଅତି ମତ୍ତ ହୋଇଥିଲା । ଭ୍ରମରର ଦଂଶନକୁ ମୋଟେ ନଜାଣିଲା । ମାତ୍ରଉର୍ବଶୀର ହୋଇଗଲା ତାଳଭଙ୍ଗ । ଜଣାଇଲେ ନରପତି ସୁରପତି ଆଗ ॥ ଦୁହିଁଙ୍କର ନୃତ୍ୟ ମଧ୍ୟେ ରମ୍ଭାର ଅଧିକ ॥ ଶୁଣିଲେ ସେ ବିବରଣ ଦେବଙ୍କ ନାୟକ ଦେବସଭା ମଧ୍ୟେ ବିକ୍ରମଙ୍କୁ ପ୍ରଶଂସିଲେ । ବତିଶ ସିଂହାସନଟି ପୁରସ୍କାର ଦେଲେ । ଶଚୀପତିଠାରୁ ନୃପ ହୋଇଲେ ମେଲଣି । ଗନ୍ଧର୍ବେ ସେ ସିଂହାସନ କାନ୍ଧେ ବହିଆଣି । ଦେଲେ ନେଇ ବିକ୍ରମଙ୍କୁ ଉଜ୍ଜ୍ୱଳ ନଗରେ ॥ ଆନନ୍ଦରେ ସେ ଗନ୍ଧର୍ବେ ଗମେ ସ୍ୱର୍ଗପୁରେ ॥ କହେ ଜଗନ୍ନାଥସିଂହ ଈଶ୍ୱର ଇଚ୍ଛାରେ । ଅସମ୍ଭବ ଦ୍ରବ୍ୟ ମଧ୍ୟ ଅନାୟାସେ ମିଳେ ॥

---

## ବିକ୍ରମାଦିତ୍ୟଙ୍କ ମୃତ୍ୟୁ

ସେହି ସିଂହାସନ ପରେ ବିକ୍ରମ ନୃପତି । ନିତ୍ୟ ବସି ରାଜ କାର୍ଯ୍ୟ ଶେଷ କରୁଥାନ୍ତି ॥ ଧନ୍ୱନ୍ତରି କ୍ଷପଣକ ବରାହ ମିହିର । କାଳିଦାସ ଭବଭୂତି ସେ ଘଟକର୍ପର ॥ ବେତାଳଭଟ୍ଟ ଅମରସିଂହ ବାଣଭଟ୍ଟ । ଏମାନଙ୍କ ନାମ ନବରତ୍ନରେ ପ୍ରକଟ ॥ ନବରତ୍ନ ସଙ୍ଗେ ସଭା ମଣ୍ଡି ନରପତି । ବସୁଥାନ୍ତି ନିତି ଛାଡ଼ି ମନୁଁ ଭୟ ଭ୍ରାନ୍ତି ॥ ଭାନୁମତୀ ନାମେ କନ୍ୟା ନୃପ ବିଭାହେଲେ । କେତେଦିନେ ଭାନୁମତୀ ପୁତ୍ର ପ୍ରସବିଲେ । ବ୍ରାହ୍ମଣେ ଅଇଲେ ଶୁଣି ଜନମ ପୁତ୍ରର । ବିକ୍ରମସେନ ବୋଲି ସେ ନାମ ଦେଲେ ତାର । ଜୟ କଲେ ପୃଥ୍ୱୀଯାକ ବିକ୍ରମ ମିହିର । ପାଳିଲେ ସେ ସିଂହାସନେ ପ୍ରଜା ବହୁକାଳ ॥ ଏଥୁଅନ୍ତେ ଯାହା ହେଲା ସାଧୁଜନେ ଶୁଣ । ବିକ୍ରମ ଆଦିତ୍ୟ ଦିନେ

ହରଷିତ ମନ ॥ ଅଣାଇଲେ ଡାକ ତାଳ ବେତାଳ ଦୁହିଙ୍କୁ । ଗୁପତରେ ଏହି କଥା ପଚାରିଲେ ତାଙ୍କୁ ॥ ସପ୍ତସ୍ୱର୍ଗ ଦେଖିବାକୁ ଇଚ୍ଛା ହୁଏ ମୋର । ଦେଖାଇ ପାରିବ କି ହେ ମୋତେ ସେ ସକଳ ॥ ଏହା ଶୁଣି ସେ ବେତାଳେ ଭାଷିଲେ ବଚନ । ଏହି କଥା ଆମ୍ଭ ପକ୍ଷେ ଅତ୍ୟନ୍ତ ସାମାନ୍ୟ । ମାତ୍ର କଥାଟିଏ ଯେବେ ଯତନେ ପାଳିବ । ସପ୍ତସ୍ୱର୍ଗ ଅନାୟାସେ ଦେଖି ହେ ଆସିବ ॥ ଗଲାବେଳେ ତୁମ୍ଭେ ବୁଜିଥିବ ଚକ୍ଷୁ ଦୁଇ । ସ୍ୱର୍ଗପୁର ହେଲାପରେ ଦେଖିବ ଫିଟାଇ । ସ୍ୱର୍ଗ ନୋହୁ ବାଟ ମଧ୍ୟେ ଯେବେ ଚାହିଁଦେବ । ତୁମ୍ଭର ଟି ନିଶ୍ଚେ ମୃତ୍ୟୁ ସେହିଠାରେ ହେବ ॥ ବେତାଳଙ୍କ ବାକ୍ୟେ ନୃପ କଲେ ଅଙ୍ଗୀକାର । ଚକ୍ଷୁ ବୁଜି ପଲ୍ୟଙ୍କରେ ବସିଲେ ସତ୍ୱର ॥ ସେ ବେତାଳେ ବହିନେଲେ ତାଙ୍କୁ ଆଜ୍ଞା ପାଇ କଟୁ ବାଟ ଥିଲା ଆଉ ସ୍ୱର୍ଗେ ଯିବା ପାଇଁ ॥ ଜଗତେ କେ ନାହିଁ କାଳଠାରୁ ବଳୀୟାର । କାଳବଶେ ଚକ୍ଷୁ ଫେଡ଼ି ଚାହିଁଲେ ନୃବର ॥ ପଚାରିଲେ ବେତାଳଙ୍କୁ ଆଉ କେତେ ବାଟ । ଏହା ଦେଖି ଫିଙ୍ଗିଦେଲେ ସେ ବେତାଳେ ଖଟ ॥ ଶେଷ ହୋଇଥିଲା ଆୟୁ ମଲେ ନୃପବର । ଜଗନ୍ନାଥ କହେ ଜଗନ୍ନାଥେ ଯୋଡ଼ି କର

---

## ଭୋଜରାଜାଙ୍କର ସିଂହାସନାରୋହଣ ଓ ଧନେଶ୍ୱର ସୌଦାଗର ବିବରଣ

ଏଥିଅନ୍ତେ ହେଲା ଯାହା ଶୁଣ ସାଧୁଜନ । ସ୍ୱର୍ଗପୁର ଦେଖିଗଲେ ବିକ୍ରମ ରାଜନ ॥ ସେହିଠାରେ ରହି ଆଉ ଫେରି ନଆସିଲେ । ତାହା ଦେଖି ତାଙ୍କ ପୁତ୍ର ରାଜପଣ କଲେ ॥ ପିତାଙ୍କର ଶୁଦ୍ଧି କ୍ରିୟା ଶାସ୍ତ୍ର ନିୟମରେ । ସାର ମନ୍ତ୍ରୀ ସହ ରାଜ୍ୟ ପାଳିଲେ ଆଦରେ ॥ ପିତାଠାରୁ ଅଧିକରେ ପାଳି ବସୁମତୀ । ବୋଲାଇଲେ ଭୂମଣ୍ଡଳେ ଏକ-

ଚକ୍ରବର୍ତ୍ତୀ ॥ ସେହି ସିଂହାସନରେ ବସି ପ୍ରଜା ପାଳୁଥିଲେ । କି ବିଗ୍ରହ ସେହିଠାରୁ ତାଙ୍କୁ ନେଇଗଲେ । ଗୁପ୍ତ କରି ଭୂମିତଳେ ପୋତାଇ ତାହାଙ୍କୁ । କେତେଦିନେ ଆୟୁ ଶେଷେ ଗମିଲେ ସ୍ୱର୍ଗକୁ ॥ ତହୁଁ ଚାଲିଗଲା ଏହିମତେ କେତେଦିନ । ଉଜ୍ଜ୍ୱଳ ନଗରେ ହେଲେ ଭୋଜ ନରାୟଣ ॥ ପ୍ରଜାଗଣେ ପୁତ୍ରସମ କରି ସେ ପାଳିଲେ । ବ୍ରାହ୍ମଣଙ୍କୁ ବହି ଧନରତ୍ନ ଦାନ ଦେଲେ ॥ ଉଜ୍ଜ୍ୱଳ ନଗରେ ଥିଲେ ବହୁ ସୌଦାଗର । ବେପାର ଚଳଇ ନାନା ଦେଶେ ତାହାଙ୍କର ॥ ଧନେଶ୍ୱର ନାମେ ଏକ ବଡ଼ ସୌଦାଗର । କରେ ସେ ବୋଇତ ଚାଳି ବିଦେଶେ ବେପାର ॥ ସଙ୍ଗେ ଘେନି ସୌଦାଗର ଆଉ ଆଠଜଣ । ଅନୁକୂଳ କରି ଗଲେ ବିଦେଶକୁ ଜାଣ ॥ ଧନେଶ୍ୱର ପରି ରୂପ ଧରି ଏକ ଭୂତ । କାହୁଁ ଆସି ଘରେ ତାର ହେଲା ଉପସ୍ଥିତ ॥ ଧନେଶ୍ୱର ଭାର୍ଯ୍ୟା ତାଙ୍କୁ ଦେଖି ପଚାରଇ । ଏତେ ଶୀଘ୍ର କହ ନାଥ ଫେରିଲେ କିପାଇଁ ? କପଟ ଭୂତ ଯେ ତାଙ୍କୁ ଉତ୍ତରିଲା ଧୀରେ । ଆଗୋ ପ୍ରିୟେ ପୀଡ଼ିତ ମୁଁ ପଥେ ହେଲି ଜ୍ୱରେ । ବଞ୍ଚିଲେ ପୁତ୍ରକନ୍ୟା କିଛି ନାହିଁ ମୋର । ଏତେ କଷ୍ଟ କରି ଯିବ କି ଲାଗି ବେପାର ॥ ଯାହା ଅଛି ଧନ ମୋର ଶହେ ବରଷେ । ନ ସରିବ ଘରେ ବସି ସୁଖେ ଖାଉଥିଲେ ॥ ଏହା ଶୁଣି ସୌଦାଗରନାରୀ ହେଲା ତୋଷ । ଏହି କଥାଗୋଟି ସତ୍ୟ ଅଟଇ ଅବଶ୍ୟ ॥ ବେପାରରେ ନାହିଁ କାର୍ଯ୍ୟ ସୁଖେ ବସି ଘରେ । ଏହା କହି ବେନି ପ୍ରାଣୀ ଆନନ୍ଦେ ରହିଲେ ॥ ସୌଦାଗର ରମଣୀ ସେ ଭୂତର ଅଂଶରେ । ଛଅ ଗର୍ଭ ପ୍ରସବିଲା ଛଅ ବରଷେ ॥ କପଟରେ ଭୂତ ହୋଇଅଛି ସୌଦାଗର । ନ ଚିହ୍ନିଲେ କେହି ମାୟାରୂପ ଗୋଟି ତାର ॥ ଜଗନ୍ନାଥ କହେ କୂଟ ଯେତେ କରୁଥାଏ । ଅଳ୍ପଦିନେ ଇଚ୍ଛାସୁଖେ ସେହୁ ନାଶ ଯାଏ ॥

---

## ଭୂତସଙ୍ଗେ ଧନେଶ୍ୱର ସୌଦାଗରର କଳହ

ତାହାପରେ ହେଲା ଯାହା ଶୁଣ ସାଧୁଜନେ । ବେପାରକୁ ଯାଇଥିଲେ ସୌଦାଗରମାନେ ॥ ପତ୍ର ଦେଇ ଦୂତ ହାତେ ଗୃହେ ପଠାଇଲେ । ଯେଝା ଗୃହେ ଆସି ଦୂତମାନେ ପହୁଞ୍ଚିଲେ ॥ ଧନେଶ୍ୱର ଦୂତ ଗଲା ଧନେଶ୍ୱରଘରେ । ସୌଦାଗର ବସିଛୁ ଦେଖିଲା ସେହିଠାରେ । ଏହା ଦେଖି ଦୂତମନେ ଚକିତହୋଇଲା । ଆଗେ ତୁମ୍ଭେ କେଉଁ ବାଟେ ଆସିଲ ପୁଚ୍ଛିଲା । ସୌଦାଗରରୂପୀ ଭୂତ ଦଅଇ ଉତ୍ତର । ବଦେଶରେ ଦେହ ମୋର ଜାତ ହେଲା ଜ୍ୱର । ଅଇଲି ମୁଁ ଛାଡ଼ି ତେଣୁ ମୋର ବ୍ୟବସାୟ । ସେଠାରୁ ଫେରିଲା ଦୂତ ଲଭିଣ ବସ୍ମୟ ॥ କଛୁଦନେ ପହୁଞ୍ଚିଲା ବେପାର ସ୍ଥାନରେ । ଦେଖିଲା ବସିଛୁ ଧନେଶ୍ୱର ସେହିଠାରେ ॥ କହିଲା ସେ ଖୁସି ହୋଇ ଆଗେ ଯାଇ ତାର । ପତ୍ର ଘେନ ଯାଇଥିଲ ମୁହିଁ ତୁମ୍ଭ ଘର ॥ ଦେଖିଲି ମୁଁ ଘରମଧ୍ୟେ ବସିଥିଲ ତୁମ୍ଭେ । ହାତୁ ମୋର ଘେନିଗଲ ଚିଠି ଦେଲୁ ଆମ୍ଭେ ॥ କହିଲ ମୁଁ ଜ୍ୱର ବେଗେ ପୀଡ଼ିତ ହେବାରୁ । ଛାଡ଼ି ଚାଲି ଆସିଗଲି ଆଗେ ବେପାରରୁ ॥ ଦେଖି କରି ଫେରି ତହୁଁ ଏଠାକୁ ଅଇଲି । ସାକ୍ଷାତରେ ଏହିଠାରେ ତୁମ୍ଭଙ୍କୁ ଦେଖିଲି ॥ ସୌଦାଗର ଦୂତ-ବାକ୍ୟେ ପଡିଲା ଚମକ । କପଟରେ କଏ ମୋର ଗୃହେ ରହିଲା କ ? ସାଥିସାଙ୍ଗ ସୌଦାଗରମାନେ ଏହା ଶୁଣି । ଭାବ ଭାବ କଥା କଛୁ ନ ପାରିଲେ ଜାଣି ॥ ବକାକଣା ବେପାରକୁ ଶୀଘ୍ର ତୁଟାଇଲେ । ନଜ ଦେଶେ ଅଳ୍ପଦନେ ସକଳେ ମିଳିଲେ ॥ ଧନେଶ୍ୱର ବେଗେ ବେଗେ ଯାନ୍ତେ ନଜ ଘର । ଦେଖିଲା ଦୁଆରେ ଅଛୁ ଭୂତ ସୌଦାଗର ॥ କୋପେ ଥରି ରାଗରେ ସେ କହିଲା ଏହାକୁ । 'କଏ ତୁରେ କଆଁ ଆସୁ ମୋହର ଘରକୁ ॥ ଶୁଣି ଧନେଶ୍ୱର କହେ ମୋହର ଏ ଘର । କେଉଁଠାରୁ ଆସିଛୁ ତୁ କ ଜାତ ରେ ଚୋର ।

ଶୁଣି ପୁଣି ଭୂତ କହେ ଆରେ ଦୁରାଚାର । ଏ ଘରେ ତ ପୁଅ ଝିଅ ଅଛନ୍ତି ମୋହର ॥ କାହିଁ ଆସି ମିଛଟାରେ କଳହନ୍ଦ କରୁ । ଭୋଜରାଜ ରାଜ୍ୟ ବୋଲି ଡରେ ନ ବରୁଛୁ ॥ କହେ ଜଗନ୍ନାଥ ସାଧୁ ନ କର ତୁ ଭୟ । ଧର୍ମେ ଥିବା ଲୋକଟିର ହୁଏ ନିଶ୍ଚେ ଜୟ ॥

---

## ଗୋପାଳ ବାଳକଙ୍କର ମୋକଦମା ବିଚାର

ଏହାପରେ ଯାହା ହେଲା ଶୁଣ ମନ ଦେଇ । ଯେଷଣ କଳହ କଲେ ଦୁଇଜଣ ତହିଁ ॥ ସାଧୁ ନାହିଁ ଦେଖି ଏକା ରୂପ ଦୁହିଁଙ୍କର କିଛି ଭାବ ନ ପାରି ସେ ହୋଇଲା ଅସ୍ଥିର ॥ କି ଘଟିବ ପରିଣାମେ ଜାଣି ନ ପାରିଲା । ଲୋକଲଜ୍ଜା ହେଲା ବୋଲି ଭିତରେ ଲୁଚିଲା ॥ ଭୂତ ସାଧୁ ଦୁହେଁ ମରାମରି ହୋଇଗଲେ । ଭୋଜ ନରପତି ଆଗେ ଗୁହାରି କରିଲେ ॥ କହୁଛନ୍ତି ଦୁହେଁ ଘର ଭାରିଯା ମୋହର । ଦେଖାଯାଏ ଏକାପରି ରୂପ ଦୁହିଁଙ୍କର ॥ ସାଧୁ ସଙ୍ଗେ ବେପାରରୁ ଯେତେ ସୌଦାଗର । ଆସିଥିଲେ ବିଦେଶରେ କରି କାରବାର ॥ ରାଜା ଆଗେ କହିଲେ ସେ ଗତକଥାମାନ । ଭୂତ ତାହା ନ ମାନିଲା କହିଲା ଏସନ ॥ ଏମାନଙ୍କ ବଚନରେ ମୋଟେ ସତ ନାହିଁ । କହୁଛନ୍ତି ମୋ ବିପକ୍ଷେ ଏକମେଳ ହୋଇ ॥ ଦେଖି ଶୁଣି ରାଜା ସ୍ଥିର ନ ପାଇଲେ ଅନ୍ତ । ରାଜଦରବାରେ ଦୁହେଁ ଆସୁଥାନ୍ତି ନିତ୍ୟ ॥ ଆସିବା ବାଟରେ ଥିଲା ସୁଧାର୍ଦ୍ଧ ପଡିଆ । ଜଗୁଥିଲେ ତହିଁ ଗୋରୁ ଗଉଡ଼ଙ୍କ ପୁଆ ॥ ପଡ଼ିଆ ଶେଷରେ ଏକ ମହୁଲର ଗଛ । ତା ମୂଳରେ ଢିପାଟିଏ ଥାଏ ଅତି ଉଚ୍ଚ ॥ ସେ ଢିପା ଉପରେ ଭାଗ କରି ସମତୁଲ । ସ୍ତରପଟେ ଖଞ୍ଜି ଥାନ୍ତି କେତେଜାତି ଫୁଲ ॥ ସେ ପିଲାରୁ ଜଣେ ତହିଁ ବସେ ରାଜା ହୋଇ । ମନ୍ତ୍ରୀରୂପେ ତା ପାଖରେ ଥୋକେ ଥାନ୍ତି ରହି ॥ ମୁଦେଇ ମୁଦାଲା ସାକ୍ଷୀ ପିଆଦା ପ୍ରଭୃତି । ହୋଇ

ଆଜ୍ଞ କେତେଜଣ ତହିଁ ରହିଥାନ୍ତି ॥ ମୋକଦ୍ଦମା ଖେଳାକରି କରନ୍ତି ବିଗ୍ଭର । ନିତି ପ୍ରତି ହୁଏ ଏହିପରି ତାହାଙ୍କର ॥ କାତି ଦିନ ସାଧୁ ଭୂତ ତାଙ୍କର ଆଗରେ । ଯାଆ ଆସ କରୁଥାନ୍ତି ରାଜଦରବାରେ ॥ ଦିନେ ତାଙ୍କୁ ସେ ଗୋପାଳ ରାଜ ଡକାଇଲା । କି ଲାଗି ପ୍ରତ୍ୟହ ତୁମ୍ଭେ ଯାଉଛ ପୁଚ୍ଛିଲା ॥ ଶୁଣି ଭୂତ ସାଧୁ ଦୁହେଁ କହିଲେ ତକ୍ଷଣ । ଯେ ଯାହାର ବିବରଣ କରଣ ବର୍ଣ୍ଣନ । ଶେଷ ନ କରନ୍ତି ନ୍ୟାୟ ଭୋଜ ନରପତି । ସେଥିପାଇଁ ଯାଉଅଛୁ ତାଙ୍କ ପାଶେ ନିତି ॥ ଯେବେ ତୁମ୍ଭେ ସେହି ନ୍ୟାୟ ପାରିବ ତୁଟାଇ । ଦୁହିଁଙ୍କର ଭଲ ହେବ ଯିବୁ ଭୁନ ହୋଇ ॥ ସେ ଗୋପାଳ ରଜା ତାଙ୍କୁ କହେ ଏହା ଶୁଣି । କଳି ତୁଟିଯିବ ଦୁହିଁଙ୍କର ଏହିକ୍ଷଣି ॥ ଏହା କହି ଡଗରାକୁ ବେଗେ ଆଜ୍ଞା ଦେଲା । କଳସୀ ଗୋଟାଏ ଶୀଘ୍ର ଆଣ ରେ ବୋଇଲା ॥ ତାହା ଶୁଣି ଡଗରା ଯେ ବେଗେ ଧାଇଁଗଲା । ମାଠିଆଟେ ଆଣି ନୃପ ଆଗେ ଥୋଇଦେଲା ॥ ବସାଇଣ ସେ ଦୁହିଙ୍କି କହଇ ଗୋପାଳ । ପ୍ରକୃତରେ ହୋଇଥିବ ଘରଟି ଯାହାର ॥ ସତ୍ୟବଳେ ପଶିଯିବ ମାଠିଆ ଭିତରେ । ଘର ନାଶ ଧନ ରତ୍ନ ଦେବ ମୁହିଁ କାରେ ॥ ପଶି ନ ପାରିବା ଲୋକ ମିଛୁଆ ପ୍ରମାଣ । ଘରୁ ପଳାଇବ ସେହୁ ପ୍ରହାର ପାଇଣ ॥ ଦିଅଇ ଉତ୍ତର ଏହା ଶୁଣି ଧନେଶ୍ୱର ପଶି ନ ପାରିବ ଲୋଡ଼ା ନାହିଁ ମୋର ଘର ॥ କହେ ଭୂତ ଦେଖ ଏବେ ମୁହିଁ ପଶୁଅଛି । ପ୍ରକୃତରେ ସେ ଘରଟି ମୋ ନାମେ ରହିଛି ॥ ସେହିକ୍ଷଣି ଭୂତ ଯାଇ ସୂକ୍ଷ୍ମ ରୂପ ଧରି । ମାଠିଆରେ ପଶିଗଲା କିଛି ନ ବିଗ୍ଭରି ॥ ଏହା ଦେଖି ଗୋପନୃପ ଠାରିଦେଲା ହସ୍ତେ । ଡଗରା ଲେସିଲା ମାଟି ଘଟମୁଖେ ପ୍ରସ୍ତେ ॥ ବାଟ ନ ପାଇଣ ଭୂତ ଜୀବନ ବିକଳେ । ଗଡ଼େ ମାଠିଆକୁ ଘେନି ପଡିଆ ଭିତରେ ॥ ଚମତ୍କାର ହୋଇ ସର୍ବେ ଦେଇ କରତାଳି । ହସୁ ହସୁ କୋଣେ ଯାଏ ପଡିଲା

ଉଜ୍ଜ୍ୱଳ ॥ ଗୋରୁଚରା ନୃପ ତହୁଁ ଉଗରୁର ହାତେ । ମାଠିଆକୁ ପଠାଇଲ ଭୋଜଙ୍କ ନିକଟେ ॥ ଧନେଶ୍ୱର ସୌଦାଗର ସ୍ୱର ସଙ୍ଗେ ଥିଲ । ଭୋଜ ପଚୃରନ୍ତେ ସବୁ ବୁଝାଇ କହିଲ । ନରପତି ଏହା ଦେଖି ଆଚମ୍ବିତ ହୋଇ । ଭୂତ ଥିବା ମାଠିଆଟି ପୋତାଇଲେ ନେଇ ॥ ଧନେଶ୍ୱର ସୌଦାଗର ସ୍ୱଗୃହକୁ ଗଲ । ଗୀତଛନ୍ଦେ ଜଗନ୍ନାଥ ସିଂହ ବଖାଣିଲ ॥

---

## ଲକ୍ଷପତି ସୌଦାଗର ବିଷୟ

ଏହାପରେ ସୁଜ୍ଜନରେ ଶୁଣ ଅନ୍ୟ ରସ । ଲକ୍ଷପତି ସୌଦାଗର ଥିଲ ସେହି ଦେଶ ॥ ମଗଧ ଦେଶରେ ସେହୁ ଦୋକାନ କରଇ । ଦିନେକ ସେ ଦେଶରଜା ତାହାକୁ ଡାକଇ ॥ କହିଲେ ହେ ଲକ୍ଷପତି ସୌଦାଗର ଶୁଣ । ବେଦବିଦ୍ୟା ପଢ଼ିଥିବା ଶ୍ରୋତ୍ରୀୟ ବ୍ରାହ୍ମଣ ॥ ଜଣେ ଆଣି ଆମ୍ଭପାଶେ ଦେଇ ପାରିବୁ କି । କହେ ଲକ୍ଷାଧିପ ତୁମ୍ଭେ ନ ଭାଳ ଏଥିକି ॥ ତୁମ୍ଭ ରାଜ୍ୟେ ଆସି ମୁହିଁ କରୁଛି ବେପାର । ଆଜ୍ଞା ମାନ ଆଣି ଦେବ ନିଶ୍ଚେ ଦ୍ୱିଜବର ॥ ଏହା କହି ସୌଦାଗର ଶୀଘ୍ରେ ଚଳିଗଲ । ଉଜ୍ଜ୍ୱଳ ନଗରେ ଯାଇ ପ୍ରବେଶ ହୋଇଲ ॥ ତହିଁ ହରିହର ନାମେ ବ୍ରାହ୍ମଣେକ ଥାଇ । ଅଷ୍ଟାଦଶ ବିଦ୍ୟାରେ ସେ ନିପୁଣ ଅଟଇ ॥ ସବୁକଥା କହି ତାଙ୍କୁ ସଙ୍ଗେ ଘେନିଗଲ । ମଗଧ ଦେଶରେ ଯଥାକାଳେ ପହଞ୍ଚିଲ ॥ ସଙ୍ଗେ ଧରି ବ୍ରାହ୍ମଣକୁ ଗଲ ରାଜାପାଶ । ଦେଖି ତାଙ୍କୁ ମଗଧେଶ ଲଭିଲେ ସନ୍ତୋଷ ॥ କିଛିଦିନ ରଖାଇଲେ ବସାସଜ୍ଞା ଦେଇ । ଯାଗ କରାଇଲେ ତିନିଗୋଟି ତାଙ୍କ ଦେଇ ॥ ଶେଷକରି ଯାଗକର୍ମ ମଗଧ ଅଧିପ । ସାତୋଟି ମାଣିକ୍ୟ ଦେଲେ ଦକ୍ଷିଣା ସ୍ୱରୂପ ॥ ସେ ମାଣିକ୍ୟ ଧରି ବିପ୍ର ଆନନ୍ଦ ମନରେ । କହିଲ ଏମନ୍ତ ଲକ୍ଷପତି ନିକଟରେ ॥ ଶୁଣ ଆହେ ସୌଦାଗର ମୋର

ବଚନକୁ । ଆଜି କାଲି ତୁମ୍ଭେ ଯିବ ଯାତ୍ରୀ ଘରକୁ ॥ ଏ ସାତୋଟି
ମାଣିକ୍ୟ ଯେ ମୋର ନେଇଥିବ । ତତ୍‌କ୍ଷଣି ଯାଇ ମୋର ପିତା
ହସ୍ତେ ଦେବ ॥ ବଳା ବନ୍ଧା କରି ଏହା ଚଳିଥାନ୍ତି ସେଠି । ଯତ୍ନେ
ଯିବ ମୁହିଁ ଆଉ ଦିନାକେତେ ରହି ॥ ଏହା ଶୁଣି ସୌଦାଗର ସେ
ମାଣିକ୍ୟ ନେଲା । ଖରଚରେ ଦେଶେ ଯିବା ପାଇଁ ବାହାରିଲା ॥
ଯାଉଁ ଯାଉଁ ବାଟେ ଦେଖି ଅମୂଲ୍ୟ ରତନ । ଲକ୍ଷପତି ସୌଦାଗର
ବିଚାରଇ ପୁଣ ॥ ଅମୂଲ୍ୟ ମାଣିକ୍ୟ ଏହା ରଖିବି ଲୁଚାଇ । କି କରିବ
ବିପ୍ର ତାକୁ କହିବି ଭଣ୍ଡାଇ ॥ ଏହା ଭାବି ନାଉରିଙ୍କ କହଇ ସାଧବ ।
କହିବି ମୁଁ କଥାଟିଏ ମନେ ରଖିଥିବ ॥ ଗୋଳମାଳ କଲେବେଳେ
ବିପ୍ର ହରିହର । ଏହି କଥା ସାକ୍ଷୀ ହୋଇ କହିବ ନିକର ॥ ଦେଖି-
ଅଛୁଁ ଆମ୍ଭେ ଲକ୍ଷପତି ସୌଦାଗର । ସାତୋଟି ମାଣିକ୍ୟ ଦେଲା
ପିତାଙ୍କୁ ତୁମ୍ଭର ॥ ଏହା କହି ତାଙ୍କୁ କିଛି ଟଙ୍କା ଦେଲା ଲାଞ୍ଚ । ଘରେ
ସେ ମାଣିକ୍ୟ ରଖି ରଚିଲା ପ୍ରପଞ୍ଚ ॥ ଏଥିଅନ୍ତେ କେତେଦିନ ବିତି
ଯିବା ପରେ । ହରିହର ବିପ୍ର ଆସି ପହଞ୍ଚିଲା ଘରେ ॥ ଦେଖିଲାକ
ଘରେ ତାର ଖାଇବାକୁ ନାହିଁ । ମରୁଛନ୍ତି କୁଟୁମ୍ବଟି ଛଟପଟ ହୋଇ ।
ପଚାରିଲା ତା ବାପାକୁ ମନେ ଧରି ଦକ । ଦେଇଥିଲି ସୌଦାଗର
ହାତେ ମୁଁ ମାଣିକ୍ୟ ॥ ବଳା ବନ୍ଧା ନ କରି ତା କପାଁ କହ ପାଅ ।
ବୁଢ଼ା ବିପ୍ର ଏହା ଶୁଣି ହସେ ଟହ ଟହ ॥ ଦେଖା ନାହିଁ ଆଜଯାଏ
ସୌଦାଗର ମୁଖ । କେଉଁଦିନ ଆଣି ମୋତେ ଦେଲା ସେ ମାଣିକ୍ୟ ॥
ତାହା ଶୁଣି ହରିହର ବେଗେ ଚାଲିଗଲା । ଲକ୍ଷପତି ସୌଦ.ଗର
ନିକଟେ ମିଳିଲା ॥ କହିଲା ହେ ସୌଦାଗର ଏହା କପାଁ କଲ ।
ଦେଇଥିଲି ମାଣିକ୍ୟ ମୋ ପିତାଙ୍କୁ ନ ଦେଲ । ନ ପାଇ ସେ ମାଣିକ୍ୟ
ମୋ ପିତା ବହୁ ଦୁଃଖ । ପାଇଲେଣି କଲ ତାଙ୍କୁ କ ଲାଗି ବିମୁଖ ॥
ଏବେ ମୋ ମାଣିକ୍ୟ ଦିଅ ବେଗେ ମୁହିଁ ଯିବି । ବଳାକଣା କରି

ମୋର କୁଟୁମ୍ବ ପାଳବ ॥ ଏହା ଶୁଣି ସୌଦାଗର କ୍ରୋଧେ ଥରହର । ହୋଇ କହେ ଦେଉଥିବ ରତ୍ନ କେତେବାର ॥ ସାକ୍ଷୀ ରଖିକରି ତାହା ଦେଲି ତୋ ବାପକୁ । ଅବିଶ୍ବାସ କଲେ ଏବେ କହ ଭୂ ରାଜାକୁ ॥ ବିଗ୍ରରରେ ସାକ୍ଷ ଯେବେ ଦେଇ ନ ପାରିବ । ସେତେବେଳେ ପୁଣି ଥରେ ରତ୍ନ ତୋତେ ଦେବ ॥ ଏହା ଶୁଣି କି କରିବ ବ୍ରାହ୍ମଣ ବିଚାରି । ଭୋଜ ନୃପ ଆଗେ ଯାଇ ଗୁହାରି କରିଲ ॥ ଆଦ୍ୟପ୍ରାନ୍ତ ସବୁକଥା ନରେଶ ଶୁଣିଲେ । ଲକ୍ଷପତିକୁ ପିଆଦା ହାତେ ଡ଼କାଇଲେ ॥ ଆଜ୍ଞା ଶୁଣି ଲକ୍ଷପତି ସୌଦାଗର ଗଲା । ଭୋଜରାଜ ସିଂହାସନତଳେ ଠିଆ ହେଲା । ଦେଖି ତାକୁ ପ୍ରଶ୍ନକଲେ ଭୋଜ ନରସାଇଁ । ବ୍ରାହ୍ମଣ ମାଣିକ୍ୟ ତୁହୋ ନ ଦେଲୁ କିପାଇଁ ॥ ଲକ୍ଷପତି କହେ ମୁହିଁ ଆସିବାର କ୍ଷଣି । ମାଣିକ୍ୟ ଯେ ଦେଇ ଯାଇ ପିତା ହସ୍ତେ ଗଣି ॥ ସେତେବେଳେ ବିପ୍ରପିତା ସେଠାବରେ ଥିଲା । କେଉଁଦିନ ରତ୍ନ ମୋତେ ଦେଲ ହେ ବୋଇଲା ॥ ଲକ୍ଷପତି ବୋଲେ ବୁଢ଼ା ମିଛ କହୁ ତୁହି । ଦେଖିଛନ୍ତି ନାଉରିଏ ଦେଲାବେଳେ ମୁହିଁ ॥ ଏହା କହି ନାଉରୀଙ୍କୁ ଆଣି ସାକ୍ଷୀ ଦେଲା । ଏ ସାକ୍ଷୀରେ ରଜାଙ୍କର ସନ୍ଦେହ ଜନ୍ମିଲା ॥ ସନ୍ଦେହ ହେବାରୁ ରାଜା ଛିଣ୍ଡାଇଲେ ନାହିଁ । ଦଉଡ଼ିଲେ ପ୍ରତିଦିନ ମୁଦାଲୁ ମୁଦେଇ ॥ ଦିନେ ଗୋରୁଚରା ରଜା ହୁଙ୍କାର ଉପରେ । ବସିଥିଲା ଗଲେ ଦୁହେଁ ରାଜଦରବାରେ ॥ ଯାଉଥିଲେ ସେହି ବାଟେ ତାହାଙ୍କୁ ଦେଖିଲା । ପଠାଇଣ ଡ଼ଗରା ସେ ପାଶେ ଡ଼ାକନେଲା ॥ ପଚାରିଲା କି କାରଣେ ତୁମ୍ଭେ ପ୍ରତି ଦିନ । ଦଉଡ଼ୁଛ ଏହିବାଟେ ସେ କଥା କହିଣ ॥ ତାହାଠାରୁ ଏହାଶୁଣି ସେହି ଦୁଇଜଣ । ଯେଯାହାର ଆପତ୍ତି ତା ଜଣାଇଲେ ପୁଣ ॥ ଶୁଣି କହେ ହୁଙ୍କାରଜା ଏହି ସ୍ଥିର ନ୍ୟାୟ । ରଜାଙ୍କର ଏଥିପାଇଁ ହୁଅଇ ସଂଶୟ ॥ ତୁମ୍ଭେ ଦୁଇଜଣ ରାଜା ଆଗେ

ଯାଇ କହ । ଯେବେ ସେ ବୋଲିବେ ଛିଣ୍ଡାଇବ ମୁହିଁ ନ୍ୟାୟ ॥
ମୁହାଲି ମୁହେଇ ଏହାଶୁଣି ହଉଡ଼ିଲେ । ଦୁଙ୍କାରଜା କଥାଯାକ ରାଜାଙ୍କୁ
କହିଲେ ॥ ଶୁଣିରାଜା ଦେଲେ ଆଜ୍ଞା କରୁ ସେ ବିଚାର । ଦେଖିବା
ସେ ନ୍ୟାୟ କରେ କେଉଁ ପରକାର ॥ ଏହାଶୁଣି ଦୁଙ୍କା ରାଜା
ହୋଇଲା ସନ୍ତୋଷ । ମୁହାଲି ମୁହେଇ ସାକ୍ଷୀ ହେଲେ ପରବେଶ ॥
ସାକ୍ଷୀମାନେ ତାହା ଆଗେ କହିଲେ ଏସନ । ଦେଖିଛୁ ମାଣିକ୍ୟ
ଆମ୍ଭେ ହେଲି ମହାଜନ ॥ କହିଲା ସେ ଦୁଙ୍କାରଜା ଦେଖିଅଛ
ଯେବେ । ମୁହିଁ ଯାହା କହୁଅଛି କର ଯାଇ ସବେ ॥ ଦେଖିଥିଲ
ଯେଉଁ ପରି ମାଣିକ୍ୟ ହେବାର । ଗଢ଼ିଆଣ ସେହିପରି ମାଟିରେ
ସତ୍ୱର ॥ ଅଲଗା ଅଲଗା ହୋଇ ବସ ଜଣେ ଜଣେ । ଜାଣିବେ
ତୁମ୍ଭଙ୍କୁ ଆମ୍ଭ ଜଗୁଆଳମାନେ ॥ ସାକ୍ଷୀମାନେ ଏହାଶୁଣି ଠାବେ ଠାବେ
ଗଲେ । ତାଙ୍କ ସଙ୍ଗେ ସଙ୍ଗେ ଯାଇ ପ୍ରହରୀ ଜଗିଲେ ॥ ମାଣିକ୍ୟକୁ
ନାଉଗୀଆ ଦେଖିବେ ବା କାହୁଁ । ମନେ ମନେ ପାଞ୍ଚ ପାଞ୍ଚ ଗଢ଼ିଲେ
ସେ ତହୁଁ ॥ କେହୁ ଆମ୍ବ କେ ବା ତାଳ କେ ପଣସ ପରି । ଗଢ଼ିଲି
କେ ବର କୋଳି ସୂକ୍ଷ୍ମ ବୁଦ୍ଧି ଧରି । ଗଢ଼ାଗଢ଼ି କରି ସାରି ଯତନେ
ଧଇଲେ । ଦୁଙ୍କା ନରପତି ଆଗେ ନେଇ ଥୋଇଦେଲେ । ଦୁଙ୍କାନୃପ
ଦେଖି ସୌଦାଗରକୁ ବନ୍ଧାଇ । ଭୋଜ ନରପତି ପାଶେ ଦେଲା
ପଠାଇ । ବିଚାର ତାହାର ଭୋଜ ନରେଶ ଦେଖିଲେ । ସୌଦାଗର
ଠାରୁ ବହୁତ ରତ୍ନ ହିଆଇଲେ ॥ ବିଚାରିଲେ ମନେ ମନେ ଗଉଡ଼ର
ପୁଅ । ଛିଣ୍ଡାଇଲା କି ପ୍ରକାରେ ଏଡ଼େ ବଡ଼ ନ୍ୟାୟ ॥ ଏତେ ଭାବି
ପାତ୍ର ମନ୍ତ୍ରୀ ଧଇଲେ ସଙ୍ଗରେ । ଗୋରୁଚରା ଛତ୍ରକ ପାଶେ
ପ୍ରବେଶିଲେ । ଭୋଜରାଜେ ଦୂରୁଁ ଦେଖି ଗୋପାଳ ବାଳକ ।
ଦୁଙ୍କା ଗୁଡ଼ ତଳେ ଠିଆହୋଇ ବହି ହକ । ପାଶେ ଦେଖି ଭୋଜରାଜା
ପଚାରିଲେ ତାକୁ । 'କପରି କଲୁ ଏ ନ୍ୟାୟ କହ ତ ଆମ୍ଭଙ୍କୁ ॥ ଏହା

ଶୁଣି ସେ ଗୋପାଳ କିଛି ନକହିଲା । ଥନଥନ ଆସି କରି ପଚ୍ଛଘୁଞ୍ଚା ଦେଲା ॥ ଏହା ଦେଖି ନରପତି ମନେ ବିଚାରିଲେ । ଦ୍ରବ୍ୟକିଛି ଥାଇ ପାରେ ଏହାଙ୍କ ମଧ୍ୟରେ ॥ ସେ ହୁଙ୍କାକୁ ଛଡାଇଲେ ଲଗାଇ ମୂଳିଆ । ତାହାତଳେ ସିଂହାସନ ହୋଇଥିଲା ଠିଆ ॥ ବତିଶଟି ପିତ୍ତୁଳାରେ ବଶଇ ଶୋଭିତ । ତାକୁ ଦେଖି ନରପତି ହେଲେ ଆଚମ୍ବିତ ॥ ଏହି ସିଂହାସନଗୁଣେ ଗୋରୁରଖା ପିଲେ । କହୁଥିଲେ ସୁବଚନର ବୋଲି ସେ ଭାବିଲେ ॥ ଏହି ସିଂହାସନ ନେବା ରାଜନବରକୁ । ଏହା ପରେ ବସି ଆମ୍ଭେ ପାଳିବା ରାଜ୍ୟକୁ ॥ ଏହା ଭାବି ସଫା କରି ତାକୁ ଘେନି ଗଲେ । ବିଚାର ସ୍ଥାନରେ ନେଇ ଯତନେ ରଖିଲେ ॥ ଶୁଭଲଗ୍ନଦେଖି ଭୋଜ କଲେ ସ୍ନାନ ଦାନ । ଡକାଇଣ ଦରିଦ୍ରଙ୍କୁ ଦେଲେ ବସ୍ତ୍ର ଅନ୍ନ ॥ ଦେବ ପିତୃ ଦ୍ୱିଜ ତୋଷି ହୃଷ୍ଟମନ ହୋଇ । ସିଂହାସନ ପାଶେ ଗଲେ ଭୋଜ ନରସାଇଁ ॥ ଜଗନ୍ନାଥ କହେ ଯେବେ ପୂର୍ବ ଭାଗ୍ୟଥିବ । ତେବେ ଆହେ ନରପତି ଏଥିରେ ବସିବ ॥

---

## ପ୍ରଥମ ପୁତ୍ତଳିର କଥା

ଏହାପରେ ଆନନ୍ଦରେ ଭୋଜ ନରେଶ୍ୱର । ସିଂହାସନେ ଉଠିବାକୁ ଯାଆନ୍ତେ ସତ୍ୱର ॥ ପ୍ରଥମ ପୁତ୍ତଳି କହେ ଆହେ ନରନାଥ ଏଥି ବସିବାକୁ ତୁମ୍ଭେ ନୁହ ସମରଥ ॥ ବସନ୍ତି ଏ ସିଂହାସନେ ବିକ୍ରମ ମିହିର । ଯେବେ ତାଙ୍କ ସମାନରେ ପୁଣ୍ୟ କରିପାର ॥ ତେବେ ଯାଇ ଏହି ସିଂହାସନରେ ବସିବ । ଏହା ଶୁଣି ପ୍ରଶ୍ନ କଲେ ଭୋଜ ନରଦେବ ॥ କହ ହେ ପୁତ୍ତଳି କେଉଁ ରୂପେ ସେ ବିକ୍ରମ । କରି-ଥିଲେ ଧର୍ମକୀର୍ତ୍ତି ବୁଝାଇ ଉତ୍ତମ ॥ କୁରୁପ ପୁତ୍ତଳି ଭୋଜ ନୃପ ବାଣୀ ଶୁଣି । ବୋଇଲା ହେ ଶୁଣ ତେବେ ଭୋଜ ନୃପମଣି ॥ ଚକ୍ରବର୍ତ୍ତୀ ଥିଲେ ରାଜା ବିକ୍ରମଆଦିତ୍ୟ । ଧର୍ମକୀର୍ତ୍ତି ସ୍ଥାପିବାରେ ଥାଏ ତାଙ୍କ ଚିତ୍ତ ॥

ବନକରେ ଗଲେ ସେହୁ ବସନ୍ତ କାଳରେ । ରାଣୀ ଦାସୀ ପରିବାରି ଘେନି ସଙ୍ଗତରେ ॥ ବନମଧ୍ୟେ ଥିଲା ତାଙ୍କ ବିହାର କାନନ । ଦେଖୁଥିଲେ ବୁଲି ବୁଲି ବନ ଶୋଭମାନ ॥ ସୁଗନ୍ଧେ ବସନ୍ତ ଋତୁ ନାନା ଫୁଲ ଫୁଟି । ମନ୍ଦ ପବନରେ ବାସ ଆମୋଦ ଉଠଇ ॥ ଥିଲେ ସେ ବନରେ ଏକ ତପସ୍ୱୀ ବ୍ରାହ୍ମଣ । ଦେଖିଲେ ସେ ରାଜସ୍ତ୍ରିଙ୍କି ଅତି ଶୋଭବନ ॥ କାମଶରେ ପୀଡ଼ା ପାଇ ହୋଇ ଅଚେତନ । ବିକ୍ରମା-ଦିତ୍ୟଙ୍କୁ ଯାଇ ଜଣାଇଲେ ପୁଣ ॥ ତୁମ୍ଭ ନାରୀଗଣେ ବନ ମଧ୍ୟେ ଦେଖିକରି । କାମବାଣେ ମୋର ଦେହ ହେଉଅଛି ଘାରି ॥ ତହିଁ ମଧ୍ୟୁ ନାରୀ ଏକ ମତେ ତୁମ୍ଭେ ଦେଲେ । ନିବାରଣ କରିବ ମୁଁ କାମବାଧା ଭଲେ ॥ ସହି ନ ପାରିଲେ ରାଜା ତାକୁଷ୍ଟ ବଚନ । ଦାସୀମଧ୍ୟୁ ରୂପବନ୍ତୀ ବାଛିଲେକ ପୁଣ ॥ ନାନା ଅଳଙ୍କାର ତାକୁ ଭୂଷଣ କରାଇ । ସେ ତପସ୍ୱୀ ଦ୍ୱିଜ ହାତେ ଅରପିଲେ ନେଇ ॥ ବିହରିବା ଲାଗି ଛାଡ଼ିଦେଲେ ଉପବନ । ରତିଭୋଗେ ମହାସୁଖେ ରହିଲେ ବ୍ରାହ୍ମଣ ॥ ବିକ୍ରମ ରାଜନଙ୍କର ଏତେକ ଚରିତ । ମନେ ରଖିଥାଅ ଶୁଣ ଭୋଜ ନରପତି । ଏହା କହି ସେ ପୁତ୍ତଳୀ ସିଂହାସନୁ ଖସି । ଜଗନ୍ନାଥ ସିଂହ କହେ ହେଲା ସ୍ୱର୍ଗବାସୀ ॥

---

## ଦ୍ୱିତୀୟ ପୁତ୍ତଳୀର କଥା

ଦ୍ୱିତୀୟ ଦିବସ ଯହିଁ ହୋଇଲା ପ୍ରବେଶ । ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଭୋଜ ନରଇଶ ॥ ସ୍ନାନ ସନ୍ଧ୍ୟା ଆଦି ନିତ୍ୟକର୍ମ ଶେଷ କଲେ । ଡକାଇଣ ବିପ୍ରଗଣ ବହୁ ଦାନ ଦେଲେ ॥ ରାଜବିଧି ଅନୁଯାୟୀ ସାରି ଦେବାର୍ଚ୍ଚନ । ସଙ୍ଗେ ଘେନି ପାତ୍ର ମିତ୍ର ପାରିଷଦ ଗଣ ॥ ସିଂହାସନ ତଳେ ଯାଇ ଉପସ୍ଥିତ ହେଲେ । ଇଷ୍ଟଦେବ ସ୍ମରି ଧୀରେ ଉପରେ ଉଠିଲେ ॥ ଦ୍ୱିତୀୟ ପାହାଚେ ଯହିଁ

ପକାଇଲେ ପାଦ । ତ୍ୱିଷ୍ଟିପୁ ପୁତ୍ତଳି ଉଠେ କରଇ ନିଷେଧ । ବିକ୍ରମ ରାଜାଙ୍କର ଏହି ସିଂହାସନ । କି ରୂପରେ ବସିବ ହେ ଭୋଜ ନର-ବର ॥ ବିକ୍ରମାଦିତ୍ୟଙ୍କ ପରି ହୋଇଲେ ନିର୍ଲୋଭ । ଏହି ସିଂହାସନ ଗୋଟି କରିବ ହେ ଲଭ ॥ ଭୋଜରାଜ ଏହା ଶୁଣି ପଚାରିଲେ ତାକୁ । ନିର୍ଲୋଭ ସେ କି ପ୍ରକାରେ କହ ତୁ ଆମ୍ଭଙ୍କୁ ॥ ତ୍ରିଷ୍ଟିପ ପୁତ୍ତଳି ତାଙ୍କୁ କହିଲା ବଚନ । ଯାଗ କରିବାକୁ ଭାବି ବିକ୍ରମ ରାଜନ ॥ ପଣ୍ଡିତ ବ୍ରାହ୍ମଣ ଗଣେ ଆଣିଲେ ଡକାଇ । ତାଙ୍କୁ ପଠା-ଇଲେ ହସ୍ତେ ନିମନ୍ତ୍ରଣ ଦେଇ । ସେ ମଧ୍ୟରୁ ଜଣେ ଦ୍ୱିଜ ସମୁଦ୍ର ତୀରରେ । ଠିଆ ହେଲେ ଯାଇଁ ତାଙ୍କୁ ବରିବା ଆଶାରେ । ବିକ୍ରମଙ୍କ ନିମନ୍ତ୍ରଣ ସାଗର ଜାଣିଲେ । ନରରୂପ ଧରି ଆସି କୂଳେ ପ୍ରବେଶିଲେ । ନିମନ୍ତ୍ରଣ ପାଇ ତାଙ୍କୁ କହିଲେ ସାଗର । ଯିବାଲାଗି ଯାଗସ୍ଥାନ ନାହିଁ ମୋତେ ତର ॥ ଦେଉଛି ଏ ଚାରିଗୋଟି ରତ୍ନ ତୁମ୍ଭେ ନେବ । ବିକ୍ରମଙ୍କୁ ଦେଇ ଏହା ବୁଝାଇ କହିବ ॥ ଏକ ରତ୍ନେ ମିଳେଅନ୍ନ ଏକେ ଅଳଙ୍କାର । ଆର ଏକେ ମିଳେ ଧନ ଅନ୍ୟେ ଯୋଦ୍ଧା ବୀର । ଏହା କହି ତାଙ୍କୁ ଚାରିଗୋଟି ରତ୍ନ ଦେଲେ । ଜଳମଧ୍ୟେ ସେହିକ୍ଷଣି ଅନ୍ତର୍ଦ୍ଧାନ ହେଲେ ॥ ରତ୍ନ ଘେନି ସେ ବ୍ରାହ୍ମଣ ବାହୁଡ଼ିଣ ଗଲା । ଯାଉଁ ଯାଉଁ ବାଟେ ତାର ବିଳମ୍ବ ହୋଇଲା ॥ ପହଞ୍ଚିଲା ଯାଇ ଯାଗ ଶେଷ ହେଲା ପରେ । ବୁଝାଇ କହିଲା ସବୁ ନୃପେ ବିନୟରେ ॥ ରତ୍ନ ଚାରିଗୋଟି ବିପ୍ର ଦେଲା ନୃପ ହସ୍ତେ । ମେଲାଣି ମାଗିଲା ଗୃହେ ଯିବାକୁ ତୁରନ୍ତେ । ଏହା ଶୁଣି ନରପତି କହିଲେ ବିପ୍ରଙ୍କୁ । ନିଅ ଏଥୁ ରତ୍ନ ଏକ ବାଛିଣ ମନକୁ । ଏହା ଶୁଣି ସେ ବ୍ରାହ୍ମଣ ବୋଇଲେ ରାଜନ । ଘରେ ଯାଇ ବୁଝି ଆସେ କୁଟୁମ୍ବଙ୍କ ମନ ॥ ଏହା କହି ସେ ବ୍ରାହ୍ମଣ ନିଜଗୃହେ ଗଲା । ପୁତ୍ର ଭାର୍ଯ୍ୟା ଆଗେ ସବୁ ବିଷୟ କହିଲା ॥ କହିଲା ତା ଭାର୍ଯ୍ୟା ଯହିଁ ମିଳେ ଅଳଙ୍କାର । ସେହି ରତ୍ନ

ଗୋଟି ଆଣ ଯାଇ ବୋଲ ମୋର ॥ ପୁତ୍ର ବୋଲେ ଧନ ଦେବା ରତ୍ନଗୋଟି ଆଣ । ଅନ୍ନ ମିଳିବା ରତ୍ନରେ ବ୍ରାହ୍ମଣର ମନ ॥ କାହାର ମନକୁ କାହା କଥା ନ ପାଇଲା । ବୋଲ ବୋଲି ହୋଇ ତହିଁ କଳି ଉପୁଜିଲା । ସେ ବ୍ରାହ୍ମଣ ଆରଦିନ ପ୍ରଭାତରୁ ଯାଇ । ଛିଡ଼ା ହେଲା ନୃପ ଆଗେ ବଦନ ଶୁଖାଇ ॥ ଦେଖି ତାଙ୍କୁ ପଚାରିଲେ ବିକ୍ରମ ମିହିର । କିରସ ହେଶଇ କପାଁ ବଦନ ତୁମ୍ଭର । କହିଲା ସେ ଘର କଥା ବୁଝାଇ ତାହାଙ୍କୁ । ତିନିଗୋଟି ରତ୍ନ ନେଇ ନୃପ ଦେଲେ ତାଙ୍କୁ ॥ ଏହିପରି ସେ ବିକ୍ରମ ଥିଲେ ଲୋକମାନ୍ୟ । ଛାଡ଼ିଲ ପୁତ୍ତଳି ଏହା କହି ସିଂହାସନ ॥ କହେ ଜଗନ୍ନାଥ ତହୁଁ ଗଲା ଶୂନ୍ୟ ମାର୍ଗେ । ଗନ୍ଧର୍ବ ହୋଇଣ ସୁଖେ ବାସ କଲା ସ୍ୱର୍ଗେ ॥

---

## ତୃତୀୟ ପୁତ୍ତଳିର କଥା

ଭୋଜ ନୃପ ଛାଡ଼ିକରି ଗଲେ ସିଂହାସନ । ପୁଣି ବସିବାକୁ ଖୋଜାଇଲେ ଶୁଭ ଦିନ ॥ କରାଇ ବିବିଧ ଦାନ ପୁଣ୍ୟ ମହୋତ୍ସବ । ମାହେନ୍ଦ୍ର ଯୋଗରେ ଯାଇ ନୃପ ଭୋଜଦେବ ॥ କରନ୍ତେ ସେ ସିଂହା-ସନେ ବସିବାକୁ ମନ । ତୃତୀୟ ପୁତ୍ତଳି ତାଙ୍କୁ କହଇ ବଚନ ॥ ବୃଥା ଆଶା କର ନରସାଇଁ ଅକାରଣେ । ନୁହ ତୁମ୍ଭେ ଯୋଗ୍ୟ ବସିବ ଏ ସିଂହାସନେ ॥ ଏଥିରେ ଯେ ବସୁଥିଲେ ବିକ୍ରମଆଦିତ୍ୟ । ତୁମ୍ଭେ ଯେବେ ତାଙ୍କ ପରି ହେବ ଦୃଢ଼ଚିତ୍ତ ॥ ଆସି ତେବେ ସିଂହାସନ ଉପରେ ବସିବ । ପଚାରିଲେ ଏହା ଶୁଣି ଭୋଜ ନରଦେବ ॥ କହେ ହେ ପୁତ୍ତଳି ସେହି ବିକ୍ରମ ଚରିତ । କେଉଁରୂପେ ଥିଲେ ସେହୁ ଦୃଢ଼ଚିତ୍ତ ॥ ଖୁରୁମ ପୁତ୍ତଳି ଶୁଣି କହଇ ଏ ବାଣୀ । ବିକ୍ରମଙ୍କ ରାଜ୍ୟେ ଥିଲା ଏକ ବିପ୍ରମଣି । ପୁତ୍ର ନ ଥିବାରୁ ସେବା କଲା ଭଗବତୀ । ଭଗବତୀ କରୁଣାରୁ ପୁତ୍ର ଉତପତି ॥ ନାମ ହେଲା ସେ

ସୁନ୍ଦର ଭଗବନ୍ତ ଦତ୍ତ । ବେଦବିଦ୍ୟାପ୍ରବୀଣେ ସେ ହୋଇଲା ପଣ୍ଡିତ ॥ କେତେ ଦିନେ ମାତାପିତା ମରିଗଲେ ତାର । ଭଗବନ୍ତ ଦତ୍ତ କଲା ମନରେ ବିଚାର ॥ ପିତାମାତା ମଲେ ଗୃହେ ଆଉ କାର୍ଯ୍ୟ ନାହିଁ । ବନମଧ୍ୟେ ଯାଇ ତପସ୍ୟା ମୁଁ ସାଧିବଇଁ ॥ ଏହା ଭାବି ଭଗବନ୍ତ ଦତ୍ତ ତହୁଁ ଚଳେ । ବନେ ଫଳମୂଳ ଖାଇ ତପ ଆଚରିଲେ ॥ ଦିନକରେ ବିକ୍ରମ ଯେ ମୃଗୟାଇଚ୍ଛାରେ । ଅଶ୍ୱର ପିଠିରେ ଗଲେ ସେବନମଧ୍ୟରେ ଜୀବ ଜନ୍ତୁ ଖୋଜୁ ଖୋଜୁ ସନ୍ଧ ହେଲା ଆସି । ଏକା ହୋଇ ନରପତି ଗଛମୂଳେ ବସି ॥ ସନ୍ଧ ହେଲା ବୋଲି ମନେ ହୋଇଲେ ଭାବିତ । ଏ ସମୟେ ପ୍ରବେଶିଲା ଭଗବନ୍ତ ଦତ୍ତ ॥ ତାଙ୍କୁ ଦେଖି ପଚାରିଲେ ବିକ୍ରମ ମିତ୍ରର । କି ନାମ ତୁମ୍ଭର ଅଟେ କେଉଁଠାରେ ଘର ॥ ସେ କହିଲା ବ୍ରହ୍ମଙ୍କ ବଂଶେ ମୋର ଜନ୍ମ । ତପ କରେ ଭଗବନ୍ତ ଦତ୍ତ ମୋର ନାମ ॥ ତୁମ୍ଭେ କିଏ କାହିଁପାଇଁ ବସିଛ ଏଠାରେ । ଦିଅ ତୁମ୍ଭ ପରିଚୟ ଶୁଣିବି ମୁଁ ଏବେ । ବିକ୍ରମାଦିତ୍ୟ ମୁଁ ଅଟେ କହିଲେ ନୃପତି । କି କାରଣେ ତୁମ୍ଭେ ଥିବ ବନେ କଷ୍ଟେ ଅତି ॥ ଏହା କହି ସଙ୍ଗେ ତାଙ୍କୁ ନେଇ ଗଲେ । ଧନଦ୍ରବ୍ୟ ଗୃହ ଦେଇ ଯତ୍ନେ ରଖାଇଲେ ॥ ପଣ୍ଡିତ ସଭାରେ ତାଙ୍କୁ ଦେଲେ ବଡ଼ପଣ । କୁଣ୍ଡଳ ମୁଦ୍ରିକା ଦେଇ ତୋଷିଲେ ତା ମନ । ବିକ୍ରମାଦିତ୍ୟଙ୍କ ଧୈର୍ଯ୍ୟ ବୁଝିବା ନିମନ୍ତେ । ସେ ପଣ୍ଡିତ ଏକଦିନେ ଅତ୍ୟନ୍ତ ଗୁପତେ ॥ ରାଜକୁମାରଙ୍କୁ ସଙ୍ଗେ ନେଲା ଡାକି କରି । ଲୁଚାଇ ରଖିଲେ ତାଙ୍କୁ ନିଜ ଘରେ ଭରି ॥ ହଜିବାରୁ ରାଜପୁତ୍ର ପଡ଼ିଲା ଚହଳ । ଖୋଜାଇଲା ରାଜା ଆଜ୍ଞା ପାଇ ସରଦାର ॥ ଖୋଜି ଖୋଜି ଡଗର ଯେ ନିରସ୍ତ ହୋଇଲେ । କି କରିବା ବୋଲି ଠାଏ ବସିଲେ ସେ କାଳେ । ସେ ସମୟେ ଭଗବନ୍ତ ଦତ୍ତଙ୍କ ଚାକର । ହାଡ଼ିଦାସ ନାମ ତାର ଜାତିରେ ଗୋପାଳ । ରାଜପୁତ୍ର ଗଳାହାର ନେଇ ବଜାରରେ । ବିକୁଥିଲା ଦେଖିଦେଲେ ସେକାଳେ ଡଗରେ ॥ ବଦଲେ ଧରି ହାତ-

କଣ୍ଠା ପିନ୍ଧାଇ ତା ହାତେ । ବିକ୍ରମଙ୍କ ସମୀପକୁ ନେଲେ ସେ ଲୁଚିତେ ॥ ବିକ୍ରମାଦିତ୍ୟଙ୍କୁ ଜଣାଇଲେ ହାଣ୍ଡିଦାସ । ଦେଇଛନ୍ତି ପଣ୍ଡିତେ ମୋ ନାହିଁ ଏଥି ଦୋଷ ॥ ରାଜନ ଶୁଣିଣ ମନ୍ତ୍ରିଙ୍କୁ ଡକାଇଲେ । ଭଗବନ୍ତଦତ୍ତ ତହୁଁ ଆଜ୍ଞା ପାଇ ଗଲେ ॥ ପଣ୍ଡିତଙ୍କୁ ପଚାରିଲେ ବିକ୍ରମ ମିହିର । ସତ୍ୟ କହ ପାଇଅଛ କେଉଁଠାରୁ ହାର ॥ ଏହା ଶୁଣି ଜଣାଇଲେ ଭଗବନ୍ତ ଦତ୍ତ । ଅର୍ଥହୀନ ଯୋଗୁଁ ମୋର ହେଲା ପାପଚିତ୍ତ । ମୂର୍ଖପଣେ ରାଜକୁମାରଙ୍କୁ ବଧ କଲି । ହାଣ୍ଡି ଦାସ ହାତେ ପଠାଇଣ ବିକୁଥିଲି ॥ ଏହା ଶୁଣି ସଭା ଲୋକେ ହେଲେ ଆଚମ୍ବିତ । ବିକ୍ରମ ଆଦିତ୍ୟ ପଚାରିଲେ ନିଜ ଚିତ୍ତ ॥ ସ୍ୱଭାବରେ ପଣ୍ଡିତ ଏ ପୁଣି ଆମ୍ଭ ପାଶ । ରହିଛନ୍ତି ଏ କଥାରେ ନୁହଇ ବିଶ୍ୱାସ ॥ ଏହା ଭାବି ବିପ୍ର ହାତେ ରତ୍ନହାର ଦେଇ । ଆଉ କିଛି ଧନ ଦେଲେ ଭଣ୍ଡାରରୁ ନେଇ ॥ ରାଜାଙ୍କର ଧୈର୍ଯ୍ୟପଣ ଦେଖି ସେ ପଣ୍ଡିତ । ସମର୍ପିଲେ କୁମାରଙ୍କୁ ହୋଇ ଆନନ୍ଦିତ ॥ ପୁତ୍ରକୁ ଦେଖିଣ ରାଜା ହରଷ ହୋଇଲେ । ସଭାଜନ ମୁଖ ଚାହିଁ ଏପରି କହିଲେ ॥ ଶତ୍ରୁ ହେଉ ଯେବେ ପଢେ ପଣ୍ଡିତ ଅଟଇ । ସେ ଲୋକକୁ ରଖିଥିବ ବିଶ୍ୱାସ କରାଇ ॥ ମିତ୍ର ଅବା ପୁତ୍ର ହେଉ ଯେବେ ମୂର୍ଖ ହେବ । ଶାସ୍ତ୍ରେ ଲେଖାଅଛି ତାକୁ ବିଶ୍ୱାସ ନ ଯିବ ॥ ଶୁଣିଲ ତ ଏବେ ଏହା ଆହେ ଭୋଜପତି । ତାଙ୍କର ସମାନ ଯେବେ ହେବ ଦୃଢ଼ମତି ॥ ତେବେ ଆସି ସିଂହାସନ ଉପରେ ବସିବ । ଏହା କହି ସେ ପୁତ୍ତଳି ଗୁଡ଼ିଲା ସେ ଠାବ ॥ କହେ ଜଗନ୍ନାଥ ସିଂହ ଶୂନ୍ୟେ ଉଡ଼ିଗଲା । ଦେବ ଦେହ ପାଇ ସୁଖେ ସ୍ୱର୍ଗରେ ରହିଲା ।

—ଃ*ଃ—

# ଚତୁର୍ଥ ପୁତ୍ତଳର କଥା

ଏଥୁଅନ୍ତେ ଭୋଜରାଜା ତିନି ଦିନ ପରେ । ହୋମ ଦାନ କରାଇଲେ ମହା ଆନନ୍ଦରେ ॥ ପାତ୍ରମନ୍ତ୍ରୀ ଘେନି ସିଂହାସନ ପାଶେ ଗଲେ । ବସିବାକୁ ସିଂହାସନ ଉପରେ ଉଠିଲେ ॥ ଚତୁର୍ଥ ପାବଚ୍ଛେ ନେଇ ପକାଉନ୍ତେ ଚରଣ । ଚତୁର୍ଥ ପୁତ୍ତଳି ତାଙ୍କୁ କଲା ନିବାରଣ ॥ ବୋଲେ ଏଥି ବସିବାକୁ ନୁହ ସମରଥ । ଏଥୁଠାରୁ ଫେରି ଯାଅ ଏବେ ନରନାଥ ॥ ଅମୂଲ୍ୟ ଅଟଇ ଏହୁ ଦେବ ସିଂହାସନ । ଏହା ପରେ ବସୁଥିଲେ ବିକ୍ରମ ରାଜନ । ତୁମ୍ଭେ ଯେବେ ତାଙ୍କ ପରି ଗୁଣଗ୍ରାହୀ ହେବ । ତେବେ ଆସି ସିଂହାସନ ଉପରେ ବସିବ ॥ ପୁଣି ତାକୁ ପଚାରିଲେ ଭୋଜ ନରସାଇଁ । ବିକ୍ରମ କିପରି ଥିଲେ କହ ଗୁଣଗ୍ରାହୀ ॥ ଧୂରୂପ ପୁତ୍ତଳି ଶୁଣି କହଇ ଏ ଗିର । ରାଜା ଥିଲେ ଏହି ରାଜ୍ୟେ ବିକ୍ରମ ମିହିର ॥ ଦିନେ ଏକ ସୌଦାଗର ବେପାରେ ଆଇଲା । ବିକ୍ରମ ରାଜନଆଗେ ଯାଇ ଦେଖାକଲା । ବୋଇଲା ଭୋରାଜା ମୋର କାଞ୍ଚିଦେଶେ ଘର । ନାନା ରାଜଧାନୀ ବୁଲି କରଇ ବେପାର ॥ ମଣିରତ୍ନ ଗଜମୁକ୍ତା ଆଣି ବିକୁଅଛି । ତୁମ୍ଭ ପାଇଁ ଏକ ମହାରତ୍ନ ଆଣିଅଛି ॥ ଏହା କହି ରତ୍ନ ଗୋଟି ନୃପ ହସ୍ତେ ଦେଲା । ଦୁଇଲକ୍ଷ ମୂଲ୍ୟ ଟଙ୍କା ତାର ଗଣିନେଲା ॥ ରତ୍ନ ଦେଖି ରାଜା ପଚାରିଲେ ସୌଦାଗର । କେତେ ରତ୍ନଅଛି ଏହିପରି ତୋ ପାଶରେ । ନୃପବାକ୍ୟ ଶୁଣି ତାଙ୍କୁ କହେ ସୌଦାଗର । ରତ୍ନ ଆଉ ଆଠଗୋଟି ଘରେଅଛି ମୋର ॥ ତାହା ଶୁଣି ନରପତି ଟଙ୍କା ଗଣିଦେଲେ । ବିଶ୍ବାସୀ ଲୋକ ଜଣେ ତା ସଙ୍ଗେ ପଠାଇଲେ ॥ ବୋଇଲେ ହେ ଲୋକ ତୁହି ଏହା ସଙ୍ଗେ ଯିବୁ । ରତ୍ନ ଆଣି ସାତଦିନେ ଆମ୍ଭ ପାଶେ ଦେବୁ ॥ ଏହା ଶୁଣି ଦୁଇଜଣ ସାଙ୍ଗ ହୋଇଗଲେ । ସୌଦାଗର ଘରେ ତିନିଦିନେ

ପହଞ୍ଚିଲେ ॥ ସୌଦାଗର ନିଜ ଘରୁ ଆଠ ରତ୍ନ ଆଣି । ରାଜପୁରୁଷଙ୍କ ହାତେ ଦେଲା କେତେ ଗଣି ॥ ଯତ୍ନ କରି ରତ୍ନ ଧରି ସେହୁ ବାହୁଡିଲା । ଆସୁ ଆସୁ ବାଟେ ଘୋର ନଈବଢ଼ିହେଲା ॥ ଅତିବଡ଼ ବଢି ସେହୁ ଡଙ୍ଗା ନ ଚଳଇ । ରତ୍ନ ଧରି ସେ ପୁରୁଷ ମନେ ବିଚାରଇ ॥ ଆଜ ଯାଇ ନ ପାରିଲେ କଣ୍ଠ କଟିଯିବ । ରାଜାଙ୍କର ଆଜ୍ଞା ନିଶ୍ଚେ ଅବଜ୍ଞା ହୋଇବ ॥ ଏହା ଭାବି ତିନିରତ୍ନ ନାଉରୀକି ଦେଲା । ନଦୀ ପାରି ହୋଇ ନୃପ ସମୀପେ ମିଳିଲା ॥ ସକଳ ବୃତ୍ତାନ୍ତ ତାଙ୍କୁ କହିଲା ବୁଝାଇ । ବାକି ପାଞ୍ଚରତ୍ନ ଦେଲା ନୃପ ହସ୍ତେ ନେଇ ॥ ଭୃତ୍ୟ ଗୁଣ ବୁଝି ରାଜା ଆନନ୍ଦିତ ହେଲେ । ପାଞ୍ଚରତ୍ନ ପୁଣି ତାକୁ ପୁରସ୍କାର ଦେଲେ ॥ ଗୁଣଗ୍ରାହୀ ଏହିପରି ବିକ୍ରମଆଦିତ୍ୟ । ଆହେ ଭୋଜ ଶୁଣିଲ ତ ତାହାଙ୍କ ଚରିତ ॥ ଏହା କହି ସେ ପୁତ୍ତଳି ତହୁଁ ଚଳିଗଲା । କହେ ଜଗନ୍ନାଥ ସିଂହ ସ୍ୱର୍ଗରେ ରହିଲା ॥

---

## ପଞ୍ଚମ ପୁତ୍ତଳିର କଥା

ଏହା ପରେ ଭୋଜନୃପ ଅପର ଦିନରେ । ସିଂହାସନେ ବସିବାକୁ ମନେ ବିଚାରିଲେ ॥ ଗଣକେ ଡକାଇ ଶୁଭ ଯୋଗ ବୁଝାଇଲେ । ଦେବପୂଜା ଦାନ ପୁଣ୍ୟ ବହୁତ ସେ କଲେ ॥ ଆନନ୍ଦରେ ତହୁଁ ଯାଇ ଉତ୍କଳ ନରେଶ । ପଞ୍ଚମ ପାବଚ୍ଛ ପରେ ହୁଅନ୍ତେ ପ୍ରବେଶ ॥ ପଞ୍ଚମ ପୁତ୍ତଳି ତାଙ୍କୁ ବୁଝାଇ କହଇ । ନ ବସନ୍ତି ନରଗଣ ସିଂହାସନେ ଯାଇ ॥ ବସୁଥିଲେ ଏକା ଏଥି ବିକ୍ରମ ଆଦିତ୍ୟ । ତାଙ୍କପରି ଭୂମେ ଯେବେ ହେବ ତପୋବନ୍ତ ॥ ତେବେ ଏହି ସିଂହାସନେ କରି ଆରୋହଣ । କିପାଁ ଏବେ ଅକାରଣେ ପାଇବ

କଥଣ ॥ ପୁଣି ତାକୁ ଦେଖିଲେ ଭୋଜ ନରେଶ୍ୱର । କହ ପୁତ୍ତଳି
ଶୁଣିବା ଚରିତ ତାଙ୍କର ॥ କପରି ଧାର୍ମିକ ଥିଲେ ବିକ୍ରମ ଆଦିତ୍ୟ ॥
ଏହା ଶୁଣି ସେ ପୁତ୍ତଳି କହିଲା ତୁରିତ । ପୁଣ୍ୟବନ୍ତ କେ ବା ହେବ
ତାଙ୍କ ସମାନରେ । ରାଜା ଥିଲେ ପୂର୍ବେ ସେହୁ ଉଜ୍ଜୟିନୀ ନଗରେ ॥
ଦିନକରେ ସେ ବିକ୍ରମ ପାରଧି ଲକ୍ଷ୍ୟରେ । ବିଜେକଲେ ପାତ୍ରମନ୍ତ୍ରୀ
ସୈନ୍ୟ ସଙ୍ଗତରେ ॥ ଅଶ୍ୱର ଉପରେ ବସି ଚଳିଲେ ତୁରିତ । ଘୋର
ବନମଧ୍ୟେ ଯାଇ ହୋଇଲେ ଉପସ୍ଥିତ ॥ ନବଖଣ୍ଡେ ଉଭୟ ଦିଗେ ଜାଲ
କରାଇଲେ । ଅନ୍ୟ ଦିଗେ ନରପତି ଏକାକୀ ଜଗିଲେ ॥ ବାକି ଅନ୍ୟ
ଦିଗଆଡ଼ୁ ରାଜଲୋକଗଣ । ଘଉଡ଼ିଲେ ଗାବଜନ୍ତୁ ବଜାଇ ନିଶାଣ ॥
ବାଦ୍ୟ ଶୁଣି ଭୟେ ଏକ ହରିଣ ଆଇଲା ନୃପତିଙ୍କ ପାଖେ ପାଖେ
ଶୀଘ୍ରେ ପଳାଇଲା ॥ ପଳାଇବା ଦେଖି ରାଜା ପଛେ ଗୋଡ଼ାଇଲେ ।
ଲୁଚିଲା କେଉଁଠି ରାଜା ଦେଖି ନ ପାରିଲେ ॥ ସେସମୟେ ସେହିଠାରେ
ଏକ ବୃଦ୍ଧା ନାରୀ । କାନ୍ଦୁଥିଲା କାଠବୋଝ ତଳେ ଥୋଇକରି ॥ ତାହା
ଦେଖି ନରପତି ପୁଚ୍ଛିଲେ ବଚନ । କାହିଁପାଇଁ ବନସ୍ତରେ କରୁଛୁ
ରୋଦନ ॥ ସେ କହିଲା କାଠ ବୋଝ ନ ପାରଇ ଟେକି । ଜୀବନ
ପୋଷିବି ଏହା ନେଇ ଗ୍ରାମେ ବିକି ॥ ଏହା ଶୁଣି ସେ ବିକ୍ରମ ନୃପ
ଦୟା କଲେ । ଘୋଡ଼ାରୁ ଓହ୍ଲାଇ କାଠ ବୋଝ ଟେକି ଦେଲେ ॥
ମୁଣ୍ଡେ ବୋଝ ଧରି ବୃଦ୍ଧା ଆନନ୍ଦ ହୋଇଲା । ମୌନାବତୀ କନ୍ୟା
ତୁମ୍ଭେ ଲଭ ହେ ବୋଇଲା ॥ ବିକ୍ରମ ଆଦିତ୍ୟ ଶୁଣି ବିନୟେ
ଭାଷିଲେ । କେଉଁଦେଶରେ ସେ କନ୍ୟା ଅଛି କହ ଭଲେ ॥ ଶୁଣି
ବୃଦ୍ଧା କହେ କନ୍ୟା ଦକ୍ଷିଣ ଦେଶରେ । ମୌନାବତୀ ଅଛି ଜାଣ
କାଞ୍ଚନ ଖଣ୍ଡରେ ॥ ଏହା କହି ବୃଦ୍ଧାନାରୀ ଚଳିଲା ତୁରିତ ।
ଘୋଟକ ପିଠିରେ ବସି ବିକ୍ରମ ଆଦିତ୍ୟ ॥ ଦକ୍ଷିଣଦେଶକୁ ଯିବାପାଇଁ
ବାହାରିଲେ । ତାଳ ବେତାଳଙ୍କୁ ରାଇ ବୁଝାଇ କହିଲେ ॥ ଯାଉଅଛି

ମୌନାବତୀ କନ୍ୟାପାଶେ ମୁହିଁ । ରହିଥିବ ମୋ ପାଶରେ ସାବଧାନ ହୋଇ ॥ କ୍ଷଣମାତ୍ର ସଙ୍ଗ ମୋର କେବେ ନ ଛାଡ଼ିବ । ଯାହା ଯେତେବେଳେ କହୁଥିବ କରୁଥିବ ॥ କହିସାରି ନରପତି ସୁମରି ପାବତୀ । କାଞ୍ଚନଖଣ୍ଡ ରାଜ୍ୟକୁ ଗମିଲେ ତୁରନ୍ତ ॥ ପବନ ଗତିରେ ତାଙ୍କ ଘୋଡ଼ା ଚଳିଯାଇ । କାଞ୍ଚନଖଣ୍ଡ ମଧ୍ୟରେ ଦେଲା ପହଞ୍ଚାଇ ॥ ନୃପ ଦେଖି ପଚାରିଲେ ସେ ଦେଶ ପ୍ରଜାଙ୍କୁ । କାହାର ଏ ରାଜ୍ୟ ଅଟେ କହ ହେ ଆମ୍ଭଙ୍କୁ ॥ ବର୍ତ୍ତମାନ ରାଜାଙ୍କର ନାମ କହ କିସ । ଶୁଣି ପ୍ରଜାମାନେ ତାଙ୍କୁ କହିଲେ ସନ୍ଦେଶ ॥ ଏ ଦେଶରେ ମୌନାବତୀ କନ୍ୟା ଅଟେ ରାଜା । ଆମ୍ଭେ ସବୁ ପ୍ରଜା କରୁ ପଦେ ତାଙ୍କ ପୂଜା ॥ ଶୁଣି ହରଷିତ ହୋଇ ବିକ୍ରମ ମିହିର । ପ୍ରବେଶ ହୋଇଲେ ଯାଇ ମୌନାବତୀ ଘର ॥ ଭିତରକୁ ଯିବା ଲାଗି ବିକ୍ରମ ଆଦିତ୍ୟ । ପଚାରନ୍ତେ ଦ୍ୱାରୀମାନେ କହିଲେ ଏମନ୍ତ ॥ ଦେଖି ଆଗେ ବସିଅଛି ଯେଉଁ ପକ୍ଷୀ ତାକୁ । ଧରିବ ନୃପ ଯିବ ସେହି ଭିତରପୁରକୁ॥ ଶୁଣିଣ ବିକ୍ରମାଦିତ୍ୟ ପକ୍ଷୀ ଧରିବାକୁ । ଯାଆନ୍ତେ ସେ ଉଡ଼ିଗଲା ବୃକ୍ଷ ଉପରକୁ ॥ ବୃକ୍ଷେ ଯାଇ ନରପତି ଉଠିବାର ବେଳେ । ଉଡ଼ିଯାଇ ପୁଣି ପକ୍ଷୀ ପଶିଗଲା ଜଳେ ॥ ତାଳ ବେତାଳଙ୍କୁ ଆଜ୍ଞା ଦେଲେ ନରବର । ଯାଅ ହେ ବେତାଳେ ବେଗେ ଏ ପକ୍ଷୀକି ଧର ॥ ସେ ଦୁଇ ବେତାଳେ ଅଦୃଶ୍ୟରେ ପକ୍ଷୀକି ଧଇଲେ । କେହି ନ ଦେଖିଲା ଆଣି ନୃପ ହସ୍ତେ ଦେଲେ ॥ ପକ୍ଷୀଟିକୁ ହସ୍ତେ ଧରି ବିକ୍ରମ ମିହିର । ଯିବାକ୍ଷଣି ଦ୍ୱାରପାଳ ଛାଡ଼ିଦେଲେ ଦ୍ୱାର ॥ ଭିତରେ ପଶିଲେ ଯାଇ ବିକ୍ରମ ନରେଶ । ଦେଖିଲେ ସେ ଦ୍ୱାର ଆଗେ ଗୋଟିଏ ପୁରୁଷ ॥ ଏକପାଦେ ଠିଆହୋଇ ରହିଅଛି ସେହି । ପଚାରିଲେ ନରପତି ତା ମୁଖକୁ ଚାହିଁ ॥ କହ ମହାତ୍ମା ଏପରି ରହିଛ କିପାଇଁ । ସେ କହିଲା ରାଜପୁତ୍ର ଅଟଇ ମୁହିଁ ॥ ଆସିଥିଲି ମୌନାବତୀ କନ୍ୟା ନେବା-

ଆଶେ । ଯାଇଥିଲି ବହୁକଷ୍ଟେ ସେ କନ୍ୟାର ପାଶେ ॥ ହାରିବାରୁ ତାକୁ ମୋତେ ଦଣ୍ଡ ଦେଇଅଛି । ଚାରିମାସ ହେଲା ଜାଣ ଏହିପରି ଅଛି ॥ ଛଅମାସ ରହିବାକୁ ଦେଇଛି ଆଦେଶ । ରକ୍ଷାକର ଏ ବିପଦୁ ମୋତେ ହେ ବୀରେଶ । ବହୁକଷ୍ଟ ପାଇଲିଣି କନ୍ୟା ଲୋଡ଼ା ନାହିଁ । ବିକ୍ରମ ଏହା ଶୁଣି ତାକୁ ଦେଲେ ମୁକୁଳାଇ ॥ ମୁକ୍ତ ହୋଇଗଲା ସେହୁ ଆପଣା ଭୁବନ । ତା ବଦଳେ ଠିଆହେଲେ ପାଦକେ ରାଜନ ॥ ସେହିଠାରେ ହୋଇଗଲା ଦୁଇମାସ ଶେଷ । ଚାଲିଗଲେ ସେ ଠାବରୁ ବିକ୍ରମ ନରେଶ ॥ ହୋଇଲେ ପ୍ରବେଶ ଯାଇ ମୌନାବତୀ ପୁରେ । ବସିଥିଲା ମୌନାବତୀ କନ୍ୟା ପଲଙ୍କରେ ॥ ଚାହିଁ ତାକୁ କହିଲେ ଯେ ବିକ୍ରମ ନରେଶ । ଶୁଣ ମୌନାବତୀ ତୋର ପୂର୍ବର ଆଦେଶ ॥ ଏକ ପାଦେ ଛଅମାସ ଛିଡ଼ା ହେବାପାଇଁ । ସେହିପରି ଛଅମାସ ଗଲା ପୂର୍ଣ୍ଣ ହୋଇ ॥ ବହୁଯତ୍ନେ ଅସିଅଛି ପାଶକୁ ତୋହର । ଏଅଚନ୍ଦ୍ରମୁଖୀ ଆଣି ମୋ ଗଳାରେ ହାର ॥ ତାହାଶୁଣି ମୌନାବତୀ ଉତ୍ତର ନ ଦେଲା । ସହଜେ ତ ମୌନାବତୀ ମଉନେ ରହିଲା ॥ ପ୍ରଦୀପ ଏମନ୍ତ ତାଙ୍କୁ କହଇ ସନ୍ଦେଶ । ମୋହଠାରୁ ଶୁଣ ତୁମ୍ଭେ ବିଦେଶୀ ପୁରୁଷ ॥ ମୌନାବତୀ ନାମ ତାର ମୌନ ରହିଥାଇ । ବିଦେଶୀ ପୁରୁଷକୁ ସେ କଥା ନ କହଇ ॥ ନିଶି ଚାରିପହରେ ଯେ କୁହାଇବ କଥା । ବରମାଳ୍ୟ ଦେବ ତାକୁ ନୋହିବ ଅନ୍ୟଥା ॥ ଏହାଶୁଣି ବିକ୍ରମ ନୃପ ହେଲେ ଆନନ୍ଦିତ । ତାଳ ବେତାଳଙ୍କୁ ଚାହିଁ କହିଲେ ଏମନ୍ତ ॥ ତୁମ୍ଭେ ମୋର ବଚନକୁ ରହିଥିବ ଚାହିଁ । ପାଳିବ ଆଦେଶ ଶୀଘ୍ର ଯାହା କହିବଇଁ ॥ ଏହାକହି ଦୃଢ଼ାସନେ ବସିଲେ ରାଜନ । ଜଗନ୍ନାଥ ସିଂହ କହେ ହୁଅ ସାବଧାନ ॥

———

# ପ୍ରଥମ ପ୍ରହର କଥା

ପ୍ରଥମ ପ୍ରହର ରାତି ବେତାଳଙ୍କ ପରବେଶ । ପ୍ରତାପଙ୍କୁ କହିଲେ ଯେ ବିକ୍ରମ ନରେଶ ॥ ଶୁଣ ହେ ପ୍ରତାପ ଏକ ନୃପତି ରାଜ୍ୟରେ । ରାଜପୁତ୍ର ବୁଲି ଦେଶେ ଉପଦ୍ରବ କରେ ॥ ସୁନାରି, ବଢ଼େଇ, ତନ୍ତୀ ଏହି ତିନିଜଣ । ମିତ୍ର ତାର ତାଙ୍କୁ ଘେନି କରେ ଦୁଷ୍ଟପଣ ॥ ପତିବ୍ରତା ନାରୀଙ୍କର ଧର୍ମ ନ ରଖଇ । ରୂପବନ୍ତୀ ରମଣୀକୁ ବଳେ ସେ ହରଇ ॥ ଧନ ହରେ ବଳେ କାର ଜାହାକୁ ଯେ ମାରେ । ଏପରି ଉପଦ୍ରବ କଲା ଘରେ ଘରେ ॥ ଉପଦ୍ରବ ଦେଖି ତାର ଗଲେ ପ୍ରଜାଗଣ । ଅତିଦୁଃଖେ ରାଜା ଆଗେ କରିଲେ ଜଣାଣ । ଦୁଷ୍ଟପଣ ତାର ବୁଝି ରାଜା କ୍ରୋଧ କଲେ । ନ ହସ୍ତର ପୁତ୍ର ବୋଲି ରାଜ୍ୟ ତଡ଼ି ଦେଲେ ॥ ମିତ୍ର ତିନିଗୋଟି ସଙ୍ଗେ ଘେନି ପଳାଇଲା ॥ ଅରଣ୍ୟରେ ବୃକ୍ଷ ମୂଳେ ରାତ୍ରେ ରହିଲା ॥ ଚାରିମିତ୍ର ବସି ଚର୍ଚ୍ଚା କରନ୍ତି ବିଚାର । ନିବିଡ଼ ଅରଣ୍ୟ ପୁଣି ଘୋର ଅନ୍ଧକାର ॥ ଯେବେ ଆମ୍ଭେ ଏକାବେଳେ ଶୋଇବା ସମସ୍ତେ । ବାଘ ଭାଲୁ ଆସି କରି ଖାଇବେ ନିଶ୍ଚିନ୍ତେ ॥ ଏତେ ଥିବ ଜଣେ ଜଣେ ପ୍ରହରେ ପ୍ରହରେ । ଜଗିଲେ ମେ ପାଳି କରି ରହି ଉଜାଗରେ ॥ ପ୍ରଥମରେ ବଢ଼େଇର କୁମର ଜାଗିଲା । କାଠରେ ସେ କନ୍ୟାଟିଏ ଗଢ଼ି ଥୋଇ ଦେଲା ॥ ଦ୍ୱିତୀୟ ପ୍ରହରେ ଜଗି ରହିଲା ସୁନାରି । ସୁନାରେ ସେ ଅଳଙ୍କାର ପିନ୍ଧାଇଲା କରି ॥ ତୃତୀୟରେ ତନ୍ତୀ ତାକୁ ଲୁଗା ପିନ୍ଧାଇଲା । ଚତୁର୍ଥରେ ଜୀବନ୍ୟାସ ରାଜପୁତ୍ର କଲା ॥ ଜୀବ ପାଇ ତକ୍ଷଣେ ସେ ହେଲା ଦିବ୍ୟ ନାରୀ । ସମାନ ନୋହିବ ତାକୁ ସ୍ୱର୍ଗ ଅପସରୀ । ତା ରୂପକୁ ଦେଖି ସର୍ବେ ଆରମ୍ଭିଲେ ଦ୍ୱନ୍ଦ୍ୱ । ସମସ୍ତେ ଏ କନ୍ୟା ନେବୁ ବୋଲି କଲେ ବାଦ । କହ ପ୍ରତାପ ସେ କନ୍ୟା ହୋଇବ କାହାର । ତାହା ଶୁଣି ପ୍ରତାପଟି

ଦେଲାକ ଉତ୍ତର ॥ ବଢ଼ାଇର ସେ କନ୍ୟାଟି ହୋଇଲା ବଧିରେ ॥ ଏହା ଶୁଣି ମୌନାବତୀ କହଇ କ୍ରୋଧରେ ॥ ଅନ୍ୟାୟ କହିଲୁ କପଟି ହୋଇ ମୋ ପ୍ରତାପ । ବଢ଼ାଇ ତ ହେଲା ତାର ନିଜ ଧର୍ମବାପ ॥ ଜୀବ ଦେଇ ରାଜପୁଅ ପିତା ବୋଲାଇଲା । ଅଲଙ୍କାର ଦେଲା ଯେ ସେ ଶ୍ୱଶୁର ହୋଇଲା ॥ ଯେ ଦେଲାଟି ବସ୍ତ୍ର କନ୍ୟା ହୋଇଲା ତାହାର ମୌନାବତୀ କଥା ଶୁଣି ବିକ୍ରମ ମିହିର ॥ ସାକ୍ଷୀ କରି ପ୍ରଦୀପକୁ କହିଲେ ଏମନ୍ତ । ଶୁଣିଲୁ ତ ଏବେ ଆମ୍ଭ କଥାର ତଦନ୍ତ ॥ ସାକ୍ଷୀ ଥାଅ ପ୍ରଦୀପ ତୁ ଆମ୍ଭର ଆଗରେ । ମୌନାବତୀ କଥା କହେ ପ୍ରଥମ ପ୍ରହରେ ॥ କହେ ଜଗନ୍ନାଥ ସର୍ବେ ମନ ଦେଇ ଶୁଣ । ପ୍ରଥମ ପ୍ରହର କଥା ହେଲା ସମାପନ ॥

---

## ଦ୍ୱିତୀୟ ପ୍ରହର କଥା

ରଜନୀ ଦ୍ୱିତୀୟ ଯାମ ହୋଇଲା ପ୍ରବେଶ । ମୌନାବତୀ ପୂର୍ବ ପରି ରହିଲା ଅବଶ୍ୟ ॥ ତାର ଏ ଗତିକ ଦେଖି ବିକ୍ରମ ରାଜନ । ଘଟକୁ ସମ୍ବୋଧି ତାକୁ ପୁଚ୍ଛିଲେ କାରଣ ॥ ତାଳ ବେତାଳ ଯାଇ ସେ ଘଟ ମଧ୍ୟେ ଥିଲେ । ପରସ୍ପରନ୍ତେ ରାଜା ତାଙ୍କୁ ଏପରି କହିଲେ ॥ ଶୁଣ ହୋ ବିଦେଶୀ ମୋର ସଧୀରେ ବଚନ । ମାନସରୋବରରେ ଥିଲି ମୃତ୍ତିକା ରୂପେଣ ॥ କୁମ୍ଭକାର ଯାଇ ମୋତେ ସେଠାରୁ ଆଣିଲା । ଦଳାଦଳି କରି ଚନ୍ଦ୍ର କଳସ ଗଢ଼ିଲା ॥ ଖରାରେ ଶୁଖାଇ ତହୁଁ ପୋଡ଼ିଲା ଅଗ୍ନିରେ । ବିକିଲା ସେ ଆଣି ମୋତେ ମୌନାବତୀ-ଠାରେ ॥ ସେହି ଦିନୁ ମୌନାବତୀ ପାଶରେ ମୁଁ ଅଛି । ଇତିହାସ ଶୁଣିବାକୁ ମନ ମୋ ହେଉଛି ॥ ଅଟ ତୁମ୍ଭେ ସୁପଣ୍ଡିତ ବିଦେଶୀ ପୁରୁଷ । ଜାଣିଥିଲେ ଇତିହାସ କର ହେ ପ୍ରକାଶ ॥ ଶୁଣ ଘଟ ଏକ

ହେଲେ ସୌଦାଗର ଘରେ । ପାଞ୍ଚ ଗୋଟି ଭାଇ ଥାଆନ୍ତି ସେ ଏକଘରେ ॥ ପାଞ୍ଚଭାଇଙ୍କର ପାଞ୍ଚଥାଆନ୍ତି ଘରଣୀ । ସାନଭାଇ ଭାର୍ଯ୍ୟା ଅଟେ ଅତି ଦୋଷରୁଣୀ । ଟିତପୂର ଶୋଇବାର ଦେଖି ରାତ୍ରକାଳେ । ଖିଡ଼କି ଫିଟାଇ ଗୁପ୍ତେ ଏକା ହୋଇ ଚଳେ ॥ ଝଟପୁରୁଷର ସଙ୍ଗେ ଏକାନ୍ତେ ହୀଡ଼ଇ । ଆସି ପୁଣି ପତିପାଶେ ଶେଯରେ ଶୁଅଇ ॥ ତାର ଏ ଚରିତ କେହି ନ ଜାଣନ୍ତି ଘରେ । ପ୍ରତିଦିନ ସେ ଝଟପୀ ଏହି ବୃତ୍ତିକରେ ॥ ଦିନେ ସେ ଖିଡ଼କି ଫିଟାଦେଖି ଚଉକିଆ । ସୌଦାଗର ପୁତ୍ର ଆଗେ କହିଲା ସେ ଏହା ॥ ପ୍ରତି ରାତ୍ର ତୁମ୍ଭ ଘରେ ଫିଟଇ ଖିଡ଼କି । ଫିଟାଏ କେ ତାହା ମୁହିଁ ନ ପାରଇ ଦେଖି ॥ ଯତ୍ନ କରି ରାତ୍ରେ ତୁମ୍ଭେ ଦେଖ ଜଗି ରହି । ଏହା ଶୁଣି ବିଚାର ଯେ କଲେ ପାଞ୍ଚଭାଇ ॥ କାହା ଆଗରେ ସେ କଥା କିଛି ନ କହିଲେ । କପଟେ ସେ ନିଜ ନିଜ ଶେଜରେ ଶୋଇଲେ ॥ ସାନବୋହୂ ଏ ବିଚାର କିଛି ନ ଜାଣଇ । ପତି ଶୋଇବାର ଜଗି ଥାଏ ଯିବା ପାଇଁ ॥ ଅର୍ଦ୍ଧରାତ୍ର ହୋଇଗଲା ଶୋଇଲେ ସମସ୍ତେ । ସେ ସୁନ୍ଦରୀ ଉଠି ତାହା ଉଠିଲା ତୁରିତେ ॥ କବାଟ ଫିଟାଇ ଜାରପୁଂସ ପାଶେ ଗଲା । ତାକୁ ଦେଖି ରାଗେ ଉପପତି ଗାଳିଦେଲା ॥ କୋଇଲା ବିଳମ୍ବ ଏତେ କଲୁ କାହିଁ ପାଇଁ । ଅର୍ଦ୍ଧରାତ୍ରି ଜାର ଆସି ତୋତେ ରହିରହି ॥ କାମଶରେ ପୀଡ଼ା ପାଇ ହେଲି କଳବଳ । ପ୍ରୀତି କଲେ ତୋ ସଙ୍ଗରେ ନାହିଁ ଆଉ ଭଲ ॥ ଜାରପୁରୁଷର ଦେଖି ସେ ଏପରି ମାନ । ତା ପାଦରେ ପଡ଼ି କହେ ଶୁଣ ପ୍ରାଣଧନ ॥ ଏକବାରେ ଦୋଷ ମୋର କ୍ଷମା ତୁମ୍ଭେ କର । ନ କରିବି କାଲିଠାରୁ ଆଉ ହରବର । ଜାରପୁରୁଷ ତା ଶୁଣି ସନ୍ତୋଷ ହୋଇଲା । ରତି ଭୋଗେ ଦୁହିଁଙ୍କର ଇଚ୍ଛାପୂର୍ଣ୍ଣ ହେଲା ॥ ହରଷରେ ଚଳିଗଲା ତହୁଁ ସେହି ନାରୀ । ମିଳିଲା ଜଳାକବାଟି ପାଶେ ଯାଇକରି ॥ ତାର ଗତି ଦେଖି ସ୍ୱାମୀ ଖିଡ଼କି ଦୁଆର । ଆଣ୍ଟେକଲା

ଘରେ ବସିଥିଲା ଉଜାଗର ॥ ଝିଙ୍କ କଲବା ଜାଣି ଡକେ ଦେଲା ଡକା । ଫିଟାଅ ହେ ପ୍ରାଣେଶ୍ୱର ହୋଇଛି ମୁଁ ଏକା ॥ ପେଟମୋଡ଼ା ଝାଡ଼ା ରୋଗ ହୋଇଛି ମୋହର । ସେହି ଯୋଗୁଁ ରାତିମଧ୍ୟେ ଉଠେ ପାନ୍ଥର ॥ ତୁମ୍ଭ ନିଦ ନ ଭାଙ୍ଗି ମୁଁ ଆସୁଥାଏ ଏକା । ତଞ୍ଚଳ ଫିଟାଅ ମୋତେ ଲାଗୁଅଛି ଶଙ୍କା ॥ ଶୁଣି ସାଧୁସୁତ କହେ ତୋରେ କାର୍ଯ୍ୟ ନାହିଁ । ନ ବୁଝିବ ମୂର୍ଖ ତୋର ଦୋଷ୍ଟଚାରିଣୀ ତୁହି ॥ ଯେଣେ ଇଚ୍ଛା ତେଣେ ଯାଅ ନ ଆସ ମୋ ଘର । ଏହା ଶୁଣି ସେ କପଟୀ କୋପେ ବୋଲେ ଗିର ॥ ଯାଉଛି ମରିବ ବୁଡ଼ି ଗାଡ଼ିଆ ଭିତରେ । ତୁମ୍ଭର ନିଷ୍ଠୁର ବାଣୀ ସହି ମୁଁ ନ ପାରେ ॥ ଏତେ କହି ଗାଡ଼ିଆକୁ ପଥର ଫିଙ୍ଗିଲା । ପାଖେ ଥିବା ଗଛମୂଳେ ଲୁଚିଣ ରହିଲା ॥ ପଥର ପଡ଼ନ୍ତେ ଜଳେ ଶବ୍ଦଜାତ ହୋଇ । ଶୁଣି ସେହି ଶବ୍ଦ ମନେ ସାଧୁ ବିଚାରଇ ॥ ଜଳେ ପଡ଼ି ବୁଡ଼ିମଲେ ରାଜଦଣ୍ଡ ହେବ । ଏତେ ଭାବି ସୌଦାଗର ଧାଇଁଗଲା ଯବ ॥ ପାଣି ଦଣ୍ଡିଲା ଯାଇ ଗାଡ଼ିଆ ଭିତରେ । ଏସମୟେ ସେ ଚତୁରୀ ପଶିଗଲା ଘରେ । କବାଟକୁ ଆଣ୍ଟେ କଲା ଶେଯରେ ଶୋଇଲା । ସାଧୁ ତାକୁ ନ ପାଇଣ ଦ୍ୱାରେ ବାହୁଡ଼ିଲା ॥ ଦେଖିଲା ସେ କବାଟ ଯେ କିଲା ହୋଇଅଛି । ଏହା ଦେଖି ସାଧୁର ଯେ ନଷ୍ଟୁରଇ କଛି ॥ ଧୀରେ ଧୀରେ ଦେଲା ଡାକ ଶୁଣ ଗୋ ଚତୁରୀ । ଓଦା ଲୁଗା ପିନ୍ଧି ଦେହ କମ୍ପଇ ମୋହର ॥ କବାଟ ଫିଟାଅ ବେଗେ ପିବି ମୁଁ ଘରକୁ । ଏହା ଶୁଣି ସେ ରମଣୀ କହଇ ତାହାକୁ ॥ ଚାଲିଯାଅ ନିତି ନିତି କବାଟ ଫିଟାଇ । ପିଲାଙ୍କୁ ମୁଁ ଧରି ଶୋଇଥାଏ ଏକା ହୋଇ ॥ ବୋଲବୋଲି ହେଉଁ ଦୁହେଁ କଳି ହେଲା ଜାତ । ତାହା ଶୁଣି ଭାଇମାନେ ଅଇଲେ ତୁରିତ ॥ ଦେଖି ତାକୁ ସାନଭାଇ ଲାଜରେ ରହିଲା । କପଟୀ ଅବଳା ସାହସରେ ଜୟ କଲା ॥ କହ ତ ଘଟ ଏ ଦୁଇ ଜଣଙ୍କ ମଧ୍ୟରେ । କେ ବଡ଼ ଚତୁର ହେଲା ବିଚାର

ମନରେ ॥ ଘଟ ଚତୁର ବୋଲେ ସେ ପୁରୁଷ ହୋଇଲା । ଏହା ଶୁଣି ମୌନାବତୀ କ୍ରୋଧରେ ଉଠିଲା ॥ କହେ ମୋର ଘଟ ହୋଇ କଥା ନ ବଚାର । ସେ ଦୁଇରୁ ବୁଦ୍ଧିମନ୍ତ ଅଟଇ ସେ ନାରୀ ॥ ଶୁଣି ମୌନାବତୀ ବାଣୀ ବିକ୍ରମ-ଆଦିତ୍ୟ । ବୋଇଲେ ମଉନାବତୀ କଥା କହିଲା ତ ॥ ଶୁଣିଥାଅ ସଖୀମାନେ ସାକ୍ଷୀ ତୁମ୍ଭେ ହେବ । କହେ ଜଗନ୍ନାଥ ସେହୁ ଅବଶ୍ୟ ମାନିବ ॥

---

## ତୃତୀୟ ପ୍ରହର କଥା

ପୂର୍ବପରି ମୌନାବତୀ ମଉନେ ରହିଲା । ତୃତୀୟ ପ୍ରହର ନିଶି ଆସି ପହଞ୍ଚିଲା ॥ ଏହା ଦେଖି କହନ୍ତି ଯେ ବିକ୍ରମ ରାଜନ । ଶୁଣ ଖଟଖୁରା ତୁ ହେ ମୋହର ବଚନ ॥ ପଥରହୃଦୟ ତୁମ୍ଭ ମୌନାବତୀ ଅଟେ । ଦୟା କରି ପଦେ କଥା ନ କହେଟି ମୋତେ ॥ ମୂକପରି ବସିଥିବ କେତେ ବେଳ ରହି । ଦୟା ବହି କଥା ପଦେ କହ ହେଲେ ତୁହି ॥ ଖଟଖୁରା ମଧ୍ୟେ ଥାଇ ବୋଲଇ ବେତାଳ । ପୂର୍ବଚରିତ ମୋ ଶୁଣ ଆହେ ନରପାଳ ॥ ବନମଧ୍ୟେ ଅତିସୁଖେ ରହିଥିଲି ମୁହିଁ । ନେଲା ମୋତେ କାଟିକରି ସେଠାରୁ ବଢ଼େଇ ॥ ଖଟଖୁରା ଗଢ଼ି ବନ୍ଦୀ କଲା ଏଠି ମୋତେ । ମୌନାବତୀ ମୋ ଉପରେ ଶୁଅଇ ନିତ୍ୟେ ॥ ସେହିନୁ ମୁଁ କାହା ମୁଖ ଚାହିଁ ନ ପାରିଲି । ବିଦ୍ୟାବନ୍ତ ରାଜା ତୁମ୍ଭେ ବୋଲି ମୁଁ ଜାଣିଲି ॥ ତୁମ୍ଭଠାରୁ ଶୁଣିବଇଁ ସୁନ୍ଦର କାହାଣୀ । ବିକ୍ରମ ନରେଶ କହିଲେ ଯେ ତାହା ଶୁଣି ॥ ଶୁଣ ତେବେ ଖଟଖୁରା ଏକଇ ରାଜ୍ୟରେ । ରାଜା ଏକ ଥାଇ ପ୍ରଜା ପାଳଇ ସୁଖରେ ॥ ସେ ରାଜା ନବରେ ଫୁଲ ଯୋଗାଇ ମାଲୁଣୀ । ଦିନେ ତାହା ସଙ୍ଗେ ଦେଖା ହେଲା ଗୋପାଳୁଣୀ ॥ ଗୋପାଳୁଣୀ ବୋଇଲା ମୁଁ ତୋହଠାରୁ ବଡ଼ । ତା ଶୁଣି ମାଲୁଣୀ କଲା କଥାଟିକୁ

ଦୂତ ॥ ରାଜାଙ୍କର ପରଗୃହ ଦୁହେଁ ବୁଦ୍ଧିମନ୍ତ । କଥା ପଢ଼ୁ ପଢ଼ୁ ଦୁହେଁ
ହୋଇଲେ ଅପ୍ରୀତ ॥ ଗୋପାକୁଣୀ କହେ ମୁହିଁ ପାଞ୍ଚଲେ କ୍ଷଣକେ ।
ବିପଦ ଘଟାଇ ପାରେ ଧର୍ମାମାନଲେକେ ॥ ତାହା ଶୁଣି ସେ ମାକୁଣୀ
ଦଅଇ ଉତ୍ତର । କ୍ଷଣକେ ମୁଁ ଭୁଟାଇବ ଘଟଣା ତୋହର ॥ ଶୁଣିକରି
ଗୋପାକୁଣୀ ଗଲା ସେହିକ୍ଷଣି । ରାଜକେମା ଆଗରେ ଯେ କହିଲାକ
ପୁଣି ॥ ଥିଲ କାଲି ତୁମ୍ଭେ ଜଳାକବାଟି ପାଖରେ । ରଘୁପତି
ସୌଦାଗର ଦେଖିଲା ସେଠାରେ ॥ ଦେଖିକରି ଖାଉ ନାହିଁ ଅନ୍ନ
ଜଳ ସେହି । ଲକ୍ଷେ ଟଙ୍କା ଦେବ ବୋଲି ଅଛି ମୋତେ କହି ॥
ଏକ ନିଶି ତୁମ୍ଭେ ଯେବେ ତାହା ପାଶେ ଯିବ । ସେ ଲକ୍ଷକ ଟଙ୍କା
ନିଶ୍ଚେ ତୁମ୍ଭଙ୍କୁ ସେ ଦେବ ॥ ତାହା ଶୁଣି ରାଜକେମା ସନମତ କଲା ।
ଗୋପାକୁଣୀ ସୌଦାଗର ପାଖେ ପହୁଞ୍ଚିଲା ॥ ଶୁଣ ଆହେ ରଘୁପତି
ଗବାକ୍ଷ ମାର୍ଗରେ । ରାଜକେମା ଦେଖି କରି ତୁମ୍ଭକୁ ଦାଣ୍ଡରେ ॥
ତନୁଦହନ ହେଲା ସେହୁ ଖାଇ ନାହିଁ ଅନ୍ନ । ରହିଅଛି ଏକା ତୁମ୍ଭ-
ଠାରେ ତାର ମନ ॥ ଲକ୍ଷେ ଟଙ୍କା ମୋଟେ ତାକୁ ଦେବାକୁ ପଡ଼ିବ ।
ତୁମ୍ଭେ ତାକୁ ଏକ ରାତି ସମ୍ଭୋଗ କରିବ ॥ ବୋଲେ ସୌଦାଗର
ଲକ୍ଷେ ଟଙ୍କା ଦେବ ମୁହିଁ । ଏକରାତି ଯେବେ ରାଜକେମା ଭୋଗିବଇଁ ।
ଗୋପାକୁଣୀ ଏହା ଶୁଣି ତହୁଁ ଚଳିଗଲା । ରାଜାର କନ୍ୟାକୁ
ଅର୍ଦ୍ଧରାତ୍ରେ ଆଣିଲା ॥ ଦେବୀ ମନ୍ଦିରରେ ନେଇ ତାହାକୁ ରଖାଇ ।
ସୌଦାଗରେ ଡାକ ନେଇ ଦେଲାକ ମେଲାଇ ॥ ସୌଦାଗର ରାଜ-
କନ୍ୟା ଦୁହେଁ ସେ ନିଶିରେ । ରତିରସେ ମାତିଗଲେ ଦେବୀଙ୍କ
ମନ୍ଦିରେ ॥ ଗୋପାକୁଣୀ ତାହା ଦେଖି ବାହାର କିଳଣି । ପକାଇଲା
ଆଣ୍ଠୁ କରି ଆସି ସେହିକ୍ଷଣି ॥ ସେଠାବରୁ ଯାଇ ଗଡ଼ ଚଉକିଆ
ଆଗେ । ନଟକୁଟୀ ଗଉଡ଼ୁଣୀ କହିଦେଲା ବେଗେ ॥ ଦେଖ ଆହେ
ଚୌକିଦାର ଦେବୀଙ୍କ ଦେଉଳେ । ରଘୁପତି ସୌଦାଗର ରହି

କସ କରେ ॥ କାହା ଯୁବତୀଙ୍କ ସେହ୍ନ ଗୃହେ ନେଇଛୁ । ତାହା ଦେଖି କବାଟ ମୁଁ କଳ ଦେଇଅଛୁ ॥ ଚୌକିଦାର ଏହା ଶୁଣି ବେଗେ ଧାଇଁଗଲ । ଦେବୀଙ୍କ ମନ୍ଦର ପାଶେ ପାହାର ଜଗିଲ ॥ ଖଞ୍ଜି ଦେଇ କୂଟମନ୍ତ୍ର ଗୋପାଳୁଣୀ ଗଲ । ମାଳୁଣୀ ଆଗରେ ଯାଇ ଏମନ୍ତ କହିଲ ॥ ଲଗାଇ ଆସିଛୁ ନାଆଁ ଲଜ୍ଜା ଯାଇ କର । ଜଣା-ଯିବ କେତେ ବୁଦ୍ଧି ଅଛଇ ତୋହର ॥ ଏହା ଶୁଣି ସେ ମାଳୁଣୀ ଗଲ ସେହିକ୍ଷଣି । ସନ୍ଧାନ କରଣ ସବୁ ପକାଇଲ ଜାଣି ॥ ରଘୁପତି ସୌଦାଗର ପିତା ପାଶେ ଗଲ । ଉଠାଇ ସକଳ ତାଙ୍କୁ ବୁଝାଇ କହିଲ ॥ ସୌଦାଗର ବାପ ହେଲ ଭୟେ ଥରହର । ବୁଝାଇ ମାଳୁଣୀ କହେ କମ୍ପ ଭୟଙ୍କର ॥ ମାଗିବ ମୁଁ ଯାହା ତୁମ୍ଭେ ଏହିକ୍ଷଣି ଦେବ । ଅନାୟାସେ ତେବେ ତୁମ୍ଭ ପୁତ୍ର ମୁକୁଳିବ ॥ ଯିବେ ତୁମ୍ଭ ଝିଅ ବୋହୂ ମୋହର ସଙ୍ଗରେ । ସଙ୍ଗେ ପୁଣି ଦେବ ଭଲ ବାଦ୍ୟ ଭଜନସାରେ ॥ ଟଙ୍କା କିଛି ଦେଇଥିବ ଧର-ଥିବ ମୁହିଁ । ଟଙ୍କା ଥିଲେ ଶଙ୍କା ନାହିଁ ତଥ୍ୟ ଏ ଅଟଇ ॥ ସହସ୍ରେ ଟଙ୍କାର ଥଳ ଦେଲ ସୌଦାଗର । ଝିଅ ବୋହୂମାନଙ୍କୁ ଯେ ଗୁଡ଼ିଲ ସଙ୍ଗର ॥ ଚମକିଲ ବାଦ୍ୟନାଦେ ସେ ନଗରଯାକ । ମାଳୁଣୀ ତା ଘରୁ ନେଲ ଗୋଟିଏ ବାଳକ ॥ ସର୍ବେ ମିଳିଗଲେ ତହୁଁ ଦେବୀଙ୍କ ମନ୍ଦରେ । ଜଗି ବସିଥିଲ ଚୌକିଦାର ଦେବୀଦ୍ୱାରେ ॥ ମାଳୁଣୀ କହଇ ତାଙ୍କୁ ବଚନ ସଧୀରେ । କବାଟ ଫିଟାଅ ଯିବୁ ମନ୍ଦର ଭିତରେ ॥ ଚୌକିଦାର ଶୁଣି କହେ ଫିଟାଇବ ନାହିଁ । କହିଅଛି ଗୋପାଳୁଣୀ ରଜା ଆଗେ ଯାଇ ॥ ରଘୁପତି ସୌଦାଗର ଅଛି ମ୍ୟାଭିତରେ । ଯୁବତୀଏ ଆଣି କାର ରଖିଛି ସଙ୍ଗରେ ॥ ରଜା ଆଜ୍ଞା ପାଇ ଆସି ଜଗିଅଛୁ ମୁହିଁ । ଗତି ନ ପାଇଲେ ଦ୍ୱାର ଫିଟାଇବ ନାହିଁ ॥ ମାଳୁଣୀ କହଇ ତାଙ୍କୁ ଆରେ ବାବୁ ଶୁଣ । ହେବ ପ୍ରାତେ ଏ ଶିଶୁର ଅନ୍ନପରଶନ ॥

ଏହିକ୍ଷଣି ଦେବଙ୍କର ପୂଜାବିଧି ସାରି । ଦ୍ୱାର ଫେଡ଼ି ଯିବୁ ବାବୁ ବିଳମ୍ବ ନ କରି । ଶିଶୁ ଶିଶୁମାଆ ଝୁଡ଼ୀ ଭଣ୍ଡାରୁଣୀ ମୁହିଁ । ଗୃହଜଣ ଯିବୁ ଆଜି କେହି ଯିବେ ନାହିଁ ॥ ଗଣିଥିବୁ ଗଲାବେଳେ ଆସିଲେ ଗଣିବୁ । ଏହିତକ ଦସ୍ତାକତ କରିଦିଅ ବାବୁ ॥ ଏହା କହି ଶତେ ଟଙ୍କା ହାତେ ଗୁଞ୍ଜି ଦେଲା । ଲୋଭେ ଚୌକିଦାର କିଛି କହି ନ ପାରିଲା ॥ ଏଣେ ତେଣେ ଚାହିଁ ଚୁପ ସେ ଫିଟାଇ ଦେଲା । ମାଲୁଣୀ ତିନିଙ୍କୁ ଧରି ମନ୍ଦିରରେ ପଶିଲା ॥ ମାଳୁଣୀ ସେ ଶିଶୁଟିକି ଜେମା କୋଳେ ଦେଲା । ସଙ୍ଗେ ଆଣି ତାକୁ ସାଧୁ ଭାର୍ଯ୍ୟା ଛାଡ଼ି ଦେଲା ॥ ଗୃହଜଣ ବାହାରିଲେ ଗଣି ଚୌକିଦାର । ଚାବି ପକାଇଲା ଦ୍ୱାରେ ଉତ୍ତମ ପ୍ରକାର ॥ ରାଜ ନନ୍ଦିନୀକୁ ସଙ୍ଗେ ନେଇ ସେ ମାଲୁଣୀ । ଛାଡ଼ିଦେଲା ଉଆସରେ କେହି ନାହିଁ ଜାଣି ॥ ବାକି ନଅଶହ ଟଙ୍କା ଘେନି ଆନନ୍ଦରେ । ସେ ମାଲୁଣୀ ଚାଲିଗଲା ଆପଣାର ଘରେ ॥ ଏ ସମୟେ ହୋଇଗଲା ଯହୁଁ ରାତି ଶେଷ । ଜଣାଇଲା ଚୌକିଦାର ଯାଇ ରାଜା ପାଶ ॥ ରଘୁପତି ସୌଦାଗର କାହାର ଯୁବତୀ । ନୃପବର ଦେବୀ ଗୃହେ ରହିଅଛି ରାତି ॥ ଗୋପାଳୁଣୀ କହିବାରୁ ଜଗିଅଛି ମୁହିଁ । ଶୁଣି ଆଜ୍ଞାଦେଲେ ରାଜା ଘେନିଆସ ଯାଇ ॥ ଆଜ୍ଞାପାଇ ଚୌକିଦାର ସେ ଦୁଇ ଜଣଙ୍କୁ । ଘେନିଗଲା ବାନ୍ଧି କରି ରାଜାଙ୍କ ଛାମୁକୁ ॥ ସେ ମାଲୁଣୀ ଗୋପାଳୁଣୀ ଦୁହେଁଯାକ ଯାଇ । ରାଜଦ୍ୱାରେ ଜଗିଛନ୍ତି ଦେଖିବାର ପାଇଁ ॥ ରାଜା ଦେଖି କୋପେ କହେ ଆରେ ରଘୁପତି । ଦେବଗୃହେ ଘେନି ଥିଲୁ ଏ କାହାର ଯୁବତୀ ॥ ସୌଦାଗର ବୋଇଲା ଏ ଭାରିଯା ମୋହର । ଆସିଥିଲୁ ଦୁହେଁ ମିଶି ଘରେ କଳିକରି ॥ କହିଲେ ଚାହିଁବା ଲୋକେ ଏ ମିଥ୍ୟା ନୁହଇ । ରଘୁପତି ସୌଦାଗର ଭାରିଯା ତ ଏହି ॥ ନରପତି ଏହା ଶୁଣି ତାଙ୍କୁ ଛାଡ଼ିଦେଲେ । କହିବୁଟି ଖଟଖୁରି ବାରେ ଏବେ ଭଲେ ॥ ମାଲୁଣୀ ସେ ଗୋପାଳୁଣୀ ଦୁହିଙ୍କ

ଭିତରେ । କଏ ସାନ କଏ ବଡ଼ ବସ୍ତୁର ଦେଖରେ ॥ କହେ ଖୁବ ଗୋପାଳୁଣୀ ବଡ଼ ବୁଦ୍ଧିମନ୍ତ । ଶୁଣି କ୍ରୋଧେ ଚପି ଓଷ୍ଠ କହେ ମୌନାବତୀ ॥ ସତ୍ୟରେ ମାଲୁଣୀ ହେଲା ବୁଦ୍ଧିର ସାଗର ॥ ଜାଣିଲୁ ଅନ୍ୟାୟ ତୁମ୍ଭ ଖୁବ ହୋଇ ମୋର ॥ ବିକ୍ରମଆଦିତ୍ୟ ବୋଲେ ଖୁବ ଥାଅ ଶୁଣି । କହିଲଟି କଥା ତୁମ ମୌନାବତୀ ରାଣୀ ॥ ତିନିଥର କଥା ଏବେ କହିଲା ତ ସେହି । ବରମାଳ ମୋ ଗଳାରେ କପିଁ ଦେଉ ନାହିଁ ॥ ଜଗନ୍ନାଥ କହେ ଶୁଣ ବିକ୍ରମ ମିତ୍ରର । ଆର ପ୍ରହରକୁ ନିଷ୍ଟେ ହୋଇବ ତୁମ୍ଭର ॥

---

## ଚତୁର୍ଥ ପ୍ରହର କଥା

ଏହାପରେ ସୁଜ୍ଞନରେ କର୍ଣ୍ଣଦେଇ ଶୁଣ । ପଚାରନ୍ତି ପୁତ୍ତଳିକ ଭୋଜ ନରଗଣ ॥ କହ ପୁତ୍ତଳି ଚତୁର୍ଥ ପ୍ରହର ଚରିତ । ଏହାପରେ କି କରିଲେ ବିକ୍ରମ ଆଦିତ୍ୟ ॥ ପୁତ୍ତଳି କହଇ ଶୁଣ ଭୋଜ ନରପତି । ଚତୁର୍ଥ ପ୍ରହର ପର୍ଯ୍ୟ ହେଲା ଆସି ରାତି ॥ ମୌନାବତୀ ମୌନ ଥାଏ ବିକ୍ରମ ରାଜନ । ତା ରତ୍ନହାରକୁ ଧୀରେ କଲେ ସମ୍ବୋଧନ ॥ ଦେଖ ହାର ମୌନାବତୀଠାରେ ଦୟା ନାହିଁ । ପଦଟିଏ କଥା ଆଜ ମୁଖେ ନ କହଇ ॥ ହାରେ ଥାଇ ବେତାଳ ଯେ କହଇ ଭାରତୀ । ସ୍ୱଭାବରେ ସ୍ତ୍ରିରା ପୁଣି ଅଟେ ମୌନାବତୀ ॥ ପ୍ରତାପ ତୁମ୍ଭର କାହୁଁ ଜାଣିବଟି ସେହି । ମୁଁ କହୁଛି ଶୁଣ ମୌନାବତୀ ପକ୍ଷ ହୋଇ ॥ ଏକ ରାଜପୁତ୍ର ତିନି ସଙ୍ଗୀ ସହିତରେ । ଯାଉଥିଲେ ବିଦେଶକୁ ଦେଖିଲେ ବାଟରେ ॥ ଅରଣ୍ୟ ମଧ୍ୟରେ ଅଛି ସୁବର୍ଣ୍ଣ ମନ୍ଦିର । ଖଞ୍ଜା ହୋଇ ନାନାରତ୍ନ ଦିଶେ ଚମତ୍କାର ॥ କଉତୁକେ ଚାରି ମିତ୍ର ସେ ଘରକୁ ଗଲେ । ବସିଅଛି କନ୍ୟାଟିଏ ତହିଁରେ ଦେଖିଲେ ॥ ସୁବର୍ଣ୍ଣ ପ୍ରତିମା ପରି ଦିଶୁଅଛି ସେହି ।

ମର୍ତ୍ତ୍ୟପୁରେ ତା ରୂପକୁ ତୁଳନା ବା କାହିଁ ॥ କଟୀ ତାର ସିଂହକଟୀ ପରିଶୋଭା ପାଇ । ମୁଖରୁ ସୌନ୍ଦର୍ଯ୍ୟ ଚନ୍ଦ୍ରବିମ୍ବକୁ ନିନ୍ଦଇ ॥ ଡାଳିମ୍ବର ବୀଜ ପ୍ରାୟ ହସଇ ଦଶନ । ପକ୍ୱ ବିମ୍ବ ପରି ଜାଣ ଓଷ୍ଠ ଶୋଭାବନ ॥ କହଇ ବଚନ ଯେହ୍ନେ କୋକିଳର ସ୍ୱର । ଗଜଗମନକୁ ନିନ୍ଦେ ଗମନ ତାହାର ॥ ରତ୍ନହାର ତା ଗଳାରେ ଲମ୍ବେ କୁଚତଟେ ପର୍ବତ କନ୍ଦରେ ଯେହ୍ନେ ବିଜୁଳି ଚହଟେ ॥ ଯୁବତୀର ରୂପ ଶୋଭା ଦେଖି ଚାରିଜଣ ॥ ଧାଇଲା ମଦନ ବାଣ ହେଲେ ଅଚେତନ ॥ ଏ ସମୟେ ଆଉ ତିନି ଯୁବତୀ ସେଠାରେ । ଏକା ବସୁସର ଆସି ପ୍ରବେଶ ହୋଇଲେ ॥ କାମାତୁରା ରାକ୍ଷସୀ ସେ ତିନିହେଁ ଅଟନ୍ତି । କପଟେ ମୋହିନୀ ରୂପ ଧରି ଆସିଛନ୍ତି । ଦେଖି ଚାରି ପୁରୁଷଙ୍କୁ ଚେତା କରାଇଲେ । ଚାରି ସଙ୍ଗୀ ଉଠି ଚାରି ଯୁବତୀ ଦେଖିଲେ ॥ ତହୁଁ ତାଙ୍କୁ ରମଣୀଏ ମନ୍ଦେ ମନ୍ଦେ ହସି । ଇଙ୍ଗିତରେ ପଚାରିଲେ ତାଙ୍କ ପାଖେ ବସି ॥ ତୁମ୍ଭମାନଙ୍କର ଘର ଅଟେ କେଉଁ ଦେଶ । ଘୋରବନେ କିକାରଣେ ହୋଇଲ ପ୍ରବେଶ ॥ ତାହା ଶୁଣି ସେ ଚାରିହେଁ ସକଳ ବୃତ୍ତାନ୍ତ । ତାଙ୍କ ଆଗେ ବୁଝାଇଲେ ନ କରି ଗୁପତ ॥ ଶୁଣି ତାଙ୍କୁ ନାରୀମାନେ କହିଲେ ଏ ବାଣୀ । ହୋଇ ନାହୁଁ ବିଭା ଆମ୍ଭେ ଚାରିହେଁ ମିତଣୀ ॥ ଯେବେ ତୁମ୍ଭେମାନେ ବିଭା ହୋଇବ ଆମ୍ଭଙ୍କୁ । କହ ତେବେ ଦେବୁ ବରମାଳା ଯେ ତୁମ୍ଭଙ୍କୁ ॥ ଏହା ଶୁଣି ସେ ଚାରିହେଁ ହରଷ ହୋଇଲେ । ବରମାଳା ଦିଅ ଆମ୍ଭ ଗଳାରେ କହିଲେ ॥ ତାହା ଶୁଣି ଚାରି କନ୍ୟା କଳ୍ପ ନ ବିଚାରି । ଦେଲେ ତାଙ୍କୁ ବରମାଲ୍ୟ ପତିଭାବେ ବରି ॥ ରାଜକନ୍ୟା ବରିନେଲା ରାଜକୁମାରକୁ । ତିନି ଅସୁରୀ ବରିଲେ ତିନି ସଙ୍ଗାତଙ୍କୁ ॥ ଚାରି ସଙ୍ଗୀ ଚାରି କନ୍ୟା ପାଇ ଆନନ୍ଦରେ । ରତି ସୁଖ ଭୋଗ କଲେ ରହିଣ ସେଠାରେ ॥ କେତେଦିନ ଏହିପରି ତହିଁ ରହିଗଲା ।

ହଇବେ ସେ ରାଜକନ୍ୟା ଗର୍ଭବତୀ ହେଲ ॥ ଗର୍ଭ ହେବା ଜାଣି ମନେ ଗରୁ ଚିନ୍ତା ବହି । ଗୁପତେ ରାଜପୁତ୍ରକୁ ଜଣାଇଲ ସେହି ॥ ପ୍ରାଣନାଥ ଶୁଣ ଏବେ କହିବି ମୁଁ ଯାହା । ଜାଣିବଟି ସତ୍ୟ ବୋଲି ମିଥ୍ୟା ନୁହେଁ ତାହା ॥ ଜାଣ୍ ଏହି ତିନ ସଖୀ ନୁହନ୍ତି ମାନୁଷୀ । ମାୟା ରୂପ ଧରିଛନ୍ତି ପ୍ରକୃତେ ରାକ୍ଷସୀ ॥ ମାୟାବଳେ ଭୁଲାଇ ସେ କେତେ ପୁରୁଷଙ୍କୁ । ଏହିଠାରେ ଖାଇଛନ୍ତି ଦେଖିଛି ମୁଁ ତାଙ୍କୁ ॥ ପ୍ରାଣରକ୍ଷା ହେବ ଜାଣ ଏଥୁଁ ପଳାଇଲେ । ବିପଦ ପଡ଼ିବ ଜାଣ ଏ ସ୍ଥାନେ ରହିଲେ ॥ ଶୁଣି କହେ ରାଜପୁତ୍ର କି କରିବା ସଖି । କଥା ଶୁଣି ଜୀବାତ୍ମା ମୋ ଯାଉଅଛି ଶୁଖି । ପ୍ରାଣ ଧରି ରାକ୍ଷସୀଙ୍କ ମୁଖରୁ ପଳାଇ । ଯିବା ଲାଗି ବିଚାରିଲେ ବାଟ ଦିଶୁ ନାହିଁ ॥ ପିଲାଦିନୁ ରହିଛୁ ତୁ ତାଙ୍କର ମେଳରେ । ତାଙ୍କ କଥା ଜାଣିଥିବୁ ବୁଦ୍ଧି କଉଶଳେ ॥ କି ଉପାୟେ ଏବେ ଏଥୁ ପଳାଇବା କହ । ଏଥି ଥିଲେ ତାଙ୍କ ହାତେ ମରଣ ନିଶ୍ଚୟ ॥ କହେ ରାଜଜେମା ଶୁଣ ଆହେ ପ୍ରାଣପତି । ରାକ୍ଷସୀମାନଙ୍କ ଅଛି ଯାହା ରୀତିଗତି ॥ ପୁରୁଷଙ୍କୁ ଦିନ-ଯାକ ଜଗି ରହିଥାନ୍ତି । ଅର୍ଦ୍ଧ ରଜନୀରେ ତାଙ୍କୁ ଶୁଆଇ ଦିଅନ୍ତି ॥ ମାୟାବଳେ ନିଦ୍ରାଗତେ ମୋହି ସେମାନଙ୍କୁ । ସେହି ସମୟରେ ଯାନ୍ତି ଦୂରେ ବୁଲିବାକୁ ॥ ସେହି ସମୟକୁ ଆମେ ଜଗି ରହିଥିବା । ଯେତେବେଳେ ବୁଲିବାକୁ ସେ ଯିବେ ଜାଣିବା ॥ ପକ୍ଷିରାଜ ଘୋଡ଼ା ଆଣି ବସିବା ସମସ୍ତେ । ଆକାଶରେ ପଳାଇବା ଉଡ଼ି ଶୂନ୍ୟପଥେ ॥ ଏ କଥାରେ ନାଥ କିଛି ନ ଘେନ ସଂଶୟ । ଏବେ ଯା କହୁଛି ଶୁଣ ମନ କରି ଥୟ ॥ ନିଅ ଏହି ଅଉଷଧି ଅଛି ମୋହଠାରେ । ଲଗାଇବ ଘୋରିକରି ସମସ୍ତେ ଆଖିରେ ॥ ଏ ଅଞ୍ଜନ ଲଗାଇଲେ ଅସୁରଙ୍କ ମାୟା । କଦାଚିତେ ନ ଲାଗିବ ଜାଣିଥାଅ ଏହା ॥ ଅଉଷଧି ଘେନିକରି ରାଜପୁତ୍ର ଗଲ । ତିନି ସଙ୍ଗାତକୁ ଡାକି ଗୁପତେ

କହିଲା ॥ ଦେଇ ତାହା ତାଙ୍କୁ ସବୁ କହିଲା ବୁଝାଇ । ରହିଥିବ ଚେତା ହୋଇ ପଳାଇବାପାଇଁ ॥ ଚେତା ହୋଇ ସେହିପରି ସବେ ରହିଥିଲେ । ଅସୁରଏ ଅର୍ଦ୍ଧରାତ୍ରେ ବୁଲି ବାହାରିଲେ ॥ ସେହି ସମୟକୁ ଜାଣି ଉଠିଲେ ସମସ୍ତେ । ବସିଲେ ଘୋଡ଼ାରେ ରାଜକନ୍ୟାର ସହିତେ ॥ ପକ୍ଷୀରାଜ ଘୋଡ଼ା ସହୁଁ ଉଡ଼ିଲା ଶୂନ୍ୟରେ । ଅସୁରଙ୍କ ବୁକୁ ତେଣେ ଦାଉ ଦାଉ କରେ ॥ ଜାଣିଲେ ସେମାନେ ସବୁ ମାୟା ବଦ୍ୟାବଳେ । ରହିଁ ରହିଁ ବାଟେ ବାଟେ ଗୋଡ଼ାଇଣ ଗଲେ ॥ ଗୋଡ଼ାଇ ସେ ବହୁଦୂର ସେମାନଙ୍କୁ ଭେଟି । ଯାଉଥିଲେ ଆକାଶରେ ରହିଁଲେ ତରାଟି ॥ ବସୁରିଲେ ଏତେ ଭେଦ ଜାଣିଲେ କେମନ୍ତେ । ରାଜସୁତା ଏହା ସବୁ କରିଛୁ ଗୁପତେ ॥ ସେ ଲାଗି ସେ ଜେମାଟିର ମରଣ ଚାହିଁଲେ । ତଳେ ଥାଇ ଉଚ୍ଚ ସ୍ୱରେ ଏପରି କହିଲେ ॥ ଶୁଣ ଆଗୋ ପ୍ରିୟସଖି କୁଟ ଚାହିଁକରି । ଚୋର ପୁରୁଷଙ୍କୁ ଏକା ନେଉଅଛୁ ଧରି ॥ ଏକା କରି ଖାଇବୁ ତୁ ଆମ୍ଭଙ୍କୁ ନ ଦେଇ । ଏହା କରିବା କି ତୋର ଉଚିତ ଅଟଇ ॥ ଚୋରହେଁ ତ ପାଳଥିଲେ ଖାଇବାର ପାଇଁ । ଗୋଟିଏ ହେଲେ ତୁ ଦିଅ ତଳକୁ ଖସାଇ ॥ ସେ ଗୋଟିକ ଖାଇକରି ବୋଧ ହେବୁ ଆମ୍ଭେ । ବାକି ତିନିଗୋଟି ଖାଇ ରହ ତୁହି ଦମ୍ଭେ ॥ ଏହାଶୁଣି ଚୋରମିତ କଲେ ମହାଭୟ । ଭାବିଲେ ଏ କୂଟ କରି ନେଉଛି ନିଶ୍ଚୟ ॥ ଶିଖାଇ ଆମ୍ଭଙ୍କୁ ଏହି ରାକ୍ଷସୀ ନେଉଛି । ଏ କଥାରେ ସଂଶୟ ହେ ନାହିଁ ଆଉ କିଛି ॥ ଚୋରସଙ୍ଗୀ ଏହିପରି ବିଚାର କରିଲେ । ଘୋଡ଼ାରୁ ସେ କନ୍ୟାଟିକୁ ଫୋପଡ଼ାଇ ଦେଲେ ॥ ତଳେ ପଡ଼ୁ ରାକ୍ଷସୀଏ ଖାଇଲେ ତାହାକୁ । ମଲାବେଳେ ରାଜଜେମା କହେ ପୁରୁଷଙ୍କୁ ॥ ପୁରୁଷ ଜାତିରୁ ବଳି ନିର୍ଦ୍ଦୟ କେ ନାହିଁ ॥ ସୁଖେ କରୁଥାନ୍ତି ଭୋଗ ରସାଇ ହସାଇ ॥ ଭୃତ୍ୟପରି ରହିଥାନ୍ତି ଖଟି ପାଦତଳେ । ଭୋଗ ଶେଷେ ଦିଅନ୍ତି

ସେ ମରଣ କରବଲେ ॥ ମଲେ ଗଲେ ନ ପକାନ୍ତି ମନରେ ସେ କେବେ । ମଲେ ରହନ୍ତି ସେ ଅନ୍ୟ ନାରୀ ପ୍ରେମଭାବେ ।। କରୁଅଛି ନିଶ୍ଚୟ ମୁଁ ନାରୀ ଜନ୍ମ ହେଲେ । ପୁରୁଷଙ୍କ ମୁଖ କେବେ ନ ଚାହିଁବି ବୋଲେ । ଏହା କହି ସେହିଠାରେ ଛାଡ଼ିଲା ଜୀବନ । ପକ୍ଷୀ ଦେହେ ବନ୍ଦୀ ହୋଇ ପୁଣି ହେଲା ଜନ୍ମ ॥ ସେହି ବନ୍ଦୀ କରିଅଛି ବାସ ଏହିଠାରେ । ପୁରୁଷମାନଙ୍କୁ ନିନ୍ଦା ସବୁବେଳେ କରେ ॥ ଏ ସମୟେ କାକ ଏକ ସେଠାବରେ ଥିଲା । ବରରୁଚିଙ୍କୁ ଚାହିଁ ଏମନ୍ତ କହିଲା ॥ ଉନ୍ମାଦ ସ୍ତ୍ରୀ ଶ୍ରୀଙ୍କର ଗତି ନ ଜାଣଇ । ତେଣୁ ସ୍ତ୍ରୀଙ୍କ ପକ୍ଷଧରି ବଚନ କହଇ ॥ ସ୍ତ୍ରୀ ଶ୍ରୀଙ୍କର ଗତି ଗତି ଭଲ ଜାଣେ ମୁହିଁ । ହେ ରାଜନ ପଚାରିଲେ ସବୁ କହିବଇଁ ॥ ତାହା ଶୁଣି ବୋଲନ୍ତି ଯେ ବିକ୍ରମ ମିହିର । କି କି କଥା ଅଛି କାକ କହିବୁଟି ତୋର ॥ ଶୁଣି କାକ ରାଜା ପାଦେ ନମସ୍କାର କରି । କହଇ ଯେ ପୂର୍ବ ଜନ୍ମ କଥାଯାକ ସ୍ମରି ॥ କହେ କାକ କଥା ମୋର ଶୁଣ ନରବର । ଥିଲା ଏକ ଦେଶେ ବଡ଼ ଧନୀ ସୌଦାଗର ॥ ଭାର୍ଯ୍ୟା ତାର ଥିଲା ଯେଣୁ ଅତି ରୂପବତୀ । ନ ଛାଡ଼ଇ ପାଖ ସାଧୁ ତା'ର ଦିବାରାତି ॥ କିଛି କାଳ ପରେ ନାରୀ ପଡ଼ିଲା ରୋଗରେ । ପ୍ରାଣପଣେ ସାଧୁ ତା'ର ଲାଗିଲା ସେବାରେ ॥ ଯେତେ କଲା ଚିକିତ୍ସା ସେ ଭଲ ହେଲାନାହିଁ । ଛାଡ଼ି ତାକୁ ସୌଦାଗର ବେପାରେ ନ ଯାଇ ॥ ଏହିପରି ବହୁକାଳ ଗତ ହୋଇଯାନ୍ତେ । ଦିନେ ସାଧୁ କହିଲା ତା ମାତାର ଅଗ୍ରତେ ॥ ସେ ନାରୀକ ସମର୍ପଣ କରିଣ କହଇ । ଯାଉଛି ଗୋ ମାତ ଏବେ ବେପାରରେ ମୁହିଁ ॥ ଯତ୍ନ କରି ଏହାକୁ ତୁ ଘରେ ପାଳିଥିବୁ । ମୃତ୍ୟୁ ହେଲେ କେବେ ତାକୁ ପୋଡ଼ାଇ ନ ଦେବୁ ॥ ଘୃତେ ଭିଜା ରଖିଥିବୁ ସିନ୍ଦୁକ ଭିତରେ । ଫେରିଲେ ମୁଁ ବେପାରରୁ ଦେଖିବି ଆଖିରେ ॥ ମାତା ଆଗେ ଏହା କହି ଗଲା ସୌଦାଗର । ବୋଇତରେ

ଦ୍ରବ୍ୟ ସାଜ ଚଳିଲା ବେପାର ॥ ସିନ୍ଧୁ ପାର ହୋଇ ପହଞ୍ଚିଲା ଦକ୍ଷିଣରେ । ଭେଟି ନେଇ ଦେଖାକଲା ସେ ରାଜା ପାଶରେ ॥ ରାଜା ଅନୁମତି ପାଇ ଚଞ୍ଚି ସୌଦାଗର । ବିକା କିଣା କରି ଲାଭ ପାଇଲା ପ୍ରଚୁର ॥ ନେଇଥିବା ମୂଳଧନ ହେଲା ସାତଗୁଣ । ଗୃହକୁ ଫେରିବା ଲାଗି ହେଲା ତାର ମନ ॥ ଅନୁକୂଳ କଲା ଯିବାପାଇଁ ନିଜ ଦେଶେ ॥ ଶୁଣରାଜା ହୋଇଥିଲା ଯାହା ତାର ବାସେ ॥ ଭାର୍ଯ୍ୟା ତାର ପଡିଥିଲା ରୋଗ ଆକ୍ରାନ୍ତରେ । ଭଲ ନ ହେଲା ଯେତେକ ଉପାୟ କରିଲେ ॥ ଦେଖି ଦେଖି ବୈଦ୍ୟମାନେ ହୋଇଲେ ସ୍ତମ୍ଭିତ । କଷ୍ଟୁହିନେ ସେ ରମଣୀ ଛାଡିଲା ଜୀବନ ॥ ବୋହୂ ମରିବାର ଦେଖି ଶାଶୁ ଶୋକ କଲା । ପୁଅ ବୋଲି ମାନ ତାକୁ ଝିଅରେ ଭାଜିଲା ॥ ରଖିଦେଲା ଯତ୍ନକରି ସିନ୍ଦୁକ ଭିତରେ । ସୌଦାଗର କଷ୍ଟୁହିନେ ମିଳେ ଆସି ଘରେ ॥ ମାତାକୁ ସେ ପଚାରିଲା ବଧୂ ଗଲା କାହିଁ । ଶୁଣିବା ମାତ୍ରକେ ମାତା ବକଲେ କାନ୍ଦଇ ॥ ସବୁକଥା କହି ଆଣି ଦେଲା ସେ ବାକସ । ଫିଟାଇ ଦେଖିଲା ସାଧୁ ସ୍ତ୍ରୀ ଝିଅ ଭଜା ମାଂସ ॥ ଘରଦ୍ୱାର ଧନ ଦ୍ରବ୍ୟ କଲା ସବୁ ଦୂର । ବାକସକୁ ମୁଣ୍ଡାଇ ସେ ଚଳିଲା ସତ୍ୱର ॥ ବହୁଦୂର ଯାଇ ପଶିଗଲା ବନସ୍ତରେ । ନୟନେ ତା ପୂରି ଥାଏ ଅଶ୍ରୁ ସବୁବେଳେ ॥ ବୁଲି ବୁଲି ନିରାହାରେ ଶୀର୍ଣ୍ଣ ହୋଇଗଲା । ଚଳି ନ ପାରି ସେ ଗଛ ମୂଳରେ ବସିଲା ॥ କନ୍ୟାଟିକୁ ବାହୁନି ସେ କରୁଛି ରୋଦନ । ପାର୍ବତୀଙ୍କ ସଙ୍ଗେ ସେ ସମୟେ ତ୍ରିଲୋଚନ ॥ ବୃଷଭରେ ବସି ଭ୍ରମଣ ଯେ କରୁଥିଲେ । ଅକସ୍ମାତେ ସେହିଠାରେ ଆସି ମିଳିଗଲେ ॥ ଦୁଃଖ ଦେଖି ତାର ଦୟା କଲେ ଦେବୀ ଚିତ୍ତେ । ଜଣାଇଲେ ଘଟଣାଟି ଶିବଙ୍କ ଅଗ୍ରତେ ॥ ଆହେ ପ୍ରଭୁ ଅଟ ତୁମ୍ଭେ ଜଗତର ପିତା । କିଲାଗି ଏ କରେ ଶୋକ ବୁଝ ଏ ବାରତା ॥ ଏହା ଶୁଣି ସଦାଶିବ ହୋଇଲେ ବ୍ରାହ୍ମଣ । ତକ୍ଷଣେ ବ୍ରାହ୍ମଣୀ

ହେଲେ ଠାକୁରାଣୀ ଜାଣ ॥ ଦୁହେଁ ଏକସଙ୍ଗେ ଗଲେ ତାହାର ପାଶକୁ । ବୁଝିଲେ ତା ଦୁଃଖ କଥା ପଚାରି ତାହାକୁ ॥ ଦୟା ବହି ସେ ନାୟିକା ଜୀବନ୍ୟାସ ଦେଲେ । ସୌଦାଗର ଆଗେ ପୁଣି ଦେବୀ ବଖାଣିରେ ॥ ଶୁଣ ତୋର ଏହି ନାରୀ ଅମର ହୋଇବ । ଫିଙ୍ଗିଲେ ତୁ କୁଳୁକୁଳୁ ପାଣି ସେ ମରିବ ॥ ଏହା କହି ଦେବଦେବୀ ହେଲେ ଅନ୍ତର୍ଦ୍ଧାନ । ଭାର୍ଯ୍ୟା ପାଇବାରୁ ସାଧୁ ହେଲା ତୋଷମନ ॥ ସଙ୍ଗେ ଧରି ସେ ନାୟିକା ସୌଦାଗର ଗଲା । ନଈକୂଳ ଗଛମୂଳ ଛାଇରେ ରହିଲା । ଶୋଇଲା ସେ ରମଣୀର ବେନିଜାନୁପରେ । ମୁଣ୍ଡଦେଇ ସୌଦାଗର ନିଶ୍ଚିନ୍ତ ଭାବରେ ॥ ଦଇବ ଭିଆଣ କଥା ଶୁଣ ନରବର । ଏ ସମୟେ ନଦୀମଧ୍ୟେ ଦିବ୍ୟ ସୌଦାଗର ॥ ନାବ ଘେନି ଯାଉଥିଲା ସେହୁ ବେପାରରେ । ସେ ନୟନବାଳା ତାର ପଡ଼ିଲା ଦୃଷ୍ଟିରେ ॥ ଶୋଭା ତାରଦେଖି ରଖାଇଲା ସେ ନାବକୁ । ଏ ସମୟେ ସେ ରମଣୀ ଠାରିଲା ତାହାକୁ ॥ ଏହା ଦେଖି ସୌଦାଗର ନାବରୁ ଆଇଲା । ରମଣୀ ପାଶକୁ ଯାଇ ହସି ପଚାରିଲା ॥ ରମଣୀରତନ କପାଁ ଡାକଲୁ ଗୋ ମୋତେ । କହିଲା ସେ ଯିବି ମୁହିଁ ତୁମ୍ଭର ସଙ୍ଗତେ ॥ ଆଣ ଠେଲା ଏକ ଯ୍ୱାର ମୁଣ୍ଡତଳେ ଦେବ । ନ କର ସଂଶୟ ତୁମ୍ଭ ସଙ୍ଗତରେ ଯିବି ॥ ଏହା ଶୁଣି ସୌଦାଗର ଠେଲା ଦେଲା ଖରେ । ମୁଣ୍ଡଠେକ ଥୋଇଲା ସେ ଠେଲାର ଉପରେ ॥ ଚଳଗଲା ନାବେ ବସି ସଙ୍ଗରେ ତାହାର । ଧର୍ମସାଧୁ ସଙ୍ଗେ ଥିଲା ଶିକାରି କୁକୁର ॥ କନ୍ୟା ନେବା ଦେଖି ଗଲା ନଦୀ ତୀରେ ତୀରେ । ସେ ସାଧୁର ଘର ଦେଖି ବାହୁଡ଼ିଲା ଖରେ ॥ ଧର୍ମ ସୌଦାଗର ତହିଁ ଅଚେତ ନିଦ୍ରାରେ । ଶୋଇଥିଲା ନ ଜାଣଇ କି ହେଲା ସେଠାରେ ॥ ଭାଙ୍ଗିଦେଲା ନିଦ୍ରାତାର ଯହୁଁ ସେ କୁକୁର । ନିଦ୍ରାତେଜି ଉଠି ବସିଲା ସେ ସୌଦାଗର ॥ ନାୟିକା ନ ଦେଖି ପାଶେ ବିକଳ ହୋଇଲା । ସେ

କୁକୁର ବାଟ ତାକୁ କଢ଼ାଇଣନେଲା ॥ ପଛେଯାଏ ସାଧୁ ଆଗେ ଯାଇ ସେ କୁକୁର । ଦେଖାଇଲା ନାରୀ ତା'ର ଥିଲା ଯେଉଁ ଘର ॥ ସୌଦାଗର ଧନଯାକ ରଖି ସେସ୍ଥାନରେ । ଖଡ୍ଗ ଧରି ଅର୍ଦ୍ଧରାତ୍ରେ ପଶିଲା ସେ ଘରେ ॥ ଦେଖିଲା ସେ ନାରୀ ସେହି ପୁରୁଷ ସଙ୍ଗତେ ॥ ଆଳାପଇ ବସି ରସରଙ୍ଗେ ତୋଷଚିତ୍ତେ ॥ ଦେଖି ସାଧୁ ପ୍ରଜ୍ୱଳିତ ହେଲା କୋପାନଳେ । ଖଡ୍ଗ ଟେକି ପ୍ରହାରିଲା ପୁରୁଷ ସ୍କନ୍ଧରେ ॥ ତାହା ଦେଖି ଦୁଇକର ଯୋଡ଼ି ପ୍ରାଣଭୟେ । ସେ ସ୍ତ୍ରୀ କହିଲା ତାକୁ ଅତ୍ୟନ୍ତ ବିନୟେ ॥ ମୋ'ଠାରେ କୋପ ନ କର ଆହେ ପ୍ରାଣପତି । ତୁମ୍ଭର ହୋଇଲା ଏବେ ଏ ସବୁ ସମ୍ପତ୍ତି ॥ ଏହା କହି ଧନଯାକ ପେଡ଼ିରେ ଭରିଲା । ଗୁପତରେ କାଟାମୁଣ୍ଡ ଲୁଚାଇ ଧଇଲା ॥ ସେ ପେଡ଼ିର ମଧ୍ୟେ ତାହା ରଖିଦେଲା ନେଇ । ସୌଦାଗର ସେ ବିଷୟ କିଛି ନ ଜାଣଇ ॥ କପଟୀ ନାରୀରକଥା ନୁହଇ ତ ଜାଲ । ପକାଏ ସେ ଯାହୁଁ ତାହୁଁ ବି'ଆଖିରେ ଧୂଳ ॥ କୂଟପାଞ୍ଚି କାଟାମୁଣ୍ଡ ରଖିଲା ପେଡ଼ିରେ । ପେଡ଼ି ମୁଣ୍ଡାଇ ସେ ଆପେ ଚାଲିଲା ମଝିରେ ॥ ସାଧୁ ଆଗେ ମଧ୍ୟେ ନାରୀ ପଛରେ କୁକୁର । ଏହିପରି ସେ ରାସ୍ତାରେ ଚାଲିଲେ ସତ୍ୱର ॥ ସେ ପେଡ଼ିରୁ ଟୋପା ଟୋପା ପଡ଼ିଲା ରକତ । ଦେଖି ତାକୁ ଚାଟିଦିଏ କୁକୁର ତ୍ୱରିତ ॥ ଚାହିଁ ଯାହୁଁ ନ ରହିଲା ରକତ ବିନ୍ଦୁର । କପଟୀ ରମଣୀ କଲା ମନରେ ବିଚାର ॥ କାଳ ହେଲା ଏ କୁକୁର ମୋ ପଛରେ ରହି । ମରାଇବି ଏହାକୁ ଏବେ ଉପାୟ ଉଆଇ ॥ ଏହା ପାଞ୍ଚି ଥରି ଥରି ବୃକ୍ଷମୂଳେ ଗଲା । ମଲି ମଲି କହି ଗଛ ମୂଳରେ ବସିଲା ॥ ସୌଦାଗର ତା'ର ମାୟା ନ ପାରିଲା ଜାଣି । ପଚାରିଲା କାହିଁକି ଗୋ ବସିଲୁ ଧରଣୀ ॥ ସେ କହିଲା ଦେଖ ମୋତେ ହେଲା ବଡ଼ ଜର । କି କରିବି ଚାଲିବାକୁ ନାହିଁ ମୋର ବଳ ॥ ପଚାରିଲା ସାଧୁ ଏହା ଛାଡ଼ିବ କିପରି ।

ଏହା ଶୁଣି ଉତ୍ତରଲ୍ଲ ବଣ୍ଟପୀ ଚଭୁରା ॥ ପିଲାହବେ ବାପଘରେ ଏହ୍ନ ଜ୍ୱର ହେଲ । କୁକୁର ଟେକରେ ବୈଦ୍ୟ ସ୍ନାନ କରାଇଲ ॥ ସେହ୍ନକ୍ଷଣି ଦେହୁ ମୋର ଗୁଡ଼ିଗଲ ଜ୍ୱର । ଆହେ ପ୍ରାଣପତ ଏବେ ସେହ୍ନକଥା କର ॥ ସୌଦାଗର ତା କଥାକୁ ସତ ବରୃଶଲ । ଏଣେ ତେଣେ ବୁଲ ବୁଲ କୁକୁର ଖୋଜଲ ॥ ଅପରେ କୁକୁର ଏକ ନ ପାଇଲ ତହିଁ । ନିଜ କୁକୁରକୁ ତହିଁ ହାଣିଲ ସେ ଯାଇ ॥ ସେ ରକତ ନେଇ ତା'ର ମୁଣ୍ଡେ ଅଜାଡ଼ନ୍ତେ । ଜ୍ୱର ଗୁଡ଼ି ପଳାଇଲ ଦେହରୁ ତ୍ୱରତେ ॥ ଧଡ଼ପଡ଼ ହୋଇ ତହୁଁ ଉଠିଲ ଯୁବଣ୍ଡ । ବୋଲେ ପ୍ରାଣନାଥ ଦେଖ ଆଜ ନାହିଁ ତାତ ॥ ପେଡ଼ିଟିକ ସେହ୍ନକ୍ଷଣି ମୁଣ୍ଡାଇ ମୁଣ୍ଡରେ । ପୂର୍ବ ପର ଚ୍ଛଲଲ ସେ ପୁରୁଷ ପଛରେ ॥ କଟାମୁଣ୍ଡରୁ ରକତ ଟୋପା ଟୋପା ହୋଇ । ପେଡ଼ିତଳେ ଗଳିଆସି ଭୂଇଁରେ ପଡ଼ଇ ॥ ରଜାର ସିପାହି ସେହ୍ନ ବାଟେ ଯାଉଥିଲ । ରକତ ପଡ଼ିବା ଦେଖି ପଥ ଓଗାଳିଲ ॥ ପଚ୍ଛରିଲ କ ରଖିଛୁ ଏ ପେଡ଼ିରେ ଭୁହ୍ନ । ତାହା ଶୁଣି ସେ ବଣ୍ଟପୀ ଏମନ୍ତ କହଇ ॥ ତୁମ୍ଭେ ନିଜେ ଦେଖ ଏବେ ଫିଟାଇ ପେଡ଼ିକ । ଏହା କହ୍ନ ଦେଖାଇଲ ଚ୍ଛଙ୍କୁଡ଼ିକୁ ଟେକ । ମୁଣ୍ଡ ଦେଖି ସେ ସିପାହି କୋପମାନ ହେଲ । କାହାର ଏ ମୁଣ୍ଡ ବୋଲ ଗର୍ଜି ପଚ୍ଛରିଲ ॥ ଏହା ଶୁଣି କହେ ତାକୁ ସେ ବଣ୍ଟପୀ ନାରୀ । ମୋ ପତିକୁ ଖଡ଼୍‌ଗେ ଏ ଖଣ୍ଡ ହାଣିକରି ॥ ପୁଣି ମୋତେ ହାଣିବାକୁ ହୁଅନ୍ତେ ଉଦ୍ୟତ । ଭୟେ ଗୋଡ଼ ଧରି ମୁଁ ଯେ ହୋଇଲ ମୁକତ ॥ କହ୍ନଲ ନ ମାର ମୋତେ ସଙ୍ଗେ ସଙ୍ଗେ ଯିବ । ଦାସୀପଣେ ତୋ ପାଦରେ ସେବା କରୁଥିବ ॥ ଦାସୀ କରିବାକୁ ମତେ ନେଉଛୁ ସଙ୍ଗତେ । ଧର୍ମପରାୟଣ ତୁମ୍ଭେ ବଗ୍ଭର ହେ ଚତ୍ତେ ॥ ଏହା ଶୁଣି ସେ ସିପାହି ମେଢ଼ି ସହ୍ନତରେ । ସେ ଦୁହିଙ୍କୁ ବାନ୍ଧନେଲ ରଜା ସମୀପରେ । ଦେଖି ପଚ୍ଛରଲେ ରଜା ତହିଁର

କାରଣ । କହଇ ରମଣୀ ତାଙ୍କୁ ଶୁଣ ନରଗଣ ॥ ଏହି ଖଣ୍ଡ ଗତ-ରାତେ ମୋ ଗୃହେ ପଶିଲା । ଖଣ୍ଡାଘାରେ ମୋ ସ୍ୱାମୀର ମୁଣ୍ଡ କାଟି ଦେଲା ॥ ପୁଣି ମୋତେ ମାରିବାକୁ ଆସିବାର ବେଳେ । ଧାଇଁ ଯାଇ ପଡିଗଲି ତାହା ପାଦତଳେ ॥ କହିଲି ନ ମାର ମୋତେ ମୁଁ ଅବଳା ନାରୀ । କ ଯଶ ପାଇବ ଅବା ମୋତେ ମାରି କରି ॥ ସ୍ତ୍ରୀହତ୍ୟା ପାପ କପିଁ ବହିବଟି ଅଙ୍ଗେ । ତୁମ୍ଭର ମୁଁ ଦାସୀ ହୋଇ ଯିବ ପଛେ ସଙ୍ଗେ ॥ ତାହା ଶୁଣି ସଙ୍ଗେ ମୋତେ ଯାଉଅଛି ଘେନି । କର ନ୍ୟାୟ ତୁମ୍ଭେ ଧର୍ମ ଯାହା ନୃପମଣି ॥ ଏହା ଶୁଣି ସୌଦାଗର ବୋଇଲ ବଚନ । ଏହିମୋର ଭାର୍ଯ୍ୟା ମିଥ୍ୟା ନୁହଇ ରାଜନ ॥ ଯଦି ସତ୍ୟେ ଏହି ମୋର ଭାର୍ଯ୍ୟା ହୋଇଥିବ । ଦେଖ ମୋର କୁନ୍ତକୁଞ୍ଜା ପାଣିରେ ମରିବ ॥ ପୁଣିରାଜା ଆଗେ ପୂର୍ବକଥା ବୁଝାଇଲା । ତୁଣ୍ଡେ ଧରି କୁନ୍ତକୁଞ୍ଜା ପାଣି ଫିଣ୍ଡି ଦେଲା ॥ ପଡ଼ନ୍ତେ ସେ ପାଣି ଦେହୁ ପ୍ରାଣ ଗଲା ଛୁଡ଼ି । ପଡ଼ିଗଲା ଭୂତଳରେ ଶବ ମୁହଁମାଡ଼ି ॥ ଏହା ଦେଖି ନରପତି ମନେ ଭୟ କଲେ । ସିଦ୍ଧପୁରୁଷ ଏ ଶବ ମୁକୁଳାଇ ଦେଲେ ॥ ସେହି ସୌଦାଗର ମୁହିଁ କାକ ଦେହ ପାଇ । ଏହି ବନେ ରହିଅଛି ଜାଣ ନରସାଇଁ ॥ ସ୍ତ୍ରୀଜାତି ଅବିଶ୍ୱାସୀ ତାହାଙ୍କ ବଦନ । ନରୁହିଁବ କଦାଚିତେ ସତ୍ୟ ମୋ ବଚନ ॥ ବକାର ମୋହର ସବୁ ଶୁଣିଲ ଚରିତ । କେ ରହିବ ଏ ବନରେ କହ କରି ତଥ୍ୟ ॥ ମୌନାବତୀ ହାର ଥାଇ କହଇ ବେତାଳ । ବକା ବନେ ରହିବାର ଉଚିତ ବଚର ॥ ଏହା ଶୁଣି ମୌନାବତୀ ଉଠି ଶିର ଝୁଣି । ବୋଇଲା ମୋ ହାର ହୋଇ କହୁ ମିଥ୍ୟାବାଣୀ ॥ ବକା ଯାଉ ଦୂର ହୋଇ ରହୁ ଥାଉ କାକ । ସ୍ତ୍ରୀଜାତି ଅବିଶ୍ୱାସୀ ଶାସ୍ତ୍ରେ ଅଛି ବାକ୍ୟ ॥ ବିକ୍ରମ ଆଦିତ୍ୟ ଶୁଣି ଆନନ୍ଦ ମନରେ । କହିଲେ ସେ ମୌନାବତୀ ସଖୀଙ୍କି ସଧୀରେ । ଶୁଣିଲ ତ ତୁମ୍ଭେମାନେ ବସି

ଏହିଠାର । ମୌନାବତୀ କହିବାର କଥା ଶୁଣଥର ॥ ଚତୁର୍ଥ ପ୍ରହର ଏବେ ହେଲା ସମାପନ । ପୁଣି କିପାଁ ମୌନାବତୀ ହୋଇଲା ମଉନ ॥ ହୋଇଲା ତ ଏବେ ତା'ର ପ୍ରତିଜ୍ଞା ପୂରଣ । ମାଳା ଧରି କରୁ ଏବେ ମୋତେ ସେ ବରଣ ॥ ଅଥବା ତା ମନେ ଆଉ କିଛି କଥା ଥିଲେ । ପଚାରି ସଖୀଏ କହ ତୁମ୍ଭେ ମୋତେ ଭଲେ ॥ ତାହା ଶୁଣି ମୌନାବତୀ ସଖୀଙ୍କି କହଇ । ତୁମ୍ଭେମାନେ ଯାଅ ତାଙ୍କୁ କହିବ ବୁଝାଇ ॥ ମୋ ଆଗରେ ଯେଉଁ ଛାଗୀ ବନ୍ଧା ହୋଇଅଛି । ସବୁ ସମୟରେ ତାଙ୍କୁ ଭୂତ ଲାଗିଅଛି ॥ ସେ ଛାଗୀକି ଦୁହିଁ କରି ଆଣି କ୍ଷୀର ଦେଲେ । ପ୍ରତିଜ୍ଞା ପୂରଣ ହେବ ବରିବି ମୁଁ ଭଲେ ॥ ବିକ୍ରମ ଆଦିତ୍ୟ ତାହା ଶୁଣି ତୋଷ ମନେ । ତାଳ ବେତାଳଙ୍କୁ ଡୋଇଲେ ସେ ଗୋପନେ ॥ ତାଳ ବେତାଳ ଛାଗୀର ମୁଖକୁ ଧଇଲେ । ବିକ୍ରମ ଆଦିତ୍ୟ ନିଜେ ବସିଣ ଦୁହିଁଲେ ॥ ମୌନାବତୀ ପାଶେ ନେଇ ଦେଲେ ସହୁଁ କ୍ଷୀର । କ୍ଷୀର ଦେଖି ମୌନାବତୀ ହେଲା ଚମତ୍କାର ॥ ମନେ ବିଚାରିଲା ବରମାଳା ଦେବା ପାଇଁ । ନିଜ ସଖୀମାନଙ୍କୁ ସେ କହିଲା ବୁଝାଇ ॥ ନିଚ୍ଚର ଏ ରସିକଙ୍କୁ କେଉଁ ଦେଶେ ଘର । କାହାର କୁମର ପୁଣି କି ନାମ ତାଙ୍କର ॥ ନ ଜାଣିଲେ କୁଳଗୋତ୍ର ତାହାଙ୍କୁ କିପରି । ଦେବ ବରମାଳା ରାଜକନ୍ୟା ହୋଇକରି ॥ ବୋଇଲେ ବିକ୍ରମାଦିତ୍ୟ ଶୁଣ ମୌନାବତୀ । ଉଜ୍ଜ୍ୱଳ ନଗରେ ଆମ୍ଭେ ଅଟୁଁ ନରପତି ॥ ବିକ୍ରମ ଆଦିତ୍ୟ ନାମେ ଜଗତେ ବିଦିତ । ଗନ୍ଧର୍ବ ଗନ୍ଧର୍ବସେନଙ୍କର ଆମ୍ଭେ ସୁତ ॥ ଏହା ଶୁଣି ମୌନାବତୀ ଉଠିଲା ହରଷେ । ଗଳେ ମାଳା ଦେଇ ହସ୍ତ ଧରିଲା ସୁହାସେ । ବସାଇଲା ନେଇ ତାଙ୍କୁ ନିଜ ଆସନରେ । ଆପେ ବସିଲା ତାଙ୍କର ବାମପାର୍ଶ୍ୱରେ ॥ ତାମ୍ବୁଳ ବଢ଼ଆ ଦେଇ ଯୋଡ଼ି ବେନି କରି । ବୋଲେ ଦୋଷ କ୍ଷମାକର ଆହେ

ପ୍ରାଣେଶ୍ୱର ॥ ସ୍ୱଭାବରେ ସ୍ତ୍ରୀ ଜାତି ଅଳ୍ପ ବୁଦ୍ଧି ମୋର । ତୁମ୍ଭଙ୍କୁ ଚିହ୍ନିବା ପାଇଁ କାହିଁ ଶକ୍ତି ମୋର ॥ ପୂର୍ବ ଭାଗ୍ୟ ଥିଲା ଆଜ ପାଇଲି ତୁମ୍ଭଙ୍କୁ । ପଠାଇଲି ବହି ଜାଣି ମୋହର ଚିତ୍ତକୁ ॥ ଏହା କହି ମନ୍ଦ-ହାସ କରଣ ଉଠିଲା । ଅତର ପାନର ଆଣି ନୃପଙ୍କୁ ସିଞ୍ଚିଲା ॥ ତାଙ୍କ ଭାବ ଜାଣି ସଖୀମାନେ ଉଠିଗଲେ । ରତିରସେ ବେନିଜନ ପ୍ରମୋଦ ଲଭିଲେ ॥ ଏହିପରି ନୃପ ତହିଁ ରହି କେତେ ଦିନ । ଯିବାପାଇଁ ନିଜ ରାଜ୍ୟ ବଳାଇଲେ ମନ ॥ ମୌନାବତୀ ମୌନ ଭଙ୍ଗି ସଙ୍ଗତରେ ନେଲେ । ଉଜ୍ଜ୍ୱଳ ନଗରେ ଯଥାକାଳେ ପହୁଞ୍ଚିଲେ ॥ ଶୁଣିଲ ତ ଭୋଜରାଜ ତାଙ୍କର ଚରିତ । କେତେ ଗୁଣବନ୍ତ ଥିଲେ ବିକ୍ରମ ଆଦିତ୍ୟ ॥ ତାଙ୍କପରି ଗୁଣବାନ ଯେବେ ତୁମ୍ଭେ ହେବ । ତେବେ ଆସି ଏହି ସିଂହାସନରେ ବସିବ ॥ ଏହା କହି ସେ ପୁତ୍ତଳି ସ୍ୱର୍ଗେ ଚଳିଗଲା । ଜଗନ୍ନାଥ ସିଂହ ଏହା ଗୀତରେ କହିଲା ॥

---

## ଷଷ୍ଠ ପୁତ୍ତଳିର କଥା

ତହୁଁ କେତେଦିନ ପରେ ଭୋଜ ନରରାଣ । ସିଂହାସନେ ବସିବାକୁ ବଳାଇଲେ ମନ ॥ ଦେବ ଦ୍ୱିଜ ପୂଜା ସାରି କଲେ ହୋମଦାନ । ସିଂହାସନ ନିକଟକୁ କଲେ ସେ ଗମନ ॥ ବସିବାକୁ ତାହାପରେ ଉଠନ୍ତେ ସେ ଯାଇ । ଷଷ୍ଠ ପୁତ୍ତଳି ତାହାଙ୍କୁ କହିଲା ବୁଝାଇ ॥ ଶୁଣ ଆହେ ଭୋଜନୃପ ବଚନ ମୋହର । ବସନ୍ତି ଏ ସିଂହାସନେ ବିକ୍ରମ ମିହିର ॥ ତାଙ୍କ ସମ ତୁମ୍ଭେ ହୁଅ ଯାଇ ଏବେ ଆଗ । ପଛେ ଆସି ସିଂହାସନେ ବସି କର ଭୋଗ ॥ ଏହା ଶୁଣି ପଚାରିଲେ ଭୋଜ ନରେଶ୍ୱର । ଜାଣିଥିଲେ ତାଙ୍କ କୀର୍ତ୍ତି କହ ମୋ ଆଗର ॥ ଶୁଣି ବୋଲେ ସେ ପୁତ୍ତଳି ଆହେ ନରସାଇଁ । କହିବି

ବୁଝାଇ ଯାହା ଜାଣିଅଛି ମୁହିଁ ॥ ତାହାଙ୍କର ଭାର୍ଯ୍ୟା ନାମ ଅଟେ ଭାନୁମତୀ । ସୁଲକ୍ଷଣୀ ରୂପବତୀ ପୁଣି ମହାସତୀ ॥ ରୂପେ ତା'ର ମୁଗ୍ଧ ହୋଇ ବିକ୍ରମ ମହୀବର । ତା ପାଶରୁ କଦାଚିତ ନୋହିଲେ ଅନ୍ତର । ସବୁବେଳେ ଅନ୍ତଃପୁର ଭିତରେ ରହିଲେ । ଏହା ଦେଖି ପ୍ରାଜ୍ଞମନ୍ତ୍ରୀ ସବୁ ବିଚାରିଲେ ॥ ସର୍ବଦା ନୃପତି ଯେବେ ଥିବେ ଅନ୍ତଃପୁରେ । କିପରି କରିବା ଆମ୍ଭେ ବିଚାର ଦେଶରେ ॥ ଏହା ଭାବି ନୃପତିଙ୍କି ଆଣିଲେ ଡକାଇ । କର ଯୋଡ଼ି ମନ୍ତ୍ରୀମାନେ କହିଲେ ବୁଝାଇ ॥ ଆପଣ ତ ସବୁବେଳେ ଥିବେ ଅନ୍ତଃପୁରେ । ମନ୍ତ୍ରୀ କରିବେ ହେ ରାଜ୍ୟ ରକ୍ଷା କି ପ୍ରକାରେ ॥ ଭାନୁମତୀ ପ୍ରତିମୂର୍ତ୍ତି ଗୋଟିଏ କରାଅ । ସିଂହାସନ ପାଶେ ରଖି ତାକୁ ଦେଖୁଥାଅ ॥ ମନ୍ତ୍ରୀଙ୍କ ବଚନ ନୃପ ସତ ବିଚାରିଲେ । ହେଉ ପ୍ରତିରୂପ ଏକ ଗଢ଼ାଅ ବୋଇଲେ ॥ ତାହା ଶୁଣି ମନ୍ତ୍ରୀମାନେ ଡକାଇ ବିନ୍ଧାଣି । ଭଣ୍ଡାରରୁ ସ୍ୱର୍ଣ୍ଣରତ୍ନ ଦେଲେ ତାକୁ ଗଣି ॥ ବୋଇଲେ ସେ ଭାନୁମତୀ ରୂପଟି ଗଢ଼ିବ । କେଉଁଠାରେ କିଛି ଊଣା ଅଧିକ ନୋହିବ ॥ ଏହା ଶୁଣି ସେ ବିନ୍ଧାଣି ସୁନାତକ ନେଲା । ଅତିଯତ୍ନେ ଭାନୁମତୀ ମୂରତି ଗଢ଼ିଲା ॥ ରାଜସଭା ମଧ୍ୟେ ନେଇ ଥୋଇଲା ତାହାକୁ । ଦେଖି ମନ୍ତ୍ରୀମାନେ ଜଣା କରିଲେ ରାଜାଙ୍କୁ ॥ ତାହା ଶୁଣି ନରପତି ସଭାକୁ ଆସିଲେ । ମୂର୍ତ୍ତିଟିକୁ ଦେଖି ସଭାଜନେ ପଚାରିଲେ ॥ ଭାନୁମତୀ ରୂପ ସଙ୍ଗେ ହେଲା କି ସମାନ । କହ ତୁମ୍ଭମାନଙ୍କର ପାଉଛି କି ମନ ॥ କହିଲେ ସକଳେ ଶୁଣି ସମାନ ହୋଇଲା । ଧନ୍ୟ ଏ ବିନ୍ଧାଣି ଅତି ଯତନେ ଗଢ଼ିଲା ॥ ବୋଇଲେ ନୃପତି ଏହା ନିଶ୍ଚିତ ଅଟଇ । ସର୍ବଗୁଣେ ଭାନୁମତୀ ସମ ଅଛି ହୋଇ ॥ ବରରୁଚି ନାମେ ଥିଲେ ପଣ୍ଡିତ ଶେଖର । ସରସ୍ୱତୀ ପୁତ୍ର ସେହି ବିଦ୍ୟାର ସାଗର ॥ ଯହୁଁ ଭଲ ହେଲା ବୋଲି କହିଲେ ସମସ୍ତେ । ହେଲା ନାହିଁ କହି ମଥା ହଲାଇଲେ ଆସ୍ତେ ॥ ରଙ୍ଗ କଳା

ବନକକୁ ଧରି ଶିଳ୍ପକାର । ଛୁଡ଼ା ହୋଇଥିଲା ମୌନଭାବେ ସେ ଠାବର ॥ ବରରୁଚି କହିବାର କର୍ଣ୍ଣରେ ଶୁଣିଲା । କ୍ରୁଦ୍ଧ ହୋଇ ସଭାମଧ୍ୟେ ଏପରି କହିଲା ॥ ଭାନୁମତୀ ଭୁଲେ ଯେବେ ନୋହିବ ଏ ସମ । ନ ଧରିବ ବନକ ମୁଁ ଏ ମୋର ନିୟମ । ଏହା କହି ଧରିଥିବା ବନକ ପାଟକୁ । ଫିଙ୍ଗିଦେଲା କୋପକରି ପଣ୍ଡିତ ଆଗକୁ ॥ ତଳେ ପଡ଼ି ସେ ପାଟଟି ଗୁଣ୍ଡ ହୋଇଗଲା । କାଳଛଟା ସେ ମୂର୍ତ୍ତିର ଜାନୁରେ ଚଢ଼ିଲା ॥ କଳାଜାଇ ଟେରି ଚିହ୍ନ ଦିଶିଲା ସୁନ୍ଦର । ବୋଲନ୍ତି ଯେ ବରରୁଚି ହୋଇଲା ଏଥର ॥ ତାହା ଶୁଣି ସଭାଲୋକେ ହୋଇଲେ ଚକିତ ॥ ଦେଖିଛନ୍ତି ରାଣୀଙ୍କର ଉରୁ ଏ ନିଶ୍ଚିତ ॥ ନରପତି ଶୁଣି ପୁଣି ହେଲେ ଅତି ରୁଷ୍ଟ । ବିଚାରିଲେ ଏ ବ୍ରାହ୍ମଣ ନିଶ୍ଚେ ବଡ଼ଦୁଷ୍ଟ ॥ ସୁପଣ୍ଡିତ ବୋଲି ରଖିଥିବାରୁ ପାଶରେ । ମହତ୍ତ୍ୱ ସାରିଲା ବସି ଆମ୍ଭର ସଭାରେ ॥ ମୁଖ ଯୁଆର ମୋଟେ ଆଉ ଭାବି ନ ଯୋଗାଇ । ଏହା ଭାବି ଆଜ୍ଞାଦେଲେ କଟୁଆଳ ଠାଇଁ ॥ ଏ ଦୁଷ୍ଟକୁ ଏଥୁ ବେଗେ ଧରି ଘେନିଯିବୁ । ଶ୍ମଶାନ ମଧ୍ୟକୁ ନେଇ ମସ୍ତକ ଛେଦିବୁ ॥ ବିଳମ୍ବ କରିବା ଆଉ ନାହିଁ ପ୍ରୟୋଜନ । ଆଜ୍ଞା ମାତ୍ରେ କଟୁଆଳ କରିଲା ଗମନ ॥ ବରରୁଚି ପଣ୍ଡିତଙ୍କୁ ବାନ୍ଧି ଦଉଡ଼ିରେ । ଟାଣି ନେଇ ପହଞ୍ଚିଲା ଶ୍ମଶାନ ଭିତରେ ॥ ସେଠାବରେ ତାହାଙ୍କୁ ସେ ଦେଲା ପିଟାଇଣ । ଶେଷେ ଦୟା କରି ପୁଣି ଭାଷିଲା ବଚନ ॥ ଶୁଣ ଅହେ ବିପ୍ର ତୁମ୍ଭେ ଅଟ ସୁପଣ୍ଡିତ । ତୁମ୍ଭ ପ୍ରାଣ ନାଶିବାକୁ ଚିତ୍ତ ନାହିଁ ହୋତ ॥ ଛାଡ଼ି ଦେଉଅଛି ତୁମ୍ଭେ ଏଠାରୁ ପଳାଅ । ଅନ୍ୟ ଦେଶେ ଲୁଚି ପ୍ରାଣ ଘେନି ରହିଥାଅ ॥ ଏହା କହି ଛାଡ଼ିଦେଲା ତାଙ୍କୁ ସେଠାବରେ । ବରରୁଚି ପଳାଇଲେ ଜୀବନ ଆତୁରେ ॥ ବ୍ରାହ୍ମଣ ଗୃହରେ ଲୁଚି ରହିଲେ ସେ ଯାଇ । କୁକୁରଟେ କଟୁଆଳ କାଟି ରକ୍ତ ନେଇ ॥ ନୃପତି ଛାମୁରେ ଯାଇ ତାହା ଦେଖାଇଲା ॥ ଦେଖି

ତାହା ରାଜାଙ୍କର ମନେ କଷ୍ଟ ହେଲା ॥ ବରୁଣଲେ ମୋ ସମାନେ ନାହିଁ ପାପୀ ଆଉ । କ୍ରୋଧବଶେ ଏହା କଲି କିମ୍ପାଇଁ ॥ ଏହାପରେ କଥାଶୁଣ ଭୋଜନରବର । ଦିନକରେ ନନ୍ଦମାନ ରାଜାଙ୍କ କୁମର ॥ ଶିକାର କରିବା ଲାଗି ବନ ମଧ୍ୟେ ଗଲେ ॥ ଘୋଡ଼ା ହାତୀ ସୈନ୍ୟସବୁ ସଙ୍ଗତରେ ନେଲେ ॥ ଯାଇଁ ଘୋର ବନମଧ୍ୟେ ହୋଇଲେ ପ୍ରବେଶ । ଗଣ୍ଡକରି ଜଗାଇଲେ ସୈନ୍ୟ ଚାରିପାଶ ॥ ଅନ୍ୟଦିଗେ ରାଜପୁତ୍ର ତୁରଙ୍ଗ ପିଠିରେ । ବସି ସ୍ଥିର ଦୃଷ୍ଟିଦେଲେ ଇନ୍ଦୁଙ୍କ ଉପରେ ॥ ଜଗି ରହିଥିଲେ ନୃପସୁତ ଯେଉଁ ବାଟେ । ପଳାଇଲା ମୃଗଶିଶୁଟିଏ ସେହି ବାଟେ ॥ ନୃପସୁତ ତାହା ପଛେପଛେ ଗୋଡ଼ାଇଲେ । ବୁଲି ବୁଲି ସୈନ୍ୟମାନେ ଭେଟ ନ ପାଇଲେ । ବିରସ ବଦନେ ସର୍ବେ ବାହୁଡ଼ିଲେ ଘରେ । ଏକା ହୋଇ ରାଜପୁତ୍ର ରହିଲେ ବନରେ ॥ ଖୋଜି ଖୋଜି ମୃଗଶିଶୁ ନ ପାଇଲେ କାହିଁ । ଏ ସମୟେ ରବି ଅସ୍ତ ହୋଇଗଲେ ତହିଁ ନୃପସୁତ ରାତ୍ର ହେବା ଦେଖି ଭୟ କରି । ଚଢ଼ିଲେ ବୃକ୍ଷରେ ଯାଇଁ ଘୋଡ଼ାରୁ ଓହ୍ଲାଇ ॥ ଫିଟିବାରୁ ଘୋଡ଼ା ତହୁଁ ଘରେ ପଳାଇଲା । ଆପଣା ଶାଳରେ ଯାଇ ପ୍ରବେଶ ହୋଇଲା ॥ ଏଥିଅନ୍ତେ ହେଲା ଯାହା ଶୁଣ କହିବଇଁ । ଭାଲୁ ଏକ ବାଘ ଦେଖି ପଳାଇ ଆସଇ ॥ ପ୍ରାଣ ଆତୁରରେ ଭାଲୁ ତରସ୍ତ ହୋଇଲା । ନୃପସୁତ ଥିବା ଗଛ ଉପରେ ଉଠିଲା ॥ ଦେଖିଲା ସେ ନର ଏକ ବସିଅଛି ତହିଁ । ଦେଖି ତାକୁ ଭାଲୁ କହେ ଭୟ କରନ୍ତୁ ନାହିଁ ॥ ମୋହଲାଗି ତୁମ୍ଭେ ମନେ ନ ହୁଅ କେବେ ଭୀତ । ତୁମ୍ଭେ ଆମ୍ଭେ ଆଜଠାରୁ ହୋଇବା ମଇତ୍ର ॥ ରାତ୍ରଯାକ ଦୁଇମିତ ସୁଖେ ରହିଥିବା । ପ୍ରଭାତ ହୋଇଲେ ନିଜ ନିଜ ସ୍ଥାନେ ଯିବା ॥ ଅଙ୍ଗୀକାର କଲା ତାହା ଶୁଣି ରାଜସୁତ । ଧର୍ମ ସାକ୍ଷୀ କରି ଦୁହେଁ ହୋଇଲେ ମଇତ୍ର ॥ ଏହା ଦେଖି ବାଘ ଗଛ ମୂଳରେ ବସିଲା । କେତେ

ଗୋଟେ ପଡ଼ିଗଲେ ଖାଇବ ଭାବିଲା ॥ କିଛିକ୍ଷଣ ଗଲାପରେ କହେ ରାଜପୁତ୍ର । ବଡ଼ ନିଦ ଲାଗୁଅଛି ମୋ ଆଖିକି ମିତ୍ର ॥ ଏହା ଶୁଣି ଭାଲୁ ବୋଲେ କିଛି ଭୟ ନାହିଁ । ଶୁଅ ତୁମ୍ଭେ ମୋ ଜଙ୍ଘରେ ମୁହିଁ ଥିବି ଚାହିଁ ॥ ସୁଖେ ଯହୁଁ ରାଜପୁତ୍ର ନିଦରେ ଶୋଇଲା । ଦେଖି ତାକୁ ତହୁଁ ବାଘ ଭାଲୁକୁ କହିଲା ॥ ଶୁଣ ଆରେ ଭାଲୁ ତୋତେ କିଛି ଜଣା ନାହିଁ । ମନୁଷ୍ୟ ସଙ୍ଗରେ ମିତ୍ର ହୋଇଛୁ କିପାଇଁ ॥ ଏ ଗୋଡ଼ଆ ଜନ୍ତୁକୁ ତୁ କରିଛୁ ବିଶ୍ୱାସ । ମୁଁ ଗଲେ ସକାଳେ ତୋତେ କରିବ ବିନାଶ ॥ ପାଇଅଛୁ ଭଲଯୋଗ ଶୋଇଛି ନିଦରେ । ପେଲପକା ଖାଇଦେବି ତାକୁ ମୁଁ ଏଠାରେ ॥ ଆନନ୍ଦରେ ପଳାଇବି ଖାଇ ତାକୁ ମୁହିଁ । ରାତ୍ର ଶେଷେ ନିଶ୍ଚିନ୍ତରେ ବୁଲିଯିବୁ ତୁହି ॥ ତାହା ଶୁଣି ଭାଲୁ କହେ ଶୁଣ ଆହେ ବାଘ । ତୋ ବୋଲରେ ଧର୍ମକୁ ମୁଁ କରିବ ଲଙ୍ଘବ ॥ ଧର୍ମସାକ୍ଷୀକରି ମିତ୍ର ହୋଇଅଛି ସେହି । ଅବିଶ୍ୱାସ କଲେ ମିତ୍ରଦ୍ରୋହୀ ମୁଁ ହେବଇଁ ॥ ବିଶ୍ୱାସଘାତିର ସୁଖ ନାହିଁ ଇହ-ଲୋକେ । ମଲେ ମଧ୍ୟ ପରଲୋକେ ପଡ଼ଇ ନରକେ ॥ ତାହା ଶୁଣି ବାଘ ତହିଁ ନୀରବେ ବସିଲା । କିଛିକ୍ଷଣେ ରାଜପୁତ୍ର ନିଦରୁ ଉଠିଲା ॥ ଭାଲୁ ବୋଲେ ଆହେ ମିତ୍ର ଶୋଉଅଛି ମୁହିଁ । ବସିଥାଅ ସାବଧାନେ ତୁମ୍ଭେ ଚେତା ରହି ॥ ଶୁଣି ରାଜପୁତ୍ର ବୋଲେ ହେଉ ସେହିପରି । ଶୋଇଲା ଭଲ୍ଲୁକ ବୃକ୍ଷେ ନଖ ଛନ୍ଦିକରି ॥ ପୂର୍ବରୁ ତ ବାଘକଥା ଜାଣିଥିଲା ସେହି । ସେଥିଲାଗି ତା ଆଖିକୁ ନିଦ ନ ଆସଇ ॥ ଆଖି ବୁଜି ଢୁଳୁ ଢୁଳୁ ହୋଇଲା ମିଛରେ । ଦେଖି ଏହା ବାଘ ବୋଲେ ମନୁଷ୍ୟକୁ ଖରେ ॥ ଶୁଣରେ ମାନବ ଯାହା କହୁଅଛି ମୁହିଁ । ପୀରତି ତୁ ଭାଲୁ ସଙ୍ଗେ କରୁ କାହିଁପାଇଁ ॥ ଭାଲୁ ଅଟେ ବନଜନ୍ତୁ ନଖ ଥିବା ଜୀବ । କିପରି ମନୁଷ୍ୟଠାରେ ପୀରତି ରଖିବ ॥ ଡରି ମୋତେ ରହିଅଛି ତୋପାଖରେ ଯାଇ । ସେହି ହେତୁ ତୋତେ କିଛି କରିପାରୁ

ନାହିଁ ॥ ମୋହ ବାଟେ ଯିବ ମୂର୍ଖ ସକାଳୁ ଉଠିବ । ମିଷ୍ଟାନ୍ନରେ ଖାଇ ତୋତେ ବଣରେ ପଶିବ ॥ ମନମଧ୍ୟେ ବିଚାରି ତୁ ମୋହର କଥାକୁ । ପେଲିଦିଅ ତଳକୁ ମୁଁ ଖାଇଦେବି ତାକୁ ॥ ଖାଇ ତାକୁ ଆନନ୍ଦରେ ପଳାଇବି ମୁହିଁ । ନିର୍ଭୟପଦେ ପ୍ରଭାତରୁ ଉଠିଯିବୁ ତୁହି ॥ ରାଜପୁତ୍ର ବାଘ କଥା ସତ ବିଚାରିଲା । ସେ ଭାଲୁକୁ ଧରି ଆଗେ ତହୁଁ ପେଲିଦେଲା ॥ ବୃକ୍ଷେ ନଖ ମାରି ଭାଲୁ ରହିଥିଲା ଦୃଢ଼େ । ପେଲିବାରୁ ରାଜପୁତ୍ର ନ ପୁରିଲା ଦାଢ଼େ ॥ ଉଠି ବୋଲେ ଆରେ ମୂଢ଼ କେଡ଼େ କର୍ମ କଲୁ । ମୋ ବିନାଶ ପାଇଁ ବୃକ୍ଷୁଁ ପେଲି ଦେଉଥିଲୁ । ତୋତେ ପେଲିବାକୁ ବାଘ ଆଗୁ ଥିଲା କହି । ପେଲିଥିଲେ ଜୀବନରେ ଥାଆନ୍ତୁ କି ତୁହି ॥ ଅବିଶ୍ୱାସୀ ନର ତୋତେ ହେଉରେ ଧିକ୍କାର । ନାଶ କଲେ ତୋତେ ହେବ ମିତ୍ରଦ୍ରୋହ ମୋର । ଏହା କହି ଭାଲୁ ତାର ଜିଭ ଟାଣି ନେଲା । ସସେମିରା ଚାରିଗୋଟି ଅକ୍ଷର ଲେଖିଲା ॥ ବୋଇଲା ସେ ମିତ୍ରଦ୍ରୋହ ଫଳ ଏବେ ପାଅ । ସବୁବେଳେ ସସେମିରା ବୋଲି ଜପୁଥାଅ ॥ ରାତ୍ର ପାହି ଏ ସମୟେ ଦିଶିଲା ଉଜ୍ଜ୍ୱଳ । ପଳାଇଲା ବ୍ୟାଘ୍ର ତହୁଁ ଛାଡ଼ି ବୃକ୍ଷମୂଳ ॥ ବୃକ୍ଷରୁ ଓହ୍ଲାଇ ଭାଲୁ ଗଲା ନିଜସ୍ଥାନେ । ରାଜପୁତ୍ର ସସେମିରା ଜପି ବୁଲେ ବନେ ॥ ବୁଲି ବୁଲି ନିଜ ଦେଶେ ହେଲା ପରବେଶ । ପଚାରିଲେ ଅନ୍ୟ କିଛି ନ କହଇ ଭାଷ ॥ ସସେମିରା କହି କହି ବାଇ ପରି ବୁଲେ । ପୁତ୍ରର ଏପରି ଦଶା ନୃପତି ଦେଖିଲେ ॥ ଚିକିତ୍ସକମାନଙ୍କୁ ସେ ଡକାଇ ସତ୍ୱର । ଦେଲେ ଔଷଧି ନାନାବିଧ ଉପଚାର ॥ ତହିଁରେ ସେ ରୋଗ ମୋଟେ ନୋହିବାରୁ ଶାନ୍ତ । ଜ୍ୟୋତିଷ ଡକାଇ ରାଜା କଲେ ଗ୍ରହ ଶାନ୍ତି ॥ ତଥାପି ସେ ପାଗଳାମି ଭଲ ନ ହୋଇଲା । ସସେମିରା ଭିନ୍ନ ଆଉ କିଛି ନ କହିଲା ॥ ତାହା ଦେଖି ମନଦୁଃଖେ କହିଲେ ନୃପତି । ଏ ବିପଦ ବେଳେ ବରରୁଚି ଥିଲେ ଏଥି ॥ ଏହାର

କାରଣ ଜାଣି କରନ୍ତେ ଉପାୟ । ମନ୍ଦପଣେ ତାହାଙ୍କୁ ମୁଁ କରିଅଛି କ୍ଷୟ ॥ କାଳିଦାସ ତାହା ଶୁଣି କହିଲେ ସଧୀରେ । ଲୁଚି ରହିଛନ୍ତି ବରରୁଚି ଗୁପତରେ ॥ ସରସ୍ୱତୀପୁତ୍ର ସେହୁ ତାଙ୍କୁ କେ ମାରିବ । ମିଥ୍ୟା ନୁହଇ ଏ କଥା ଜାଣ ନରଦେବ ॥ ଘୋଷଣା ଦିଅାଅ ତାଙ୍କ ତଥ୍ୟ ମିଳିବ ଜଣା । ଅବଶ୍ୟ କହିବେ ସେହୁ ଏଥିର ଘଟଣା ॥ କାଳିଦାସ କଥା ରାଜା ସତ୍ୟ ବିଚାରିଲେ । ସେହିକ୍ଷଣି ନିଜ ରାଜ୍ୟେ ନାଗରା ପିଟିଲେ ॥ ପୁତ୍ରକୁ ଆମ୍ଭର ଯେହୁ ଭଲ କରିଦେବ । ଯେତେ ଇଚ୍ଛା ତେତେ ଧନ ଆମ୍ଭଠାରୁ ନେବ ॥ ଲୁଚି ରହିଥିଲେ ବରରୁଚି ଯାହା ଘରେ । ଏହା ଶୁଣି ସେ ବିପ୍ରକୁ କହିଲେ ଗୁପ୍ତରେ ॥ ଆହେ ବିପ୍ର କହ ତୁମ୍ଭେ ରାଜା ଆଗେ ଯାଇ । ପୁତ୍ରବଧୂ ମୋର ଯେ ତାର ଉପାୟ ଜାଣଇ ॥ ବସ୍ତ୍ରରେ ଗୋଟିଏ ଘର କରିଦେବ ଯେବେ । ସଙ୍ଗେଘେନି ତାକୁ ମୁହିଁ ଆଣିବି ସେଠାବେ ॥ ସେ ଭିତରେ ରହି ସବୁ ବୁଝିବ କାରଣ । ରାଜକୁମାରଙ୍କ ରୋଗ ଦେବ ଛଡ଼ାଇଣ ॥ ଯେବେ ସେହିଘର ରାଜା କରିଦେବେ ଘର । ଆରୋଗ୍ୟ କରିବ ନିଶ୍ଚେ ପୁତ୍ରକୁ ତାଙ୍କର ॥ ଏହା ଶୁଣି ସେ ବ୍ରାହ୍ମଣ ଶୀଘ୍ରେ ଚଳିଗଲା । ନରପତି ଆଗେ ସେହିମତି ଜଣାଇଲା ॥ ଶୁଣି ବିପ୍ର କଥା ରାଜା କଲେ ବସ୍ତ୍ରଘର । ରାତ୍ରି ବେଳେ ବରରୁଚି ମିଳିଲେ ସେଠାର ॥ ଅଣାଇଲେ ନିଜ ପାଶେ ରାଜକୁମରକୁ । ବୋଇଲେ ଅର୍ଥ କର ମୁଁ ପଢ଼ିବା ଶ୍ଳୋକକୁ ॥

ସଦ୍ଭାବ ପ୍ରତିପନ୍ନାନାଂ ବଞ୍ଚନେ କା ବିଦଗ୍ଧତା ।
ଅଙ୍କମାରୁହ୍ୟ ସୁପ୍ତାନଂ ହନ୍ତୁଃ କିଂ ନାମ ପୌରୁଷଂ ॥

ମିତ୍ରଭାବ କରି ତୁମ୍ଭେ ଗଲ ସହିତରେ । ରହିଥିଲ ଦୁହେଁ ବୃକ୍ଷେ ବାଘର ଭୟରେ ॥ ବିଶ୍ୱାସରେ ଭାଲୁ ତୁମ୍ଭ କୋଳେ ଥିଲା ଶୋଇ । ବୋଲାଇଲ କି ଚତୁର ତାକୁ ପେଲି ଦେଇ ॥ ମିତ୍ରଦ୍ରୋହୀ

ହେଲା ନାଶ ଗଲା ପଉରୁଷ । ତାହା ଶୁଣି ସକାରକୁ ଛାଡ଼ ରାଜଶିଷ୍ୟ ॥ ସେମିରା ସେମିରା ବୋଲି ଉଚ୍ଚାରିଲା ପହୁଁ । ବରରୁଚି ଏହି ଶ୍ଳୋକ ଶୁଣାଇଲେ ତହୁଁ ॥

ସେତୁବନ୍ଧେ ପ୍ରୟାଗେ ଚ ଗଙ୍ଗାସାଗରସଙ୍ଗମେ ।
ବ୍ରହ୍ମହା ମୁଚ୍ୟତେ ପାପୈର୍ମିତ୍ରଦ୍ରୋହୀ ନ ମୁଚ୍ୟତେ ॥

ସେତୁ ବନ୍ଧ ପ୍ରୟାଗ ବା ସମୁଦ୍ରସଙ୍ଗମ । ପୁଣ୍ୟତୀର୍ଥମାନଙ୍କେ ଏ ଅତ୍ୟନ୍ତ ଉତ୍ତମ ॥ ସେହି ତୀର୍ଥେ ସ୍ନାନ କଲେ ବ୍ରହ୍ମହତ୍ୟାକାରୀ । ଛୁଟିଯାଏ ବ୍ରହ୍ମହତ୍ୟା ତା ଦେହୁ ବାହାରି । ମିତ୍ରଦ୍ରୋହୀ ସେ ତୀର୍ଥରେ ଶତେକବାର ସ୍ନାନ । କଲେ ମଧ୍ୟ ପାପତାର ନୁହଇ ମୋଚନ ॥ ଧର୍ମ ସାକ୍ଷୀ କରି ଭାଲୁ ସଙ୍ଗେ ହେଲ ମିତ୍ର । ବାଘ କଥା ଶୁଣି ନଷ୍ଟ କଲ ହେ ଚରିତ୍ର ॥ ମିତ୍ରଦ୍ରୋହଠାରୁ ବଳି ପାପ ଆଉ ନାହିଁ । ତାହା ତୁମ୍ଭେ ଅରଜିଲ ରାଜପୁତ୍ର ହୋଇ ॥ ଶୁଣିଣ ସଲଜ୍ଜେ ସେହୁ ପୋତିଲା ବଦନ । ସସେ ଛାଡ଼ି ମିରା ମିରା କଲା ଉଚ୍ଚାରଣ ॥ ତାହା ଦେଖି ବରରୁଚି ବୋଲନ୍ତି କୁମର । ପଢ଼ୁଛି ଅପର ଶ୍ଳୋକ ଅର୍ଥ ହେତୁ କର ॥

ମିତ୍ରଦ୍ରୋହୀ କୃତଘ୍ନଶ୍ଚ ଯେ ଚ ବିଶ୍ୱାସଘାତକାଃ ।
ତେ ନରା ନରକଂ ଯାନ୍ତି ଯାବଚ୍ଚନ୍ଦ୍ର ଦିବାକରୌ ॥

ମିତ୍ରଦ୍ରୋହୀ କୃତଘ୍ନ ଯେ ବିଶ୍ୱାସଘାତକ । ମହାପାପୀ ଅତ୍ୟନ୍ତ ଏ ତିନିଜଣଯାକ ॥ ଏହି ତିନି ମହାପାପୀ ଗମନ୍ତି ନର୍କକୁ । ଚନ୍ଦ୍ର ସୂର୍ଯ୍ୟ ଥିବାଯାକ କହିଲି ତୁମ୍ଭଙ୍କୁ ॥ ଏକାବେଳେ କଲ ତୁମ୍ଭେ ତିନି ପାପଯାକ । କଷ୍ଟ ନ ପାଇବ କିପାଁ ନ ଯିବ ନରକ ॥ ରାଜପୁତ୍ର ଏହା ଶୁଣି ମନେ ଚିନ୍ତା କଲା । ସସେମି ଏ ତିନିଗୋଟି ଅକ୍ଷର ଛାଡ଼ିଲା । ରା ବୋଲି ଅନୁକ୍ଷଣେ କହନ୍ତେ ମୁଖରେ । ବରରୁଚି ଶୁଣାଇଲେ ଅନ୍ୟ ଶ୍ଳୋକ ଖରେ ।

ରାଜର୍ଷି ରାଜପୁତ୍ରୋଽସି ଯଦି କଲ୍ୟାଣମିଚ୍ଛସି ।
ଦେହି ଦାନଂ ଦ୍ୱିଜାତିଭ୍ୟୋ ଦେବତାରାଧନଂ କୁରୁ ॥

ଶୁଣ ଆହେ ରାଜପୁତ୍ର ମୋହର ବଚନ । ଯଦି ତୁମ୍ଭେ ଇଚ୍ଛାକର ନିଜର କଲ୍ୟାଣ ॥ ଆରାଧନା କର ଦେବେ ଦିଅ ବିପ୍ରେ ଦାନ । ଆରୋଗ୍ୟ ଲଭିବ ମନୋବାଞ୍ଛା ହେବ ପୂର୍ଣ୍ଣ ॥ ଶୁଣି ରାଜପୁତ୍ର ସସେମିରା ଦେଲା ଛାଡ଼ି । ଏମନ୍ତ କହିଲା ବରରୁଚି ପାଦେ ପଡ଼ି ॥ ତୁମ୍ଭ କରୁଣାରୁ ଆଜ ରୋଗ କ୍ଷୟ ହେଲା । ପୂର୍ବ ଭାବ ଆସି ମୋର ଦେହେ ପ୍ରକାଶିଲା ॥ ତୁମ୍ଭପାଦେ ଆଜଠାରୁ ହୋଇଲି ମୁଁ ଦାସ । କ୍ଷମା କରୁଥିବ ମୂର୍ଖ କରୁଥିଲେ ଦୋଷ ॥ ବସ୍ତ୍ରଘର ଉହାଡ଼େ ସେ ଚରିତକୁ ଶୁଣି । ବିକ୍ରମ ବୋଇଲେ ବଧୂ ଶୁଣ ମୋର ବାଣୀ ॥ ଏହା କହି ସେହି ସଭାଜନଙ୍କ ଆଗରେ । ଶୁଣାଇଲେ ଏହି ଶ୍ଳୋକ ପଢ଼ି ଉଚ୍ଚସ୍ୱରେ ॥

ଗୃହେ ବସସି କୌମାରି ! ଅଟବୀଂ ନୈବ ଗଚ୍ଛସି ।
ଋକ୍ଷବ୍ୟାଘ୍ରମନୁଷ୍ୟାଣାଂ କଥଂ ଜାନାସି ଭାଷିତଂ ॥

କୁଳବତୀ ନାରୀ ତୁମ୍ଭେ ଗୃହେ ସଦା ଥାଅ । କେତେବେଳେ ହେଲେ ତୁମ୍ଭେ ବନକୁ ନ ଯାଅ ॥ ଭାଲୁ ବାଘ ମନୁଷ୍ୟଙ୍କ ଏହି ସମାଚାର । କେମନ୍ତ ଜାଣିଲ ତାହା କହ ମୋ ଆଗର । ନୃପ ବାକ୍ୟ ବରରୁଚି ଶୁଣିଲେ କର୍ଣ୍ଣରେ । ଶୁଣ ବୋଲି କହି ଏହି ଶ୍ଳୋକଟି ବୋଲିଲେ ॥

ଗୁରୁଦେବପ୍ରସାଦେନ ଜିହ୍ୱାଗ୍ରେ ମେଽସ୍ତି ସରସ୍ୱତୀ ।
ତେନାହଂ ନୃପ ଜାନାମି ଭାନୁମତ୍ୟାସ୍ତିଲଂ ଯଥା ॥

ଗୁରୁଦେବଙ୍କର କୃପା ଥିବାରୁ ମୋଠାରେ । ବସିଛନ୍ତି ସରସ୍ୱତୀ ସଦା ମୋ ଜିହ୍ୱାରେ ॥ ସେଥିପାଇଁ ଜାଣିଲି ମୁଁ ସେ କଥା ସକଳ । ଜାଣିଥିଲି ଯେଉଁରୂପେ ଭାନୁମତୀ ତିଳ ॥ ବିକ୍ରମ ଆଦିତ୍ୟ ତାହା ଶୁଣି

ଧାତକାରେ । ପଶିଯାଇ ବସୁଧରେ ତାହାଙ୍କ ପାଦରେ ॥ ପୂଜାକରି ଆନନ୍ଦରେ ତାଙ୍କୁ ସେମାନଗଲେ । ଧନ ରତ୍ନ ଅଳଙ୍କାର ବହୁତର ଦେଲେ ॥ ରଖାଇଲେ ପୂର୍ବପର ହୋଇ ହରଷିତ । ଏହିପରି ଗୁଣବାନ ବିକ୍ରମଆଦିତ୍ୟ ॥ ମୋହଠାରୁ ଶୁଣିଲ ତ ଭୋଜ ନରରାଣ । ଯେଉଁଦିନ ହେବ ତୁମ୍ଭେ ତାଙ୍କର ସମାନ ॥ ସେହିଦିନ ବସିବ ହେ ଆସି ହିଂହାସନେ । ହୋଇନାହିଁ ଏବେ ତୁମ୍ଭେ ତାଙ୍କର ସମାନେ ॥ ଏହା କହି ସେ ପୁତ୍ତଳି ଶୂନ୍ୟମାର୍ଗେ ଗଲା । କହେ ଜଗନ୍ନାଥ ସିଂହ ସ୍ୱର୍ଗରେ ରହିଲା ॥

---

## ସପ୍ତମ ପୁତ୍ତଳିର କଥା

ତାହାପରେ ଶୁଭଲଗ୍ନେ ଭୋଜ ନରରାଣ । ସନ୍ତୋଷିଲେ ଦେବ ଦ୍ୱିଜ ଅତିଥିଙ୍କ ମନ ॥ ତହୁଁ ସିଂହାସନ ପାଶେ ପ୍ରବେଶିଲେ ଯାଇଁ । ଦେଖି ତାଙ୍କୁ ସପତମ ପୁତ୍ତଳି କହଇ ॥ ଶୁଣ ତୁମ୍ଭେ ବାକ୍ୟ ମୋର ଭୋଜ ନରପତି । ବସନ୍ତି ଏ ସିଂହାହନେ ବିକ୍ରମ ନୃପତି ॥ ଯେତେ ବେଳେ ତୁମ୍ଭେ ତାଙ୍କ ସମାନ ହୋଇବ । ସେତେବେଳେ ଏହି ସିଂହାସନରେ ବସିବ ॥ ପୁତ୍ତଳିର କଥା ଶୁଣି ଭୋଜ ନରରାଣ । ବୁଝିବାକୁ ପଚାରିଲେ ହୋଇ ହୃଷ୍ଟମନ ॥ ଜାଣିଅଛ ଯେତେ ଯେତେ ତାଙ୍କର ସୁଗୁଣ । କହ ପୁତ୍ତଳିକେ ତାହା ବିସ୍ତାରି କରଣ ॥ ତାହା ଶୁଣି କହଇ ସେ ସ୍ୱରୂପ ପୁତ୍ତଳି । ବିକ୍ରମ ଆଦିତ୍ୟ ଥିଲେ ସର୍ବ ଗୁଣଶାଳୀ । ଦିନେକ ସେ ବିକ୍ରମାର୍କ ଆପଣା ରାଜ୍ୟରେ । ଦିଆଇଲେ ଘୋଷଣା ଯେ ବୁଲାଇ ଡାଣ୍ଡରେ ॥ ବିଦ୍ୱାନ ପଣ୍ଡିତ ଯେତେ ଅଛ ଏହି ଦେଶ । ସେ ସକଳେ ଯାଇ ରାଜସଭା ମଧ୍ୟେ ବସ ॥ ତୁମ୍ଭକୁ ପାଳିବେ ରାଜା ଅତି ଯତନରେ । ପରିପୂର୍ଣ୍ଣ ହେବ ଧନ ବସ୍ତ୍ର ତୁମ୍ଭ

ଘରେ ॥ ଏହା ଶୁଣି ଯେତେ ଗୁଣବାନ ଲୋକ ଥିଲେ । ସର୍ବେଯାଇ ବ୍ରାହ୍ମଣଙ୍କ ସଭାରେ ବସିଲେ ॥ ନାନା ଦେଶ କଥା ନାନା ପୁରାଣ ଚରିତ । ରାଜାଙ୍କୁ ସେ ଶୁଣାଇଲେ ହୋଇ ହରଷିତ ॥ ସେହି ସଭା ମଧ୍ୟେ ଏକ ବିପ୍ର ବସିଥିଲା । ବିକ୍ରମାଦିତ୍ୟଙ୍କ ଆଗେ ଏପରି କହିଲା ॥ ତୀର୍ଥ କରିବାକୁ ଜାଣ ମୁହିଁ ଯାଇଥିଲି । ବୁଲି ବୁଲି ଚିତ୍ରକୂଟ ପର୍ବତେ ମିଳିଲି ॥ ପୁଣ୍ୟବନ୍ତି ନଦୀ ଏକ ଅଛି ସେଠାବରେ । କେତେ ମୁନି ଜପ ତପ କରନ୍ତି ତା ତୀରେ ॥ ହିଗମ୍ବରୀ ନାମେ କାଳୀ ରହିଛନ୍ତି ତହିଁ । ପୂଜା କରୁଛନ୍ତି ତାଙ୍କୁ ବଳଭୋଜା ଦେଇ ॥ ବିପ୍ରଠାରୁ ଏହି କଥା ଶୁଣି ସେ ରାଜନ । ସେ ବିପ୍ରଙ୍କୁ ସଙ୍ଗେ ଧରି ଗମିଲେ ସେ ସ୍ଥାନ ॥ ଚିତ୍ରକୁଟେ ମିଳି ସ୍ନାନକଲେ ନଦୀ ଜଳେ । ଦେବୀଙ୍କ ମନ୍ଦିରେ ଯାଇ ପ୍ରବେଶ ହୋଇଲେ ॥ ସେଠାରେ ଦେଖିଲେ ବିପ୍ର ତପ କରୁଅଛି । ଚରିପାଶେ ଅଗ୍ନି ଜାଳି ମଧ୍ୟରେ ବସିଛି ॥ ଦେଖି ତାଙ୍କୁ ପଚାରିଲେ ବିକ୍ରମ ମିହିର । ଏତେ କଷ୍ଟ ସହି ତପ କି କାରଣେ କର ॥ ସତ କହି ସେ କାରଣ ସକଳ ବୁଝାଅ । ତୁମ୍ଭ କଷ୍ଟ ଦେଖି ହୁଏ ମୋ ମନ ଅଥୟ ॥ ଚକ୍ଷୁ ଦୁଇ ବୁଜି ବିପ୍ର କରୁଥିଲେ ଧ୍ୟାନ । ନୃପ ବାକ୍ୟଶୁଣି ତାଙ୍କୁ କହିଲେବଚନ ॥ କିଏ ତୁମ୍ଭେ ତୁମ୍ଭ ନାମକର ହେ ପ୍ରକାଶ । ଉତ୍ତରିଲେ ନୃପତି ମୁଁ ବିକ୍ରମ ନରେଶ ॥ ବିପ୍ର ବୋଲେ ଶୁଣ ଯାହା ପୁଚ୍ଛିଲ ନୃପତି । ସ୍ୱପନରେ ଦିନେ ଆସି ମୋତେ ଭଗବତୀ ॥ କହିଲେ ହେ ବିପ୍ର ମୋତେ ନାନା ଉପହାରେ । ପୂଜା କରି ନୃପ ବଳି ଦେଲେ ମୋ ଆଗରେ ॥ ତୁମ୍ଭ ମନୋବାଞ୍ଛା ସବୁ କରିବି ପୂରଣ । ମିଥ୍ୟା କେବେ ନୁହଇଟି ଏହିକଥା ଜାଣ । ଏହା କହି ଭଗବତୀ ହୋଇଲେ ଅନ୍ତର । ଯୋଗାଡ଼ିଲି ସେହିଦିନୁ ନାନା ଉପହାର ॥ ମାତ୍ର ନୃପବଳି କାହୁଁ ଦେବି ନ ମିଳଇ । ସେଥିପାଇଁ କରୁଅଛି ତପ କଷ୍ଟ ସହି । ତାହା ଶୁଣି କହିଲେ ସେ ବିକ୍ରମ

ଆଦ୍‌ଭୂତ୍ୟ । ମୁଣ୍ଡି ନୃପ ବଳ ହେଲ କହୁଅଛୁ ସତ୍ୟ ॥ ମୋତେ ବଳ ଦେଇ ତୁମ୍ଭେ ଦୂର କର କଷ୍ଟ । ତାହା ଶୁଣି ସେ ବ୍ରାହ୍ମଣ ଉଠିଲେ ତ୍ୱରିତ ॥ ସଙ୍ଗେନେଇ ସେ ରାଜାଙ୍କୁ ଦେବୀ ପାଶେଗଲେ । ଧୂପ ଦୀପ ନଇବେଦ୍ୟ ଉପଚାର ଦେଲେ । ପ୍ରୋକ୍ଷଣ କରଣ ତାଙ୍କୁ ସେହି-ଠାରେ ରଖି । ବଳ ଦେବାପାଇଁ ଖଡ୍‌ଗ ରଖନ୍ତେଣ ଟେକ ॥ ଭଗବତୀ ତାହା ଜାଣି ନିଜ ରୂପେ ଆସି । ଛଡ଼ାଇ ନେଲେ ବିପ୍ର ହସ୍ତରୁ ସେ ଅସି । ନୃପ ମୁଖ ଚାହିଁ ଦେବୀ ବୋଲନ୍ତି ବଚନ । ତୁଷ୍ଟ ହେଲ ଆହେ ନୃପ ମାଗି ବର ନେନ ॥ ଦେବୀ ବାକ୍ୟ ଶୁଣି ନୃପ ଜଣାନ୍ତି ସତ୍ୱର । ଏ ବିପ୍ରର ମନବାଞ୍ଛା ପରିପୂର୍ଣ୍ଣ କର ॥ ତାହା ଶୁଣି ଭଗବତୀ କହିଲେ ବିପ୍ରକୁ । ଯାହା ଇଚ୍ଛା କରଅଛ ମାଗ ସେ ବରକୁ ॥ ବିପ୍ର ବୋଲେ ଯେବେ ହୋଇଲ ପ୍ରସନ୍ନ । ମାଗୁଅଛୁ ତୁମ୍ଭ ପାଦେ କର ମୋତେ ଲୀନ ॥ ଅସ୍ତୁ ବୋଲି ସେ ବିପ୍ରକୁ କହି ଭଗବତୀ । ତଦନ୍ତେ କହିଲେ ତୁମ୍ଭେ ଶୁଣ ହୋ ନୃପତି ॥ ଜଗତରେ ଏକା ତୁମ୍ଭେ ପର ଉପକାରୀ । ସେ ଯୋଗେ ଏ ବର ଦେଉଅଛୁ ପ୍ରୀତିକରି ॥ ସବୁକାଳେ ତୁମ୍ଭ ବାଞ୍ଛା ହେଉଥିବ ପୂର୍ଣ୍ଣ । ଏହା କହି ଜଗମ୍ବା ହେଲେ ଅନ୍ତର୍ଦ୍ଧାନ ॥ ବର ପାଇ ସେ ବିକ୍ରମ ନିଜ ଦେଶେ ଚଳେ । ଶୁଣିଲ ତ ତାଙ୍କ କୀର୍ତ୍ତି ଭୋଜନୃପ ଭଲେ ॥ ତାଙ୍କ ପରି ହୋଇପାର କୀର୍ତ୍ତିଶାଳୀ ଯେବେ । ସିଂହାସନେ ବସିବାକୁ ଆସିବଟି ତେବେ ॥ ଏହିପରି ଚରିତକୁ କହି ସେ ପୁତ୍ତଳି । କହେ ଜଗନ୍ନାଥ ଗଲ ସ୍ୱର୍ଗପୁରେ ଚଳି ॥

---

## ଅଷ୍ଟମ ପୁତ୍ତଳିର କଥା

ତାହାପରେ ଦିନେ ଭୋଜ ଦେବାର୍ଚ୍ଚନ କଲେ । ଶୁଭବେଳେ ଦେଖି ସିଂହାସନ ପାଶେ ଗଲେ ॥ ବସିବାକୁ ଯାଇ ନୃପ ପାଦଟେକେ

ଉଠନ୍ତେ । ଅଷ୍ଟମ ପୁତ୍ତଳି ତାଙ୍କୁ କହଇ ଏମନ୍ତେ ॥ ଆହେ ଭୋଜନୃପ ଏହା ବୁଝିଲ ଉଚିତ । ଏଥିପରେ ବସୁଥିଲେ ବିକ୍ରମ ଆଦିତ୍ୟ ॥ ତାଙ୍କ ସମ ହେଲେ ତୁମ୍ଭେ ଏଥେ ଆସି ବସ । ପଚ୍ଛିଲେ ତାହା ଶୁଣି ବିକ୍ରମ ନରେଶ ॥ କହ ହେ ପୁତ୍ତଳି ତାଙ୍କ ଅପୂର୍ବ ଚରିତ ॥ ଶୁଣିବାକୁ ତୋହଠାରୁ ବଳିଅଛି ଚିତ୍ତ ॥ ତାହା ଶୁଣି ସେ ପୁତ୍ତଳି ହରଷ ମନରେ । ଶୁଣ ତେବେ ନୃପ ବୋଲି କହି ଆରମ୍ଭିଲେ ॥ ସଭା ମଣ୍ଡାଇଲେ ଦିନେ ବିକ୍ରମ ଆଦିତ୍ୟ । ସକଳ ପଣ୍ଡିତ ତହିଁ ଥିଲେ ଉପସ୍ଥିତ । କାଳିଦାସ ଆଦି ସର୍ବେ ସେ ସଭାରେ ଥିଲେ । ଆସି ସେହିଠାରେ ଜଣେ ସନ୍ନ୍ୟାସୀ ମିଳିଲେ ॥ ଦେଖି ନୃପ ସନ୍ନ୍ୟାସୀଙ୍କୁ ଆନନ୍ଦ ହୋଇଲେ । ଆସନରୁ ଉଠି ପୂଜା ଯଥାବିଧି କଲେ ॥ ବିନମ୍ର ବଚନେ ତାଙ୍କୁ ପଚ୍ଛିଲେ ଏହା । କି କାରଣେ ଆଗମନ କଲ ପୁଣ୍ୟଦେହା ॥ ଯା ମାଗିବ ତାହା ଦେବି ଅଟେ ମୋର ସତ୍ୟ । ତାହା ଶୁଣି ସେ ସନ୍ନ୍ୟାସୀ ହୋଇ ତୋଷଚିତ୍ତ ॥ ବୋଇଲେ ହେ ନୃପ ଶୁଣ ଏକାନ୍ତ ସ୍ଥାନରେ । କହିବି ଯା ଇଚ୍ଛା ଅଛି ମୋହର ମନରେ ॥ ରାଜା ଶୁଣି ସେହିକ୍ଷଣି ସେଠାରୁ ଉଠିଲେ । ସଙ୍ଗେ ଧରି ସନ୍ନ୍ୟାସୀଙ୍କି ଅନ୍ତଃପୁରେ ଗଲେ ॥ ବସିଲେ ଏକାନ୍ତେ ଦୂର କରି ସମସ୍ତଙ୍କୁ । ତହୁଁ ଫିଟାଇଲେ ଯୋଗୀ କୋଥଳି ମୁଣାକୁ ॥ ସେ ଭିତରୁ ମଲାଶୁଆ ଗୋଟିଏ କାଢ଼ିଲେ । ରାଜାଙ୍କର ମୁଖ ଚାହିଁ ଦୁଃଖରେ କହିଲେ । ଆହେ ନୃପ ବଡ଼ ଶ୍ରଦ୍ଧା ଏହାଠାରେ ମୋର । ଏହାକୁ ବଞ୍ଚାଇଲେ ତୃପ୍ତି ଲଭିବି ଅପାର ॥ ତାହା ଶୁଣି ବୋଇଲେ ସେ ବିକ୍ରମ ରାଜନ । ମୃତ ଶବ ଜୀଇଁବାର ଅସମ୍ଭବ ଜାଣ ॥ ଦଣ୍ଡେମାତ୍ର ତାକୁ ଅବା ପାରିବି ବଞ୍ଚାଇ । ସବୁଦିନେ ଜୀଆଇବା ବିଦ୍ୟା ମୋର ନାହିଁ । ସନ୍ନ୍ୟାସୀ କହିଲେ ନୃପ ସେହିପରି କର । ଦଣ୍ଡେ ହେଲେ ଦେଖି ମନୁ ଦୁଃଖ ଯିବ ମୋର ॥ ଶୁଣି ରାଜା ପରଦେହ ପ୍ରବେଶ ମନ୍ତ୍ରରେ । ନିଜ

ଆତ୍ମା ପୂରାଇଲେ ଶୁଆର ପିଣ୍ଡରେ ॥ ସେହିକ୍ଷଣି ପ୍ରାଣ ପାଇ ଉଠିଲା ସେ ଶୁକ । ମୃତ ପର ଥିଲେ ରାଜା ହରାଇ ବିବେକ ॥ ଦୁଷ୍ଟବୁଦ୍ଧି ଆଚରଣ କଲା ସେ ସନ୍ନ୍ୟାସୀ । ନିଜଦେହ ଛାଡି ରାଜାଦେହେ ଗଲା ପଶି ॥ ନରପତି ତାହା ଦେଖି ଆକୁଳ ହୋଇଲେ । ଶୁକ ଦେହେ ଥାଇ ଘର ମଧ୍ୟରେ ବୁଲିଲେ ॥ ଯୋଗୀ ଥାଇ ରାଜା ଦେହେ ଯଷ୍ଟିଏ ବୁଲାଇ । ନିର୍ଘାତେ ପିଟିଲା ଶୁଆ ଶରୀରକୁ ଚାହିଁ ॥ ଭୟେ ରାଜା ଜଗନ୍ନାଥ ପାଦପଦ୍ମ ସ୍ମରି । ଗବାକ୍ଷ ବାଟରେ ଉଡ଼ିଗଲେ ପ୍ରାଣ ଧରି ॥ ରାଜା ଦେହେ ଯୋଗୀ ପଶି ସଭା ମଧ୍ୟେ ଗଲା । ଖାଟ ଖୋଳ ସନ୍ନ୍ୟାସୀର ଦେହ ପୋତାଇଲା । ସିଂହାସନେ ବସି ଯୋଗୀ ଠେକାଇଲା ଛତ୍ର । ଡକାଇଲା ଥିଲେ ଯେତେ ସେ ଦେଶେ କିରାତ ॥ ସେମାନଙ୍କୁ ଆଜ୍ଞା ଦେଲା ପାଶରେ ବସାଇ । ଧର ଯେତେ ଶୁଆଛନ୍ତି ଦେଶ ମଧ୍ୟେ ରହି ॥ ଯେତେ ଗୋଟି ଶୁଆ ଆଣିଦେବ ଆମ୍ଭ ପାଶେ । ତେତେ ଗୋଟି ସ୍ୱର୍ଣ୍ଣମୁଦ୍ରା ଦେବି ମୁଁ ସନ୍ତୋଷେ ॥ ଏହା ଶୁଣି ସେ କିରାତମାନେ ଚଳିଗଲେ । ବ୍ୟାଧବୃତ୍ତି ଉପାୟରେ ଶୁଆଙ୍କୁ ଧଇଲେ । ରାଜାପାଶେ ଦେଇ ତାର ମୂଲ୍ୟ ନେଇ ଯାନ୍ତି । ବଧ କରେ ସେ ଶୁଆଙ୍କୁ ସନ୍ନ୍ୟାସୀ ନୃପତି । ରାଜ୍ୟ ଲୋକେ ଜ୍ଞାନ ଧର୍ମ ହରାଇ ସକଳ । ଶୁଆମରା ବୃତ୍ତିଟିକ କରିଥାଏ ମୂଳ ॥ କହଇ ପୁତ୍ତଳି ଶୁଣ ଭୋଜ ନରରାଣ । ବୀରସେନ ନାମେ ଥିଲା ଶବରେକ ଜାଣ ॥ ବିକ୍ରମ ଆଦିତ୍ୟ ତାକୁ ଶ୍ରଦ୍ଧା କରିଥାନ୍ତି । ପ୍ରତିଦିନ ସ୍ୱର୍ଣ୍ଣମୁଦ୍ରା ଗୋଟିଏ ଦିଅନ୍ତି ॥ ସେ ସନ୍ନ୍ୟାସୀ ଯେଉଁ ଦିନୁ ନୃପତି ହୋଇଲା । ସେ ଦିନୁ ତାହାକୁ ଆଉ ସ୍ୱର୍ଣ୍ଣ ନ ମିଳିଲା ॥ ମନ ଦୁଃଖେ ସେ ଶବର ଘରେ ଥିଲା ତାର । ଶୁଆ ଧରିବାକୁ ଦିନେ ହୋଇଲା ବାହାର ॥ ଜାଲ ପୋତି ବନ ମଧ୍ୟେ ଖୁଦ ବୁଣିଦେଲା । ଲୁଚିକରି ବୃକ୍ଷ ମୂଳେ ଯାଇ ସେ ବସିଲା ॥ ଶୁଆ ପଲ ଖୁଦକଣି ଖାଇବା

ଆଶାରେ । ଉଡ଼ି ଆସି ପଡ଼ିଗଲେ ଶବର ଜାଲରେ ॥ ବୀରସିଂହ
ଶବର ତା ଦେଖି ଧାଇଁଗଲା । ଦୁଇହାତେ ଜାଲ ଡୋରି ଧରି ସେ
ଟାଣିଲା ॥ ଶୁଆରୂପୀ ବିକ୍ରମ ସେ ବୃକ୍ଷେ ବସିଥିଲେ । ଆପେ ଆସି
ବୀରସିଂହ ଜାଲରେ ପଡ଼ିଲେ ॥ ତାହା ଦେଖି ସେ ଶବର ହୋଇଣ
ଚକିତ । ଭିନ୍ନ ସ୍ଥାନେ ଯତ୍ନେ ତାକୁ ରଖିଲା ତୁରିତ ॥ ଭାବଇ ସେ
ମନମଧ୍ୟେ ଏ କି ବିପରୀତ । ଏହୁ କମା ଆପେ ଆସି ହୋଇଲା
ପତିତ ॥ ବଡ଼ ଲୋକ ଜଣେ କେହି ଏହି ହୋଇଥିବ । ଏହା ଭାବି
ଶୁଆଯାକ ବାନ୍ଧିଲା ସେ ଜବ ॥ ଗୃହେ ଯିବାପାଇଁ ଚହୁଁ ହୋଇଲା
ବାହାର । ବାଟେ ତାକୁ କହିଲେ ସେ ବିକ୍ରମ ମିହିର ॥ ଶୁଣ ମୋର
ବଚନ ବୀରସିଂହ ବ୍ୟାଧ । କି କାରଣେ ଏତେ ଜୀବ କରିବୁ ତୁ
ବଧ ॥ ବୋଇଲା କଗତ ରାଜା କିଣିକରି ନେବ । ଯେତେ ଶୁଆ ଦେବି
ତେତେ ସ୍ୱର୍ଣ୍ଣମୁଦ୍ରା ଦେବ । ପୋଷିବି ମୁଁ ତାହା ବିକି କୁଟୁମ୍ବ ମୋହର ।
ଶୁଣି କହେ ଶୁଆରୂପୀ ବିକ୍ରମ ମିହିର ॥ ଏକା ମୋତେ ରଖି ସବୁ ଶୁଆ
ଛାଡ଼ିଦେଲେ ॥ ସହସ୍ରେ ସୁବର୍ଣ୍ଣ ମୁଦ୍ରା ମୁହିଁ ଦେବି ଭଲେ ॥ ତାହା
ଶୁଣି ସେ ଶବର ଦେଲା ସବୁ ଛାଡ଼ି । ରାଜା ଶୁଆଟିକୁ ଯତ୍ନେ ରଖିଲା
ସଜାଡ଼ି ॥ ରାଜା ଶୁଆ ସେ କରାତ ଘରେ ରହିକରି । ସବୁବେଳେ
ପଢୁଥାଏ ରାମ କୃଷ୍ଣ ହରି ॥ ଶୁଣ ଆହେ ଭୋଜ ନୃପ ସେ ପାପୀ
ସନ୍ନ୍ୟାସୀ । ରାଣୀହଂସ ପୁରେ ପଶି ନ ପାରେ ଭରସି ॥ ରୂପବନ୍ତି
କନ୍ୟାଟିଏ ମନ୍ତ୍ରୀ ଘରେ ଥିଲା । ତାକୁ ବିଭା ହେବା ଲାଗି କଥା
ପକାଇଲା ॥ ଏହାଶୁଣି ମନ୍ତ୍ରୀବର ହେଲା ଉତଫୁଲ୍ଲ । ଜାମାତାହୋଇବେ
ରାଜା ହେବ ମୋର ଭଲ ॥ ଯୋଗାଡ଼ିଲା ଆନନ୍ଦରେ ବିଭାର ବିଧାନ ।
ଅଧିବାସ ବିଧି କନ୍ୟା କଲା ସୁବନ୍ଧନ ॥ ବିଭାଦିନ ପ୍ରଭାତରୁ ଉଠି
ମନ୍ତ୍ରୀସୁତା । ସଖୀ ହସ୍ତେ ଧରାଇଲା ହଳଦୀ ଅଳତା ॥ ସ୍ନାନ କରିବାକୁ
ଗଲା ସରସ୍ୱତୀ କୂଳେ । ସଖୀଗଣ ସଙ୍ଗତରେ ମିଶି ଲୁଚିହଲେ ॥

ବୀରସିଂହ ଶବରର ସରସ୍ୱତୀ ସ୍ଥାନରେ । ଗୃହ ଅଟେ ମନ୍ତ୍ରୀସୁତା ଗଲା
ସେ ବାଟରେ ॥ ଶୁଆ ପାଠ ପଢ଼ିବାର କର୍ଣ୍ଣରେ ଶୁଣିଲା । ଶୁଆ ପାଶେ
ମନ୍ତ୍ରୀ ସୁତା ପରବେଶ ହେଲା ॥ ପଚାରିଲା ଶବରକୁ ମନ୍ତ୍ରୀର କୁମାରୀ ।
ଶୁଆଟିକ ଦେବୁ କି ମୁଁ ନେବି କିଣିକରି ॥ କିରାତ ବୋଇଲା ଦେଲେ
ସହସ୍ରେ ସୁବର୍ଣ୍ଣ । ଏ ଶୁଆକୁ ତେବେ ମୁହିଁ ଦେଇପାରେ ଜାଣ ॥
ସହସ୍ରେ ସୁବର୍ଣ୍ଣ ମନ୍ତ୍ରୀସୁତା ଅଣାଇଲା । ଶବରକୁ ତାହା ଦେଇ
ଶୁଆଟିକ ନେଲା ॥ ଯତନେ ଘୋଡ଼ାଇ ତାକୁ ପଣତ କାନିରେ । ସେ
ନବୀନା ପହଞ୍ଚିଲା ଆପଣା ମନ୍ଦିରେ । ଶୁଆ ପାଠ ଶୁଣିବାକୁ କରନ୍ତି
ସେ ମନ । ଶୁଆ ତାକୁ ସେହିକାଳେ କହିଲା ଏସନ ॥ କଥାଟିଏ
କହିବି ମୁଁ କରିବୁ ତୁ ଯେବେ । ବହୁତ ମଙ୍ଗଳ ତୋର ହୋଇବଟି
ତେବେ ॥ ମଧୁଶଯ୍ୟା ଘରେ ମତେ ଗୋପନେ ରଖିବୁ । ମୋ କଥା
ସେ ରାଜା ଆଗେ କିଛି ନ କହିବୁ ॥ ମେଣ୍ଢାଟିଏ ବାନ୍ଧିଥିବୁ ପଲ୍ୟଙ୍କ
ଖୁରାରେ । ବସିଥିବୁ ମୁଣ୍ଡ ପୋତି ପଲ୍ୟଙ୍କ ଉପରେ ॥ ପଚାରିଲେ
ରାଜା ତୋତେ ନକହିବୁ କଥା । ବସିଥିବୁ ମୂକପରି ପୋତିଦେଇ ମଥା
ବହୁତ ବିନୟ ହୋଇ ପଚାରିବ ଯେବେ । ଲାଜେ ଲାଜେ ଏହି କଥା
କହିବୁ ତୁ ତେବେ ॥ ଦେଖ ଏହି ମେଣ୍ଢା ଅଟେ ମୋର ନିଜ ଭାଇ ।
ତା ଆଗରେ କିପରି ମୁଁ କଥା କହିବଇଁ ॥ ତୋହ କଥା ଶୁଣି ରାଜା
ନେଲେ ମେଣ୍ଢା ପ୍ରାଣ । ବିକଳେ ତୁ ଭାଇ ବୋଲି କାନ୍ଦିବୁ କ୍ରନ୍ଦନ ॥
ରାଜାଙ୍କୁ କହିବୁ ପୁଣି ବିନୟ ବଚନ । ଏ ଭାଇକି ମୋର ତୁମ୍ଭେ
ଦିଅ ଜୀବଦାନ ॥ ରାଜା ତାକୁ ଯେତେବେଳେ ଦେବେଟି ଜିଆଇଁ ।
ସେହିକ୍ଷଣି ମୋତେ ଆସି ଘେନିଯିବୁ ତୁହି ॥ ରାଜାର ଉପରେ ନେଇ
ବସାଇବୁ ମୋତେ । ଏମନ୍ତ କରିଲେ ସୁଖେ ରହିବୁ ନିଶ୍ଚିନ୍ତେ ॥
ତାହା ଶୁଣି ମନ୍ତ୍ରୀସୁତା ସନମତ କଲା । ମେଣ୍ଢାଟିଏ ଆଣି ଖଟ ଖୁରାରେ
ବାନ୍ଧିଲା ॥ ଶୁଆକୁ ଗୁପତେ ରଖିଦେଲା ସେହିଠାରେ । ବସିଥିଲା ମୁଣ୍ଡ

ପୋତ୍ତ ପଲ୍ୟଙ୍କ ଉପରେ । ବଶ୍ରକାର୍ଯ୍ୟ ହନବେକ୍ଷ ହୋଇଥିଲା ଶେଷ । ବେଳକାଳ ଜାଣି ରାଜା ହୋଇଲେ ପ୍ରବେଶ ॥ ମନ୍ତ୍ରୀସୁତା ପାଶେ ଯାଇ ଆନନ୍ଦେ ବସିଲା । ହାସ୍ୟ ପରିହାସ କରି ବଚନ ଭାଷିଲା ॥ ସବୁ ଶୁଣି ମନ୍ତ୍ରୀସୁତା ନ ଦେଲା ଉତ୍ତର । ପଚାରିଲା ରାଜା ପୁଣି ହୋଇ କାମାତୁର ॥ ଉତ୍ସବ କାଳରେ କିପାଁ କରୁ ମୌନବ୍ରତ । କହ ଗୋ ସୁନ୍ଦରି ତୋର କେବଣ ଚରିତ ॥ ତାହା ଶୁଣି ଧୀର କରି କହଇ ସୁନ୍ଦରୀ । ଏହି ମେଣ୍ଢା ଭାଇ ମୋର ଜାଣ ଦଣ୍ଡଧାରୀ । ତା ଆଗରେ କଥାବାର୍ତ୍ତା ମୁହିଁ ତୁମ୍ଭ ସଙ୍ଗେ । କିପରି ହେବ କହନ୍ତେ ନୃପ ଉଠି ରାଗେ ॥ ଯଷ୍ଟି ପ୍ରହାରି ସେ ଶୀଘ୍ର ମେଣ୍ଢା ପ୍ରାଣ ନେଲା । ମନ୍ତ୍ରୀସୁତା ତାହା ଦେଖି ବିକଳେ କାନ୍ଦିଲା ॥ ବୋଇଲା ହେ ପ୍ରାଣନାଥ ଭାଇ ମୋର ଏହି । ଏହାକୁ ବଞ୍ଚାଅ ମୋହଠାରେ ଦୟା ବହି । ସ୍ତ୍ରୀ ରାଗବଶେ ପଡ଼ି ଯୋଗୀ ହରାଇଲା ଜ୍ଞାନ । ପୂରାଇଲା ମେଣ୍ଢା ଦେହେ ଆପଣା ଜୀବନ । ତାହା ଦେଖି ମନ୍ତ୍ରୀସୁତା ବେଗେ ଧାଇଁଗଲା । ଶୁଆଟିକି ନେଇ ରାଜାଉପରେ ଛାଡ଼ିଲା ॥ ବିକ୍ରମ ଆଦିତ୍ୟ ଶୁଆ ଦେହ ଛାଡ଼ିଦେଇ । ନିଜ ଦେହେ ପ୍ରବେଶିଲେ ଆନନ୍ଦିତ ହୋଇ ॥ ସେ କନ୍ୟାକୁ ପଠାଇଲେ ନିଜ ଅନ୍ତଃପୁରେ । ସଙ୍ଗେ ଧରି ମେଣ୍ଢାଟିକି ମିଳିଲେ ସଭାରେ ॥ ସନ୍ନ୍ୟାସୀର ମୃତପିଣ୍ଡ ମାଟିରୁ ଖୋଳାଇ । ମିଶାଇଲେ ସେହିକ୍ଷଣି ମେଣ୍ଢା ସଙ୍ଗେ ନେଇ ॥ ସନ୍ନ୍ୟାସୀର ମୃତପିଣ୍ଡ ପାଇଲା ଜୀବନ । ଅକାରଣେ ମେଣ୍ଢାଟିର ନାଶଗଲା ପ୍ରାଣ ॥ ସନ୍ନ୍ୟାସୀ ଲଜ୍ଜାରେ ମୁଖ ପୋତିଲା ତଳକୁ । ତା ଦେଖି ବିକ୍ରମାଦିତ୍ୟ ବୋଇଲେ ତାହାକୁ ॥ ଏପରି ବିଶ୍ୱାସଘାତ କଥା କାହାଠାରେ । ନ କରିବ କେବେହେଁ କଲେ ପଡ଼ିବ ନର୍କରେ ॥ ଏପରି ବୁଝାଇ ତାକୁ ଧନରତ୍ନ ଦେଲେ । ଦୋଷ କ୍ଷମା କରି ପୁଣି ବିଦାୟ କରିଲେ ॥ ଶୁଣିଲ ତ ଭୋଜରାଜ ବିକ୍ରମ ଚରିତ । ତୁମ୍ଭେ ଯେବେ ତାଙ୍କପରି ହେବ ଦୟାବନ୍ତ ॥ ତେବେ ଆସି

ସିଂହାସନେ ବସିବ ରାଜନ । ଏହା କହି ସେ ପୁତ୍ତଳ ଗୁଡ଼ିଲା ସେ ସ୍ଥାନ ॥ ପକ୍ଷୀପ୍ରାୟ ଉଡ଼ିଗଲା ଗଗନ ମାର୍ଗରେ । କହେ ଜଗନ୍ନାଥ ଯାଇ ବସିଲା ସ୍ୱର୍ଗରେ ॥

---

## ନବମ ପୁତ୍ତଳିର କଥା

କତିଦିନ ପରେ ଭୋଜ ହୃଷ୍ଟମନା ହୋଇ । ନିତ୍ୟକର୍ମ ସାରି ବିପ୍ର ହାତେ ଦାନ ଦେଇ ॥ ଦେବତାମାନଙ୍କୁ ପୂଜି ହରଷ ମନରେ । ଗଲେ ସିଂହାସନ ପାଶେ ମାହେନ୍ଦ୍ର ବେଳାରେ । ଦେଖି ତାଙ୍କୁ କହଇ ସେ ନବମ ପୁତ୍ତଳି । ବସିବାକୁ ସିଂହାସନେ ନ ହୁଅ ଉତ୍ତଳ । ତୁମ୍ଭପରି ରାଜା କାହୁଁ ଏଥିରେ ବସିବ । ବସନ୍ତି ଏଥିରେ ରାଜା ବିକ୍ରମ ନୃଦେବ ॥ ତାଙ୍କପରି ଗୁଣବାନ ଆଗେ ତୁମ୍ଭେ ହୁଅ । ତାପରେ ବସିବାକୁ ମାନସ ବଳାଅ ॥ ଏହା ଶୁଣି ପ୍ରଶ୍ନ କଲେ ଭୋଜ ନରନାଥ । କି କି କାର୍ଯ୍ୟ କରିଥିଲେ ବିକ୍ରମ ଆଦିତ୍ୟ ॥ ଜଣା ଥିଲେ ପୁତ୍ତଳି ହେ କହ ମୋର ଆଗେ । ଶୁଣିକରି ସେ ପୁତ୍ତଳି କହେ ଅନୁରାଗେ ॥ ରାଜା ଥିଲେ ସେ ବିକ୍ରମ ଉଜ୍ଜୟିନ ନଗରେ । ପ୍ରଜାଗଣ ପାଳୁଥିଲେ ପୁତ୍ର ସମାନରେ ॥ ବହୁସଂଖ୍ୟାରେ ସେ ଦେଶେ ଥିଲେ ସୌଦାଗର । ପୂରିଥାଏ ଧନରତ୍ନେ ତାହାଙ୍କର ଘର ॥ ଧନପାଳ ନାମେ ଏକ ସୌଦାଗର ଥିଲା । ଦିନୁଦିନ ସମ୍ପତ୍ତି ତା ବହୁତ ବଢ଼ିଲା । ସୁଖବେଗେ କେତେକାଳ ବିତିଗଲା ତା'ର । ଦିନକରେ ମନମଧ୍ୟେ କଲା ସେ ବିଚାର ॥ ମିଛ ମାୟା ସଂସାର ଏ କେ ନୁହେଁ କାହାର । ଧନରତ୍ନ ଦାରସୁତ ମଲା ପରେ ପର ॥ ସଙ୍ଗେ କେହି ଯିବେ ନାହିଁ ଜୀବ ଯିବା ବେଳେ । ଏକମାତ୍ର ସାହା ହୁଏ ଧର୍ମ ଶେଷକାଳେ ॥ ଜୀବନରେ ଏ ପର୍ଯ୍ୟନ୍ତ ଧର୍ମ କଲି ନାହିଁ । ଦାନ

ପୁଣ୍ୟ ତୀର୍ଥ ବ୍ରତ ଏବେ କରିବଇଁ ॥ ଏହା ଭାବି ପାଶେ ଡାକି ପୁତ୍ରେ ବୁଝାଇଲା । ଘରଦ୍ୱାର ଧନଧାନ୍ୟ ତାଙ୍କ ହାତେ ଦେଲା ॥ ଆପଣା ପତ୍ନୀକୁ ଘେନି ହୋଇଲା ବାହାର । ତୀର୍ଥ ଭ୍ରମିବାକୁ ଆଗେ କଲା ଅନୁକୂଳ ॥ ପ୍ରୟାଗ ମଥୁରା କାଶୀ ବୃନ୍ଦାବନ ଆଦି । ବହୁତୀର୍ଥ ବୁଲିଲା ସେ ପାଳି ଶାସ୍ତ୍ରବିଧି ॥ ଶେଷେ ଏକ ଗିରି ଶିଖେ ଦୁହେଁ ପ୍ରବେଶିଲେ । ହରଗଉରୀଙ୍କ ମୂର୍ତ୍ତି ସେଠାରେ ଦେଖିଲେ ॥ ଅଷ୍ଟରତ୍ନେ ନିର୍ମିତ ସେ ଦେବଙ୍କ ମନ୍ଦିର । ରତ୍ନ ତେଜେ ନ ପଶଇ ତହିଁ ଅନ୍ଧକାର ॥ ଶିବଙ୍କ ଆଗରେ ଏକ କୂପ ଅଛି ରହି । କୂପର ଚାନ୍ଦନୀ ମଧ୍ୟ ରତ୍ନେ ଝଟକଇ ॥ କୂପପାଶେ ଦେଖିଲେ ସେ ଦୁଇଗୋଟି ଶବ । ଠିଆ ହୋଇଛନ୍ତି ସତେ ଥିଲା ପରି ଜୀବ ॥ ଦୁହିଁଙ୍କ ମୁଖକୁ ଦୁହେଁ ଚାହିଁ ରହିଛନ୍ତି । ଏକ ସ୍ତ୍ରୀ ପୁଣି ଏକ ପୁରୁଷ ଅଟନ୍ତି ॥ ଏଥିର ତଥ୍ୟକୁ ସୌଦାଗର ନ ଜାଣିଲା । ପତ୍ନୀକୁ ସଙ୍ଗତେ ଘେନି ବାହୁଡି ଆଇଲା ॥ ତୀର୍ଥ ସାରି ସାଧୁ ଫେରି ଗଲା ଘରପରେ । ଦେଖାକଲା ନିଜ ରାଜା ବିକ୍ରମ ଛାମୁରେ ॥ ଦେଖି ତାକୁ ନରପାଳ ଅତି ଅନୁରାଗେ । ଆସନରେ ନେଇ ବସାଇଲେ ନିଜ ଆଗେ ॥ ବୋଇଲେ ତୁ ସୌଦାଗର ବଡ଼ ଭାଗ୍ୟବନ୍ତ ! ନାନାତୀର୍ଥ ବ୍ରତକରି ହୋଇଲୁ ମୁକତ ॥ କେଉଁଠାରେ କି ଆଶ୍ଚର୍ଯ୍ୟ ଦେଖିଅଛୁ କହ । ଶୁଣିବାକୁ ତୋ ମୁଖରୁ ବଳିଅଛି ସ୍ନେହ ॥ ତାହା ଶୁଣି ସୌଦାଗର ସଧୀରେ କହଇ । ନାନା ତୀର୍ଥ ଭାର୍ଯ୍ୟା ସଙ୍ଗେ ବୁଲି ଦେଖିଲଇଁ ॥ ଉତ୍ତର ସୀମାରେ ଅଛି ଉଚ୍ଚ ପରବତ । ତା ଶିଖରେ ଆମେ ଦୁହେଁ ହେଲୁ ଉପଗତ ॥ ବିଜେ କରିଛନ୍ତି ସେ ସ୍ଥାନରେ ବିଶ୍ୱନାଥ । ତାଙ୍କ ପାଦେ ଭକ୍ତିଭରେ ଲଗାଇଲୁ ମାଥ ॥ ସେ ଶିବ ମନ୍ଦିର ଆଗେ ଅଛି ଏକ କୂପ । ତହିଁ ଦୁଇଗୋଟି ଶବ ଦେଖିଲୁ ସ୍ୱରୂପ ॥ ଦେହେ ପ୍ରାଣ ନାହିଁ ଦୁହେଁ ଠିଆହୋଇଛନ୍ତି । ଆଶ୍ଚର୍ଯ୍ୟ ଲାଗିଲା ବଡ଼ ପଡ଼ ସେ

ନଯାନ୍ତି । ତାଙ୍କର କାରଣ କିଛି ନ ପାରିଲ ଜାଣି । ଦେଖିଥିବା କଥା ଦେଲ ଘୁମୁଟରେ ବଖାଣି ॥ ଶୁଣିଲେ ଏମନ୍ତ ଯହୁଁ ବିକ୍ରମ ଆଦିତ୍ୟ । ସଙ୍ଗତରେ ଧରି ତାକୁ ଚଳିଲେ ତ୍ୱରିତ ॥ ମିଳିଲେ ସେ ପର୍ବତ ଶିଖେ କତିକି ବିଜନେ । ହର ପାଦେ ପୂଜା କଲେ ଉଚିତ ବିଧାନେ ଦୃଷ୍ଟି ପକାଇଲେ ତହୁଁ ନୃପ କୂପ ପ୍ରତି । ଶବ ଦୁଇଗୋଟି ସେଠି ଠିଆ ହୋଇଛନ୍ତି ॥ ଶବଙ୍କର କଥା କିଛି ବୁଝି ନ ପାରିଲେ । ଶିବଙ୍କ ଆଗରେ ସ୍ତୁତି କଲେ ଭକ୍ତିଭରେ ॥ ଜୟ ଜୟ ବିଶ୍ୱନାଥ ପାର୍ବତୀ-ରମଣ । ଜୟ ମୃତ୍ୟୁଞ୍ଜୟ ଜୟ ହର ତ୍ରିଲୋଚନ ॥ କହିତରେ ଦୟା ବହି ଯେନ ମୋର ଭକ୍ତି । ଦିଅ ହେ ଜୀଆଇ ଏହି ଶବ ଦୁଇଗୋଟି ଏ ସମୟେ ଶୁଣାଗଲା ଆକାଶରୁ ବାଣୀ । ଶବପାଇଁ ଦୟାହେଲେ ଆହେ ନରମଣି ॥ ମସ୍ତକ ତୁମ୍ଭର ଯେବେ ତୁମ୍ଭେ କାଟିଦେବ । ଜାଣ ନିଶ୍ଚେ ବେନି ଶବ ପାଇବଟି ଜୀବ ॥ ବିକ୍ରମ ସେ ଶୂନ୍ୟବାଣୀ ଶୁଣିବା ମାତ୍ରକେ । କୋଷମୁକ୍ତ କରି ଅସି ଧଇଲେ କ୍ଷଣକେ ॥ ନିଜ ଶିର ଛେଦିବାକୁ ଠେକନ୍ତେ ତାହାକୁ । ସ୍ୱରୂପରେ ବିଜେକଲେ ହର ସେହିଠାକୁ ॥ ବିକ୍ରମ ଆଦିତ୍ୟ ହସ୍ତୁଁ ଖଡ୍ଗ ଯେନି ଗଲେ । ଆହେ ନୃପ ବର ମାଗ ବୋଲି ଆଜ୍ଞା କଲେ ॥ ରାଜା ବୋଲେ ଯେବେ ତୁଷ୍ଟ ହେଲ ମୃତ୍ୟୁଞ୍ଜୟ । ଶବ ଦୁଇଟିଙ୍କୁ ପ୍ରଭୁ ଜୀବଦାନ ଦିଅ ॥ ଅସ୍ତୁ ବୋଲି ସଦାଶିବ କହନ୍ତେ ବଚନ । ବେନି ଶବ ସେହିକ୍ଷଣି ପାଇଲେ ଜୀବନ ॥ ପ୍ରାଣ ପାଇ ଦୁଇପ୍ରାଣୀ ଶିବଙ୍କୁ ପୂଜିଲେ । ରାଜାଙ୍କୁ ଆଶିଷ ଦେଇ ନିଜ ଘରେ ଗଲେ ॥ ବିଶ୍ୱରୂପୀ ତ୍ରିଲୋଚନ ହେଲେ ଅନ୍ତର୍ଦ୍ଧାନ । ସାଧୁସଙ୍ଗେ ନିଜ ଦେଶେ ଚଳିଲେ ରାଜନ ॥ ଆନନ୍ଦରେ ରହି ନିଜ ପ୍ରଜାଙ୍କୁ ପାଳିଲେ । ଶୁଣିଲ ତ ଭୋଜ ତାଙ୍କ ମହିମାକୁ ଭଲେ ॥ ତାଙ୍କପରି ତୁମ୍ଭେ ଯେବେ ହେବ ନରସାଇଁ । ବସିବ ଏ

ସିଂହାସନେ କହୁଅଛୁ ମୂର୍ଖ ॥ ଏହା କହି ସେ ପିତୁଳା ଗଲ ସ୍ୱର୍ଗପୁରେ । ଜଗନ୍ନାଥ ସିଂହ ଏହା ଗାଇଲ ଗୀତରେ ।

---

## ଦଶମ ପୁତ୍ତଳର କଥା

ଅନ୍ୟଦିନେ ଶୁଭଲଗ୍ନେ ଭୋଜ ନରପତି । ବସିବାକୁ ସିଂହାସନେ ବଳାଇଲେ ମତି ॥ ସ୍ନାନବିଧି ଅନ୍ତେ ପିତୃ ତର୍ପଣ ସାରିଲେ । ଦେବତାଙ୍କୁ ପୂଜି ବିପ୍ରେ ରତ୍ନ ଦାନଦେଲେ ॥ ତାହାପରେ ସିଂହାସନ ନିକଟକୁ ଯାଇ । ତା ଉପରେ ବସିବାକୁ ଉଠିଲେ ଆଗେଇ । ଦଶମ ପୁତ୍ତଳ ଉଠି କହିଲ ବଚନ । ଯୋଗ୍ୟ କି ହେ ତୁମ୍ଭେ ନୃପ ବିକ୍ରମ ସମାନ ॥ ତାଙ୍କପରି ସର୍ବଗୁଣେ ପୂର୍ଣ୍ଣ ହେଲେ ତୁମ୍ଭେ । ବସିପାର ଏ ସ୍ୱର୍ଗୀୟ ସିଂହାସନେ ତେବେ ॥ ଉତ୍ତରିଲେ ଭୋଜ ନୃପ କହି ତାଙ୍କ ଗୁଣ । କିପରି ଅଟନ୍ତି ସର୍ବ ଗୁଣେ ସେ ନିପୁଣ ॥ ପୁତ୍ତଳ ବୋଇଲ ପକ୍ଷି ବିକ୍ରମ ରାଜନ । ସେ ଦେଶରେ ବାସକରେ ପୁଷ୍କର ବ୍ରାହ୍ମଣ ॥ ସେହି ବିପ୍ର ଅଟେ ସର୍ବ ଶାସ୍ତ୍ରରେ ପଣ୍ଡିତ । ପଦ୍ମନାଭ ନାମେ ତା'ର ଥିଲ ଏକ ପୁତ୍ର ॥ ଯେତେ ପରକାରେ ପୁଅକୁ ସେ ପଢ଼ାଇଲ । ନ ପଢ଼ି ସେ ପଦ୍ମନାଭ ମୂରୁଖ ହୋଇଲ ॥ କେତେଦିନ ପରେ ପିତା ଛାଡ଼ିଲ ଜୀବନ । ଶୁଦ୍ଧି କ୍ରିୟାସାରି ପୁତ୍ରଦେଲ ଦାନମାନ । ପୁଷ୍କର ଦ୍ୱିଜକୁ ଯେଉଁମାନେ ମାନୁଥିଲେ । ପଦ୍ମନାଭକୁ ସେ ଦେଖି ଅତିମାନ୍ୟ କଲେ ॥ ପଦ୍ମନାଭ ତାହାଦେଖି ବିଚାରିଲ ମନେ । ମୂର୍ଖ ହେବାରୁ ମୁଁ ମୋତେ ନ ମାନନ୍ତି ଜନେ ॥ ଅପମାନ ସହି କିପାଁ ଏଠାରେ ରହିବି । ଦୂରଦେଶେ ଯାଇ ନିଷ୍ଠେ ବିଦ୍ୟା ମୁଁ ପଢ଼ିବି । ଏହିପରି ମନମଧ୍ୟେ ରଖି ସେ ଉଦ୍ଦେଶ୍ୟ । କାଶ୍ମୀର ରାଜ୍ୟରେ ଯାଇ ହେଲ ପରବେଶ ॥ ଚନ୍ଦ୍ରଚୂଡ଼ ନାମେ ଏକ ସେ ଦେଶେ ପଣ୍ଡିତ ।

ବହୁ ବିଦ୍ୟା ଲଭିଥିଲେ ସାଧି ଦେବୀ ମନ୍ତ୍ର ॥ ପଦ୍ମନାଭ ବିପ୍ର ତାଙ୍କ ପାଖରେ ରହିଲ । ବିଦ୍ୟା ଲାଭହେବା ମାନସରେ ସେବାକଲ ॥ ଏହି ପରି କେତେକାଳ ସେବାକଲ ସନ୍ତୁ । ଚନ୍ଦ୍ରଚୂଡ଼ବିପ୍ରଙ୍କର ଦୟାହେଲ ଚହୁଁ ॥ ପଦ୍ମନାଭକୁ ସେ ଡାକ ବୋଇଲେ ବଚନ । ଦେଉଛୁ ମୁଁ ସିଦ୍ଧିମନ୍ତ୍ର ବିଶ୍ବାସରେ ଘେନ ॥ ଏହାକହି ସିଦ୍ଧିମନ୍ତ୍ର ଦେଲେ ତା ଶ୍ରବଣେ । ମନ୍ତ୍ରପାଇ ପଦ୍ମନାଭ ଜପେ ଅନୁକ୍ଷଣେ ॥ ମନ୍ତ୍ର ସଦା ଜପିବାରୁ ବିଦ୍ୟାବନ୍ତ ହେଲ । ଶେଷେ ଗୁରୁପାଦେ ନମି ଗୃହକୁ ଫେରିଲ । ପଥମଧ୍ୟେ ଆସୁ ଆସୁ ମିଳିଲ କାଶୀରେ । ଦେଖିଲ ସେ ରମଣୀଏ ବସିଛି ଦୁଆରେ ॥ ରୂପ ତା'ର ଦେଖି ବିପ୍ର ବିମୋହିତହେଲ । ବିଭା ହେବା ଲଗି ତାକୁ ମନରେ ଭାବିଲ । ଦେଖିଲ ସେ ପୁରୁଷେକ ଯାଉଛି ବାଟରେ । ପାଶେ ତାକୁ ଡାକ ବିପ୍ର ପଚାରିଲ ଧୀରେ ॥ ଜାଣିଥିଲେ କହ ମୋତେ ଏ ନାରୀ ବୃତ୍ତାନ୍ତ । ତାହା ଶୁଣି ଉତ୍ତରିଲ ପୁରୁଷ ଭରତ ॥ ସେ ସ୍ତ୍ରୀ ଚରିତ ବଡ଼ ଆଶ୍ଚର୍ଯ୍ୟ ଅଟଇ । ତାକୁଆଶା କଲେ ପ୍ରାଣ ହରାଇବୁ ତୁହି ॥ ଭୂତଟାଏ ସେ ସ୍ତ୍ରୀ ପାଖ ରଖିଅଛି ତହିଁ । ଖାଇଦିଏ ତା ପାଶକୁ ଗଲମାନେ କେହି ॥ ତାହା ଶୁଣି ପଦ୍ମନାଭ ନିରାଶେ ଫେରିଲ । ବହୁବାଟ ଚାଲି ନିଜ ଗୃହେ ପହୁଞ୍ଚିଲ । ହପ୍ତାଏ ବିଶ୍ରାମ ନେଇ ଘରେ ମନତୋଷେ । ପ୍ରବେଶିଲ ଯାଇ ରାଜା ବିକ୍ରମଙ୍କ ପାଶେ ॥ ଯେଉଁ ଯେଉଁ ବିଦ୍ୟା ଗୁରୁଠାରୁ ଥିଲ ପାଇ । ବିକ୍ରମାଦିତ୍ୟଙ୍କ ଆଗେ କହିଲ ବୁଝାଇ ॥ ପାଠ ତା'ର ଶୁଣି ରାଜା ସନ୍ତୋଷ ହୋଇଲେ । କି ଆଶ୍ଚର୍ଯ୍ୟ କାହିଁ ଦେଖିଅଛ ପଚାରିଲେ ॥ ତା' ଶୁଣି ବୋଇଲ ବିପ୍ର ଶୁଣ ମହାରାଜ । କାଶୀ ଧାମେ ଶୁଣିଲି ମୁଁ ଏକଇ ଆଶ୍ଚର୍ଯ୍ୟ ॥ ଅଛି ରମଣୀଏ ଏକ ନବୀନା ସୁନ୍ଦରୀ । ଦ୍ୱାରେ ବସିଥିଲ ମୃଦୁ ମନ୍ଦହାସ ଧରି ॥ ତା'ରୂପକୁ ଚାହିଁ ମୁହିଁ ବିମୋହିତ ହେଲି । ବିଭା ହେବା ଲଗି ତା'ର ଚରିତ ବୁଝିଲି ॥ ଶୁଣିଲି ମୁଁ

ଭୂତଟାଏ ନାଗରକ ରଖିଛି । କନ୍ୟାଲୋଭେ ଗଲେ କେହି ସୁଖେ ଖାଉଅଛି । ଶୁଣିବାରୁ ଏହା ମୁହିଁ ଆଶ୍ଚର୍ଯ୍ୟ ମଣିଲି ॥ ନଯାଇ ସେ କନ୍ୟାପାଶେ ନଗରେ ଫେରିଲି ॥ ପଦ୍ମନାଭ କଥା ଶୁଣି ବିକ୍ରମ ଆଦିତ୍ୟ । ସଙ୍ଗେଧରି ତାକୁ ତହିଁ ଚଳିଲେ ତୁରିତ ॥ କେତେଦିନେ କାଶୀକ୍ଷେତ୍ରେ ମିଳିଲେ ନରେଶ । ବିଶ୍ୱନାଥ ପୂଜି ପହୁଞ୍ଚିଲେ କନ୍ୟା ପାଶ ॥ ନିଜ ପରିଚୟ ଦେଇ କନ୍ୟାକୁ କହନ୍ତି । ବିକ୍ରମାଦିତ୍ୟ ମୋ ନାମ ଉତ୍କଳ ନୃପତି ॥ ଆମ୍ଭ ନଗରକୁ ଆସ ଆମ୍ଭସଙ୍ଗେ ଯିବ । ତା ଶୁଣି ଯୁବତୀ କହେ ଯିବା ନୋହେ ସମ୍ଭବ ॥ ପଳାଅ ରାଜନ ତୁମ୍ଭେ ଏଥୁ ବେଗ ହୋଇ । ରହିଥିଲେ ଏ ସ୍ଥାନରେ ପ୍ରାଣେ ଆଶା ନାହିଁ ॥ ଆଣି ମୋତେ ଏହି ଘରେ ରଖିଅଛି ଭୂତ । ଅନ୍ୟ କେ ଆସିଲେ ମାରି ଖାଉଛି ନିଶ୍ଚିନ୍ତ ॥ ଶୁଣିଲ ତ ଏବେ ଏଠୁଁ ଯାଅ ହେ ସତ୍ୱର । ବେଳ ହୋଇଲାଣି ଭୂତ ଆସିବ ଏଥର ॥ ଏତିକ ବେଳକୁ ଆସି ପହୁଞ୍ଚିଲା ଭୂତ । କଲା ସେ ଗର୍ଜନ କାଢ଼ି ବିକଟାଳ ଦନ୍ତ ॥ ଆଗେ ଦେଖି ସେ ଭୂତର ଭୟଙ୍କର ରୂପ । ତାଳ ବେତାଳଙ୍କୁ ଶୀଘ୍ର ଆଜ୍ଞାଦେଲେ ନୃପ ॥ ମାରିଦିଅ ଏ ଭୂତକୁ ବିଳମ୍ବ ନକର । ଆଜ୍ଞାପାଇ ବୀର ଦୁହେଁ ଉଠିଲେ ସତ୍ୱର ॥ ଭୂତସଙ୍ଗେ ସେହିକ୍ଷଣି ଲଗାଇଲେ ରଣ । ମୁଥ ମରାମରି ଶବ୍ଦେ କମ୍ପଇ ଭୁବନ । ବେତାଳଙ୍କ ମାଡ଼ ଭୂତ ସହି ନ ପାରିଲା । ରଡ଼ଛାଡ଼ି ଜିଭକାଢ଼ି ପରାଣ ହାରିଲା ॥ ତା ଦେଖି ବିକ୍ରମାଦିତ୍ୟ ହୋଇ ହରଷିତ । ଯୁବତୀକୁ ସୁମଧୁରେ କହିଲେ ଏମନ୍ତ ॥ ଭୂତର ବନ୍ଧନେ ସିନା ଥିଲ ଏ ସ୍ଥାନରେ । ମୁକତି ପାଇଲ ଏବେ ଆମ୍ଭ ବିଚାରରେ ॥ ଏ ବ୍ରାହ୍ମଣ ତୁମ୍ଭଠାରେ ରଖିଛନ୍ତି ଆଶ । ତାଙ୍କ ଇଚ୍ଛା ପୂରାଅ ଗୋ ଜାଳି ରତି ରସ ॥ ବ୍ରାହ୍ମଣର ପତ୍ନୀ ହୋଇ ରହ ତାଙ୍କ ଘରେ । ଧନଧାନ୍ୟ ଦେବୁ ଆମ୍ଭେ ରହିବ ସୁଖରେ ॥ ଏହା କହି ପଦ୍ମନାଭ ହସ୍ତେ ସେ କନ୍ୟାକୁ । ସମର୍ପିଲେ

ମହାସୁଖେ ଭୋଗ କରିବାକୁ ॥ ସେ ଦୁହିଁଙ୍କୁ ସଙ୍ଗେଧରି ନିଜ ରାଜ୍ୟେ ଗଲେ । ସକଳ ସମ୍ପଦ ଦେଇ ସୁଖେ ରଖାଇଲେ ॥ ଆହେ ଭୋଜ ଏରୂପରି ବିକ୍ରମ ରାଜନ । ପର ଉପକାରେ ସଦା ଥିଲା ତାଙ୍କ ମନ ॥ ତାଙ୍କପରି ହେଲେ ତୁମ୍ଭେ ପର ଉପକାରୀ । ସୁଖେ ବସ ସିଂହାସନେ ଭୋଜ ଦଣ୍ଡଧାରୀ ॥ ଏହା କହି ସିଂହାସନ ତେଜି ସେ ପିତୁଳା । ଜଗନ୍ନାଥ କହେ ସ୍ୱର୍ଗପୁରେ ଚଳିଗଲା ॥

---

## ଏକାଦଶ ପୁତ୍ତଳିର କଥା

ଦିନାକେତେ ପରେ ଭୋଜ ନିତ୍ୟକର୍ମସାରି । ସିଂହାସନ ପାଶେ ଗଲେ ଦାନପୁଣ୍ୟ କରି । ତାଙ୍କୁ ଦେଖି ଏକାଦଶ ପୁତ୍ତଳିକା କହେ । ଏଥି ତୁମ୍ଭେ ବସିବାଟା ସମୁଚିତ ନୁହେଁ ॥ ବିକ୍ରମଙ୍କ ସମ ଯେବେ ପୁଣ୍ୟବାନ ହେବ । ତେବେ ଏହି ଦେବ ସିଂହାସନରେ ବସିବ ॥ ଏହା ଶୁଣି ଭୋଜରାଜ କହିଲେ ସରାଗେ । କହ ହେ ପୁତ୍ତଳି ତାଙ୍କ କୀର୍ତ୍ତି ମୋର ଆଗେ ॥ ଏକାଦଶ ପୁତ୍ତଳି ଯେ କହେ ଏହା ଶୁଣି । ବିକ୍ରମଙ୍କ କୀର୍ତ୍ତି ଯାହା ମୁହିଁ ଅଛି ଜାଣି ॥ ତାହା ଏବେ ତୁମ୍ଭ ଆଗେ କହୁଅଛି ଶୁଣ । ନିତି ସଭା କରୁଥାନ୍ତି ବିକ୍ରମ ରାଜନ ॥ ଦିନକରେ ସେ ସଭାକୁ ଆସି ଏକ ଦ୍ୱିଜ । ପ୍ରବେଶିଲା ବିରାଜେ ତା ଦେହେ ବ୍ରହ୍ମତେଜ ॥ ତାକୁ ଦେଖି ନରପତି ବହୁ ମାନ୍ୟ କଲେ । ଆସନ ଦିଆଇ ନିଜ ପାଶେ ବସାଇଲେ ॥ ପଚାରିଲେ ତାହା ପରେ କୋମଳେ ରାଜନ । ଆହେ ବିପ୍ରବର କମ୍ପା କଲ ଆଗମନ ॥ କେଉଁଣ ଦେଶରେ ଘର କି କାର୍ଯ୍ୟ ତୁମ୍ଭର । ଶୁଣିଲେ ସଂଶୟ ମନୁ ହୋଇଯିବ ଦୂର ॥ ତାହା ଶୁଣି ବିପ୍ର ବୋଲେ ଶୁଣ ନରପତି । କାଶ୍ମୀର ରାଜ୍ୟରେ ମୋର ଅଟଇ ବସତି ॥ ଧନୀ ସୌଦାଗର ଏକ ଅଛି ସେହି ଦେଶେ ।

ଖୋଲାଇଲା ପୁଷ୍କରିଣୀ ଦେଶଙ୍କର ଆଶେ ॥ ୟଶପାଖେ ସୁବର୍ଣ୍ଣରେ ବାନ୍ଧ ଘାଟମାନ । ତା ତୀରରେ ହରଗୌରୀ କରିଛି ସ୍ଥାପନ ॥ ତାଙ୍କ ପାଇଁ ତୋଳିଛି ସେ ସୁରମ୍ୟ ଦେଉଳ । କେବଳ ସେ ପୋଖରୀରେ ନ ପଡ଼ଇ ଜଳ ॥ ତାହା ଦେଖି ସୌଦାଗର ମହା ଚିନ୍ତା କଲା । ଅନଶନ ବ୍ରତେ ଶିବ ଚରଣେ ସେବିଲା ॥ ଏକାଳେ ଶୁଭିଲା ଦୈବ ଯୋଗେ ଶୂନ୍ୟ ବାଣୀ । ବତିଶ ଲକ୍ଷଣଯୁକ୍ତ ପୁରୁଷେ ତୁ ଆଣି ॥ ଯେବେ ସୌଦାଗର ଏଥି ଦେଇପାରୁ ବଳି । ତେବେ ଜଳପୂର୍ଣ୍ଣ ହେବ ନ ବସ ତୁ ଭଳି ॥ ସୌଦାଗର ଶୁଣିବାରୁ ଏ ଶୂନ୍ୟ ବଚନ । ନିଜ ଓଜନରେ ତୁଳ ରଖିଲା ସୁବର୍ଣ୍ଣ ॥ ସେ ସୁନାରେ ଯନ୍ତ୍ରରୂପେ ପିତୁଳା ଗଢ଼ାଇ । ପୁଷ୍କରିଣୀକୂଳେ ସେହି ମୂର୍ତ୍ତିଅଛି ଥୋଇ ॥ ଢଣ୍ଡାଇଛି ଘୋଷଣା ସେ ଦେଶେ ସୌଦାଗର । ବତିଶ ଲକ୍ଷଣ ଥିବ ଯେଉଁ ପୁରୁଷର ॥ ସେପୁରୁଷ ଯେବେ ଏଥି ଶିରଦାନଦେବ । ପୁଣ ତାର ଏହି ସ୍ୱର୍ଣ୍ଣ ମୂରତି ଲଭିବ ॥ ବତିଶଲକ୍ଷଣଯୁକ୍ତ ପୁଂସ ମିଳୁ ନାହିଁ । ଥିଲେ ଅବା ଶିର ଦାନ ଦେବ କେ ଇଚ୍ଛଇ ॥ ତାହା ଶୁଣି ନରପତି ସେ ବିପ୍ର ସଙ୍ଗତେ । କାଶ୍ମୀରକୁ ଅନୁକୂଳ କଲେ ତୁରିତେ ॥ ଜଳଶୂନ୍ୟ ନୂଆ ପୁଷ୍କରିଣୀ ପାଶେ ଯାଇ । ଶିବଙ୍କୁ ଦର୍ଶନ କଲେ ପ୍ରଲମ୍ବିତ ହୋଇ ॥ ତାହାପରେ ପୁଷ୍କରିଣୀ ମଧ୍ୟକୁ ସେ ଗଲେ । ନିଜ ଶିର କାଟିବାକୁ ଖଡ୍ଗ ଉଠାଇଲେ ॥ ବୋଲନ୍ତି ସେ ଭକ୍ତିଭରେ ଭଗବନ୍ତ ଶୁଣ । ମୋ ଶରୀରେ ରହିଅଛି ବତିଶ ଲକ୍ଷଣ ॥ ବଳିରୂପେ ଅର୍ପିଛି ମୁଁ ମୋ ଶିରକମଳ । ତାହା ଖାଇ ସନ୍ତୋଷରେ ଭରି ଯରେ ଜଳ ॥ ଏହା କହି ସେ ଖଡ୍ଗ ଲଗାନ୍ତେ ବେକରେ । ସେହିକ୍ଷଣି ଭଗବନ୍ତ ତାଙ୍କୁ ଦୃଶ୍ୟ ହେଲେ ॥ ଖଡ୍ଗ ଧରି ବୋଇଲେ ସେ କାଟ ନାହିଁ ଶିର । ତୋ ସାହସେ ତୁଷ୍ଟହେଲି ଘେନ ଇଚ୍ଛାବର ॥ ବିକ୍ରମ ବୋଇଲେ ଅନ୍ୟବରେ କାର୍ଯ୍ୟ ନାହିଁ । ଶୁଦ୍ଧଜଳେ ପୂର୍ଣ୍ଣହେଉ

ସରୋବରେ ଏହି ॥ ଅସ୍ତୁ ବୋଲି ଜଗନ୍ନାଥ କହିବା ମାତ୍ରକେ । ଜଳେ ପୂର୍ଣ୍ଣ ହେଲା ସର ଚକ୍ଷୁର ପଲକେ ॥ ସେହିଠାରେ ଭଗବନ୍ତ ହେଲେ ଅନ୍ତର୍ଦ୍ଧାନ । ସୌଦାଗର ନୃପେ କହେ ବିନୟ ବଚନ ॥ ତୁମ୍ଭ ଯୋଗେ କୀର୍ତ୍ତି ମୋର ହୋଇଲା ଉଜ୍ଜ୍ୱଳ । ସୁବର୍ଣ୍ଣ ପ୍ରତିମା ତୁମ୍ଭେ ନିଅ ନରପାଳ ॥ ବିକ୍ରମ ବୋଲନ୍ତି ସାଧୁ ସେ କଥା ନ କହ । ଅତିଥିଙ୍କ ହସ୍ତେ ତାହା ଦାନ କରି ଦିଅ । ଏହା କହି ନିଜ ରାଜ୍ୟେ ଶୀଘ୍ର ଚଳିଗଲେ । ସୁଖେ ପ୍ରଜାଗଣ ପାଳି ଆନନ୍ଦେ ରହିଲେ । ଦେଖ ଆହେ ଭୋଜ ନୃପ ହୃଦୟ ତାଙ୍କର । ପରକାର୍ଯ୍ୟେ ଦେଉଥିଲେ ଆପଣାର ଶିର ॥ ତୁମ୍ଭେ ଯେବେ ତାଙ୍କ ପରି ହେବ ନରପତି । ତେବେ ସିଂହାସନେ ବସି ଠେକାଇବ ଛତି ॥ ଏହା କହି ସେ ପୁତ୍ତଳି ଗଲା ସ୍ୱର୍ଗପୁରେ । ଜଗନ୍ନାଥ ସିଂହ ଏହା ଭଣଇ ଗୀତରେ ॥

—ః◌ః—

## ଦ୍ୱାଦଶ ପୁତ୍ତଳିର କଥା

ଆଉ ଦିନକରେ ଭୋଜ ସାରି ପ୍ରାତଃ କୃତ୍ୟ । ଦୀନ ଦୁଃଖୀ-ମାନଙ୍କୁ ସେ ଦେଇ ଅନ୍ନ ବସ୍ତ୍ର ॥ ଦେବପୂଜା ଶେଷକରି ବିପ୍ରେ ଦାନ ଦେଲେ । ପାତ୍ର ମନ୍ତ୍ରୀ ସହିତରେ ଆନନ୍ଦେ ଗମିଲେ ॥ ସିଂହାସନେ ବସିବାକୁ ଉଠାନ୍ତେ ଚରଣ । ଦ୍ୱାଦଶ ପୁତ୍ତଳି ତାଙ୍କୁ କରିଲା ବାରଣ ॥ ବୋଇଲା ଏ ସିଂହାସନେ ବସ ନାହିଁ ନୃପ । ବସନ୍ତି ଏଥିରେ ଏକା ସେ ବିକ୍ରମ ଭୂପ । ତାଙ୍କ ସମ ଗୁଣୀ ତୁମ୍ଭେ ହେଲେ ବସିପାର । ନୋହିଲେ ଘଟିବ ଜାଣ ବିପଦ ନିକର ॥ ତାହା ଶୁଣି ପ୍ରଶ୍ନ କଲେ ଭୋଜ ନରରାଣ । କି କି ଗୁଣ ଅର୍ଜିଥିଲେ ବିକ୍ରମ ରାଜନ ॥ ବୋଇଲା ପୁତ୍ତଳି ଏହି ଉଜ୍ଜ୍ୱଳ ନଗରେ । ବିକ୍ରମ ଆଦିତ୍ୟ ରାଜା ଥିଲେ ସେ

କାଳରେ ॥ ପାଳୁଥାନ୍ତି ପ୍ରଜାଙ୍କୁ ସେ ପୁତ୍ର ନିର୍ବିଶେଷେ । ଉପବନ ଏକ ଥିଲା ତାଙ୍କର ଏ ଦେଶେ ॥ ନାନାବିଧ ଫୁଲ ଫୁଟି ବାସ ଚହଟଇ । ସୁମଧୁର ପକ୍ୱଫଳ ସବୁବେଳେ ଥାଇ ॥ ଦିନେ ଏକ ବ୍ରହ୍ମଋଷ ସେ ବନ ମଧ୍ୟରେ । ତେଜ ଦିଶେ ଅଗ୍ନି ପରି ପ୍ରବେଶ ହୋଇଲେ ॥ ତପ ଆଚରିଲେ ବସି ରଜନୀ ଦିବସ । ବନପାଳେ ତେଜ ଦେଖି ଡରିଲେ ବିଶେଷ ॥ ବନଙ୍କୁ ସେ ଛାଡିଦେଇ ପଳାଇଲେ ଡରେ । କରଯୋଡ଼ି ଜଣାଇଲେ ରାଜାଙ୍କ ଆଗରେ ॥ ତାହା ଶୁଣି ନରମଣି ଆନନ୍ଦିତ ହେଲେ । ବନପାଳଙ୍କର ସଙ୍ଗେ ବଗିଚ୍ଚକୁ ଗଲେ ॥ ବ୍ରହ୍ମଋଷି ପାଶେ ଯାଇ ଉପସ୍ଥିତ ହୋଇ । ପ୍ରଣମିଲେ ଭକ୍ତି ଗଦ-ଗଦେ ନରସାଇଁ ॥ ସନ୍ତୋଷରେ ବ୍ରହ୍ମଋଷି କରି ସୁକଲ୍ୟାଣ । ବୋଇଲେ ଦେଉଛୁଁ ଏହି ମନ୍ତ୍ର ଗୋଟି ଘେନ ॥ ନିଯମରେ ରହି ହୋମ କଲେ ସାତଦିନ । ଅଗ୍ନି ନିଜେ କରିବେ ହେ ଫଳେକ ଅର୍ପଣ ॥ ସେ ଫଳକୁ ଖାଇବ ଯେ ହେବ ସେ ଅମର । ନଛୁଇଁବ ଜରାଜୀର୍ଣ୍ଣ କେବେ ତା ଶରୀର ॥ କ୍ଷୁଧା ତୃଷା ରୋଗ ବ୍ୟାଧି ଶଙ୍କା ନ ରହିବ । ସବୁକାଳେ ଯୁବା ହୋଇ ସେହୁ ରହିଥିବ ॥ ଏହା କହି ବିକ୍ରମଙ୍କୁ ଦେଲେ ସେହି ମନ୍ତ୍ର । ମନ୍ତ୍ର ପାଇ ସେ ବିକ୍ରମ ହୋଇ ଆନନ୍ଦିତ ॥ ଦ୍ୱିଜ ଡାକି ବିଧିମତେ ହୋମ ଆରମ୍ଭିଲେ । ନିଜେ ରାଜା ଅଗ୍ନିକୁଣ୍ଡେ ଆହୁତି ଅର୍ପିଲେ ॥ ସାତଦିନ ବସି ହୋମ କଲେ ନୃପବର । ହୋମକୁଣ୍ଡମଧ୍ୟେ ଦେଖାଦେଲେ ବୈଶ୍ୱାନର ॥ ଦିବ୍ୟ ଚୂତଫଳ ଟିଏ ନୃପହସ୍ତେ ଦେଲେ । ଏ ଫଳ ଖାଇଲେ ବୃଦ୍ଧ ନୋହିବ ବୋଇଲେ ॥ କ୍ଷୁଧା ତୃଷା ରୋଗ ବ୍ୟାଧି କେବେ ନବାଧିବ । ଯୁବା ହୋଇ ସବୁବେଳେ ଆନନ୍ଦରେ ଥିବ ॥ ଏହା କହି ଅଗ୍ନିଦେବ ହେଲେ ଅନ୍ତର୍ଦ୍ଧାନ । ଫଳ ଲଭି ନରପାଳ ହୋଇ ହୃଷ୍ଟମନ ॥ ଯିବାବେଳେ ଦେଖିଲେ ସେ ବୃଦ୍ଧ ଦ୍ୱିଜବର । ଯଷ୍ଟି ଧରି ଦେଇ

କଷ୍ଟେ ସ୍ଥଳଇ ପଥର ॥ ଦୟା ବହି ନୃପ ତାଙ୍କୁ ଏସ ଫଳଟି ଦେଲେ । ଖାଇବାମାତ୍ରକେ ବୃଦ୍ଧ ଯୁବକ ହୋଇଲେ ॥ ତାହା ଦେଖି ସର୍ବେ ତହିଁ ହେଲେ ଚମତ୍କୃତ । ନୃପଙ୍କୁ କଲ୍ୟାଣ କଲେ ସକଳେ ବହୁତ । ଯୁବା ହୋଇ ବୃଦ୍ଧ ବିପ୍ର ଆଶୀର୍ବାଦ କଲେ । ବିକ୍ରମ ଆଦିତ୍ୟ ସୁଖେ ରାଜ୍ୟରେ ରହିଲେ ॥ ଶୁଣ ଭୋଜ ତାଙ୍କ ପରି ପର ଉପକାର ।କଲେ ସିନା ସିଂହାସନେ ଯାଇ ବସିପାର ॥ ଏହା କହି ସେ ପୁତ୍ତଳି ସ୍ୱର୍ଗ-ପୁରେ ଗଲା । ଜଗନ୍ନାଥ ସିଂହ ଏହା ଗୀତରେ ଗାଇଲା ॥

---

## ତ୍ରୟୋଦଶ ପୁତ୍ତଳିର କଥା

ଆଉଦିନେ ଭୋଜରାଜ ଦାନ ପୁଣ୍ୟ ସାରି । ସିଂହାସନେ ବସିବାକୁ ଉଠନ୍ତେ ବିଚାରି ॥ ତ୍ରୟୋଦଶ ପୁତ୍ତଳି ଯେ କରିଲା ବାରଣ । କେଉଁ ଗୁଣେ ସିଂହାସନେ ଉଠ ନରରାଣ ॥ ବିକ୍ରମ ଆଦିତ୍ୟ ରାଜା ଏଥି ବସୁଥିଲେ । ବସିବ ଏଥିରେ ତୁମ୍ଭେ ତାଙ୍କ ସମ ହେଲେ । ଭୋଜ ପଚାରିଲେ ତେବେ ତାଙ୍କର ଚରିତ । କହ ହେ ପୁତ୍ତଳି ଶୁଣିବାକୁ ବଳେ ଚିତ୍ତ ॥ ବୋଇଲା ପୁତ୍ତଳି ଶୁଣ ଭୋଜନୃପ ଭଲେ । ବିକ୍ରମ ଆଦିତ୍ୟ ଶୁଭେ ପ୍ରଜା ପାଳୁଥିଲେ ॥ ବିଚାରିଲେ ମନ ମଧ୍ୟେ ଦିନକରେ ସେହି । ମୋର ନିନ୍ଦା ସ୍ତୁତି ଅବା କରୁଥିବେ କେହି ॥ ନିଜ ରାଜ୍ୟ ପ୍ରଜା ବୋଲି ନ କହନ୍ତି ଭୟେ । ଆମ୍ଭେ ଥରେ ଜାଣିବା ତା ଯେବଣ ଉପାୟେ ॥ ଏହା ଭାବି ରାଜା ଭିକ୍ଷୁ ରୂପକୁ ଧଇଲେ । ଚିହ୍ନି ନ ପାରିଲେ କେହି ରାଜ୍ୟରେ ବୁଲିଲେ ॥ କାହା ମୁଖୁଁ ନ ଶୁଣିଲେ କିଛି ନିନ୍ଦାବାଣୀ । ପ୍ରଶଂସା କରନ୍ତି ସର୍ବେ ନରେଶ କରଣି ॥ ତାହା ଶୁଣି ଚାଲିଗଲେ ଅତି ଆନନ୍ଦରେ । ପହଞ୍ଚିଲେ ଯାଇ ଏକ ଗିରି

ନିକଟରେ ॥ ରଜନୀ ପ୍ରବେଶ ହେଲା ଜାଣି ସେହିକାଳେ । ବଶ୍ରମିଲେ ନରପତି ବରଗଛ ମୂଳେ ॥ ବସି ବସି ଭାବୁଭାବୁ ଦେଖି ସେ ପାରଲେ । ପକ୍ଷିଶାବକ ଗୃହେ ଗୋଟି ବୃକ୍ଷକୁ ଅଇଲେ ॥ ଚଞ୍ଚୁ ମଧ୍ୟେ ଖାଦ୍ୟଦ୍ରବ୍ୟ ଆଣିଥିଲେ ଯାହା । ବାପ ମାଆଙ୍କର ପାଶେ ନେଇ ଦେଲେ ତାହା ॥ ସବା ସାନ ଭାଇ କିଛି ନ ଥିଲା ତ ଆଣି । ମୁଖଟିକୁ ଶୁଖାଇଣ ହୋଇଲା ମଉନୀ ॥ ତାହା ଦେଖି ବାପ ବୋଲେ କପାଇଁ ବରସ । ଦିଶଇ ତୋ ମୁଖ ଆଜ କର ତା' ପ୍ରକାଶ । ପକ୍ଷିଶିଶୁ ଶୁଣିକର ଏମନ୍ତ କହଇ । ମରଥିଲୁଁ ପୂର୍ବଜନ୍ମେ ଆମ୍ଭେ ଦୁଇଭାଇ ॥ ବଡ଼ଭାଇ ଦ୍ୱିପ୍ର ହେଲା ଦ୍ୱୀପାନ୍ତରେ ଯାଇ । ହୋଇଛି ଏଠାରେ ପକ୍ଷୀ ମୋ କର୍ମରୁ ମୁହିଁ ॥ ଏଥିତାରୁ ପ୍ରତିଦିନ ମୁହିଁ ଯାଉଥାଏ । ସେ ଭାଇକ ଦେଖିକରି ଫେରି ଆସୁଥାଏ ॥ ଦୈତ୍ୟ ଏକ ସେ ଦେଶରେ ରାଜା ହୋଇଅଛି । ପ୍ରତିଦିନ ନର ଏକ ଭୋଗ ଖାଉଅଛି ॥ ବାସ କରିଛନ୍ତି ସେ ଦେଶରେ ଯେତେ ନରେ । ଅଛନ୍ତି ସେ ପାଳି କରି ନିତି ଘରେ ଘରେ ॥ ଯାହା ଘରେ ପାଳି ଆସି ଯେ ଦିନ ପଡ଼ଇ । ତାହା ଘରୁ ଜଣେ ଗଲେ ଦାଏ ତାକୁ ଖାଇ ॥ ସେହି ଭାଇ ଘରେ ଆଜ ପଡିଅଛି ପାଳି ॥ ଅସୁରକୁ ଡରି ମନେ ବସିଥିଲେ ଭାଳି ॥ ତା'ର ଭାର୍ଯ୍ୟା ଦେଖି ମୋତେ ମୋ ଆଗେ କାନ୍ଦିଲା । ତୁମ୍ଭ ଭାଇ ଆଜ ନଷ୍ଟେ ମରିବେ ବୋଇଲା ॥ ତାଙ୍କ ଅନ୍ତେ କ କରିବ ଦାଅ ମୋତେ କହି । ଏହା ଶୁଣି ମୋତେ ଆଉ କିଛି ନ ରୁଚଇ ॥ ତାହା ଶୁଣି ସବୁ ପକ୍ଷୀ କରିଲେ ରୋଦନ । ବୃକ୍ଷମୂଳେ ଥାଇ ସବୁ ଜାଣିଲେ ରାଜନ ॥ ଦୟା ବହି ତାଙ୍କୁ ନୃପ ଦିଅନ୍ତି ଉତ୍ତର । ନ କର ପକ୍ଷୀଏ ଶୋକ ମୋର ବୋଲ କର ॥ ମୋତେ ଯେନି ଚାଲ ସଙ୍ଗେ ମୁଁ ତା' ବଦଳରେ ॥ ବଳି ହେବ କିଛି ଆଉ ନ ଭାଳ ମନରେ ॥ ତାହା ଶୁଣି ପକ୍ଷୀମାନେ କହିଲେ ଏପରି । ବହୁଦୂର ବାଟ ତୁମ୍ଭେ ଯିବଟି କପରି ॥ ତାହା

ଶୁଣି ନୃପ ବୋଲେ ମିବା ବିଦ୍ୟାବଳେ । ଉଡ଼ିଲେ ପକ୍ଷୀଏ ଚଢ଼ି ଆକାଶ ମଣ୍ଡଳେ । ତାଙ୍କ ପଛେ ପଛେ ରାଜା ବସି ଯୋଗାସନେ । ଉଡ଼ିଗଲେ ଆକାଶରେ ହରଷିତ ମନେ ॥ କଛୁକ୍ଷଣ ପରେ ଯାଇ ମିଳିଲେ ସେ ଦେଶେ । ପ୍ରବେଶିଲେ ବଳି ପାଳ ଥିବା ବିପ୍ର ପାଶେ ॥ ମନ୍ଦିର ନିକଟେ ବିପ୍ର ହୋଇଣ ଦୁଃଖିତ । ବସିଥିଲା ରାଜା ତାକୁ କହିଲେ ଏମନ୍ତ ॥ ମୁହିଁ ତୁମ୍ଭ ବଦଳରେ ହେଉଅଛି ବଳି । ଆନନ୍ଦରେ ଯାଅ ବିପ୍ର ନିଜ ଗୃହେ ଚଳି ॥ କଦାଚିତେ ମିଥ୍ୟା ନୁହେଁ କହୁଅଛି ସତ୍ୟ । ଖାଇଲେ ଖାଇବ ପଛେ ଆଜ ମୋତେ ଦୈତ୍ୟ ॥ ମରଣରୁ ମୁକ୍ତ ପାଇ ଦ୍ୱିଜ ଆନନ୍ଦରେ । ସୁକଲ୍ୟାଣ ନୃପେ ଦେଇ ଗଲା ନିଜ ଘରେ ॥ ରହିଲେ ବିକ୍ରମାଦିତ୍ୟ ସେହିଠାରେ ବସି । ତୃତୀୟ ପ୍ରହର ରାତ୍ର ପ୍ରବେଶିଲା ଆସି ॥ ଘୋଟିଗଲା ଚହୁଁ ଚହୁଁ ନିବିଡ଼ ଅନ୍ଧାର । ମିଳିଲା ଅସୁର ଆସି ନୃପତି ଆଗର ॥ ଭୀଷଣ ବଦନ ପୁଣି ବିକଟାଳ ଦନ୍ତ । ଗର୍ଜନ ଶୁଣିଲେ ତା'ର କମ୍ପଇ ଜଗତ ॥ ବୋଲଇ ରେ କେଉଁ ଦେଶେ ଅଟେ ତୋର ଘର । କିପାଁ ଆସି ବସିଛୁ ତୁ ମୋ ରାଜ୍ୟ ଭିତର ॥ ମୋର ରାଜ୍ୟ ବୋଲି ତୋତେ ନାହିଁ କି ରେ ଜଣା । କାହା ବୋଲେ ପଡ଼ି ତୁ ରେ ହେଲୁ ବୁଦ୍ଧି ବଣା ॥ ଖଜଣା ରୂପରେ ଖାଏ ମୁହିଁ ନରବଳି । ପଡ଼ିଥିଲା ବ୍ରାହ୍ମଣର ଆଜ ସେହି ପାଳି ॥ ତା' ସ୍ଥାନରେ କି କାରଣେ ବସିଅଛୁ ତୁହି । ଏହିକ୍ଷଣି ଜାଣ ତୋତେ ଖାଇଦେବି ମୁହିଁ ॥ ଏହା ଶୁଣି କହିଲେ ସେ ବିକ୍ରମ ରାଜନ । ଶୁଣ ଦୈତ୍ୟେଶ୍ୱର ତୁମ୍ଭେ ମୋହର ବଚନ ॥ ଜନ୍ମ ହେଲେ ମୃତ୍ୟୁ ହୁଏ ମୃତ୍ୟୁ ହେଲେ ଜନ୍ମ । ଏହିପରି ଲାଗିଅଛି ସଂସାର ନିୟମ ॥ ଆଗେ ହେଉ ପଛେ ହେଉ ଦିନେ ହେବ ନାଶ । ଅନିତ୍ୟ ଶରୀର ପାଇଁ କିପାଁ ଏତେ

ଆଶ । ମୋତେ ଯଦି ଆଜ ତୁମ୍ଭେ ଏଠାରେ ଖାଇବ । ତୁମ୍ଭ କ୍ଷୁଧା ଯିବ ପୁଣ୍ୟ ମୋହର ହୋଇବ ॥ ବ୍ରାହ୍ମଣ ବଞ୍ଚିବ ତା'ର ରକ୍ଷାହେବ କୂଳ । ଚିତ୍ତରେ ତ ନାସ୍ତେ ଥିବ ପର ଉପକାର ॥ ପର ଉପକାର-ଠାରୁ ବଳ ପୁଣ୍ୟ ନାହିଁ । ଏପରି ସୁଯୋଗ ଆଜ ଛାଡ଼ିବି କପାଇଁ ॥ ହେ ଅସୁରରାଜ ମୋତେ ତୁମ୍ଭେ ଏହିଠାରେ । ଖାଅ ବସି ଆନନ୍ଦରେ ବିପ୍ର ବଦଳରେ ॥ ରାଜାଙ୍କ ମୁଖରୁ ଯହୁଁ ଏମନ୍ତ ଶୁଣିଲା । ହୋଇଣ ସନ୍ତୋଷ ଦୈତ୍ୟ ଏମନ୍ତ କହିଲା ॥ ଆହେ ନୃପ ତୁମ୍ଭେ ଅଟ ଧାର୍ମିକ ପୁରୁଷ । କେହି ନାହିଁ ଏ ସଂସାରେ ତୁମ୍ଭର ସଦୃଶ ॥ ଦିଅ ପର ଉପକାରେ ଆପଣା ପରାଣ । ଦେଖି ଏହା ବଡ ତୁଷ୍ଟ ହେଲା ମୋର ମନ ॥ ସନ୍ତୋଷେ ଦେଉଛି ଏବେ ମାଗି ବର ଘେନ । ତାହାଶୁଣି ବୋଲନ୍ତି ସେ ବିକ୍ରମ ରାଜନ ॥ ଶୁଣ ଦୈତ୍ୟରାଜ ତୁମ୍ଭେ ହେଲ ଯେବେ ତୋଷ । ବିନୟେ ମାଗୁଛି ଛାଡ଼ ଯାଅ ଏହି ଦେଶ ॥ ନରବଳ ଆଜଠାରୁ ଦେବେ ନାହିଁ କେହି । ବାସକରି ଆନନ୍ଦରେ ସର୍ବେ ଥିବେ ରହି ॥ ତୁମ୍ଭ ଅଧିକାର ଆଉ ଏଠାରେ ନ ଥିବ । ଏହି ବର ମାଗୁଅଛି ସନ୍ତୋଷରେ ଦେବ ॥ ତାହାଶୁଣି ଅସ୍ତୁ ବୋଲି କହି ସେ ଅସୁର । ଚାଲିଗଲା ସେ ରାଜ୍ୟକୁ ଛାଡ଼ି ବହୁଦୂର ॥ ବାସ କଲା ଇଚ୍ଛାମତେ ଯାଇ ଅନ୍ୟ ଦେଶେ । ଦିବସ ହୋଇଲା ଆସି ରଜନୀର ଶେଷେ ॥ ପ୍ରଭାତରୁ ଉଠିଯାଇ ଦେଖିଲେ ସକଳେ । ଗତରାତ୍ର ନରବଳ ବସିଛି କୁଶଳେ ॥ ନିଶ୍ଚେଁ ଏ ଦେବତା ବୋଲି ମନେ ବିଚାରିଲେ । ତାଙ୍କ ପାଦେ ଯାଇ ସର୍ବେ ମିଳି ପୂଜା କଲେ ॥ ସକଳ କାରଣ ରାଜା କହିଲେ ବୁଝାଇ । ଦୈତ୍ୟ ଭୟ ଆଜଠାରୁ ଆଉ ହେବ ନାହିଁ ॥ ଯାହା ପାଇଁ ହୋଇଥିଲେ ବଳି ନରଗଣ । ସେ ବିପ୍ରକୁ ଡକାଇଲେ କରି ମନେ ତୋଷ ॥ ସେହି ଦେଶ ମଧ୍ୟେ ତାକୁ କରାଇଲେ ରାଜା । ପ୍ରଜାଗଣ ମିଳି କଲେ ତାଙ୍କ ପାଦେ

ପୂଜା ॥ ଟମଲାଣି ନେଇଣ ରାଜା ଗଲେ ନିଜ ଲେଖେ । ପାଳିଲେ ପ୍ରଜାଙ୍କୁ ହିଜ ଅତ୍ୟନ୍ତ ହରଷେ ॥ ଏପରି ବିକ୍ରମାଦିତ୍ୟ ପର ଉପକାର । କରୁଥିଲେ ଜାଣ ଆହେ ଭୋଜ ନୃପବର ॥ ଯେବେ ତୁମ୍ଭେ ତାଙ୍କ ସଙ୍ଗେ ହୋଇବ ସମାନ । ଅଧିକାର କର ତେବେ ଏହି ସିଂହାସନେ ॥ ଏହା କହି ସିଂହାସନ ଗ୍ଲାଡ଼ ସେ ପୁତ୍ତଳ । ଜଗନ୍ନାଥ ସିଂହ କହେ ସ୍ୱର୍ଗେ ଗଲା ଚଳି ॥

———

## ଚତୁର୍ଦ୍ଦଶ ପୁତ୍ତଳର କଥା

ତାହାପରେ ଦିନେ ଭୋଜ କରି ଦାନ ପୁଣ୍ୟ । ସିଂହାସନେ ବସିବାକୁ କଲେ ପୁଣି ମନ ॥ ଆନନ୍ଦରେ ବାହାରିଲେ ଉତ୍ସବ କରାଇ । ପ୍ରବେଶ ହୁଅନ୍ତେ ସିଂହାସନେ ତଳେ ଯାଇ ॥ ତାଙ୍କୁ ଦେଖି ଚତୁର୍ଦ୍ଦଶ ପୁତ୍ତଳ କହଇ । ନ ଛୁଇଁ ନ ବସ ଏଥି ଆହେ ନରସାଇଁ ॥ ଏଥିରେ ବସନ୍ତି ରାଜା ବିକ୍ରମ ଆଦିତ୍ୟ । ତାଙ୍କ ପରି ତୁମ୍ଭେ ଯେବେ ହେବ ଗୁଣବନ୍ତ ତେବେ ଆସି ସିଂହାସନ ଉପରେ ବସିବ । ଅକାରଣେ କପାଁ ଏବେ ହଟହଟା ହେବ ॥ ତାହା ଶୁଣି ପଚାରିଲେ ଭୋଜ ନରପତି । କହ ହେ ପୁତ୍ତଳ ଥିଲା ତାଙ୍କର କି ଗୁଣ ॥ ଶୁଣି ସେ ପୁତ୍ତଳ ତାଙ୍କୁ କହଇ ଏମନ୍ତ । ଉଜ୍ଜ୍ୱଳନଗର ରାଜା ବିକ୍ରମ ଆଦିତ୍ୟ ॥ କେତେ କେତେ ଗୁଣ ତାଙ୍କ ଦେହେ ଥିଲା ପୁଣି । ଅନନ୍ତ ସେ ବିଶେଷରେ ପର ଉପକାରୀ ॥ ତାଙ୍କ ନିଜ ରାଜଧାନୀ ଉଜ୍ଜ୍ୱଳ ନଗରେ । ଧନୀ ସୌଦାଗର ଜଣେ ସୁଖେ ବାସ କରେ ॥ ରାଜାଙ୍କ ବେପାର ସେହି ଠିକା ନେଇଥାଏ । ରାଜପୁରରେ ଯାହା ଯାହା ଲୋଡ଼ା ହେଲେ ଦିଏ ॥ ରାଜାଙ୍କର ତାହାଠାରେ ଥାଏ ଦୟା ଅତି । ମାଗଇ ସେ ଯାହା ତାକୁ ତକ୍ଷଣେ ଦିଅନ୍ତି ॥ ଏହିକ୍ରମେ ବହୁ

ଧନ ରକ୍ଷି ସୌଦାଗର । ଆୟୁ ଶେଷ ହୋଇବାରୁ ଗଲା ସ୍ୱର୍ଗପୁର ॥ ପୁତ୍ର ତା'ର ଜାଣ ଅଟେ ପୁରନ୍ଦର ଦାସ । ନିରନ୍ତରେ କଲା ବେଶ୍ୟା ସଙ୍ଗ ଅଭିଳାଷ ॥ ବେଶ୍ୟା ସଙ୍ଗେ ସବୁବେଳେ ସନ୍ଧ୍ୟ ସେ ମାତିଲା । ସକଳ ସମ୍ପତ୍ତି ସାର ନିର୍ଦ୍ଧନ ସେ ହେଲା ॥ ସ୍ନେହ କରୁଥିଲା ବେଶ୍ୟା ଥିବାଯାଏ ଧନ । ଧନ ଶେଷେ ଧିକ୍କାର ସେ କଲା ହୀନମାନ । ତହୁଁ ପୁରନ୍ଦର ଚେତାପାଇ ବସ୍ତୁରଇ । ପିତୃଧନଯାକ ହାରି କସ କରିବଇଁ । ଖାଲିହାତେ ବନ୍ଧୁଘରେ ଯିବା ଅନୁଚିତ । ଏହା ଭାବି ଯୋଗୀହୋଇ ବୁଲିଲା ବନସ୍ତ ॥ ବୁଲିବୁଲି ସେ ମଳୟ ପର୍ବତ ପାଖରେ । ପଡ଼ା ଏକ ଥିଲା ତହିଁ ଚଳିଲା ଭିକ୍ଷାରେ ॥ ଦିନକରେ ପୁରନ୍ଦର ଘରେ ଶୋଇଥିଲା । ବ୍ରାହ୍ମଣୀ କାନ୍ଦଇ ଉଚ୍ଚେ ନିଶୀଥେ ଶୁଣିଲା ॥ ପ୍ରଭାତେ ପୁଛିଲା ଯାଇ ସେହି ବ୍ରାହ୍ମଣୀକି । କି ଲାଗି କାନ୍ଦିଲ ରାତେ ମୋତେ କହିବ କି ॥ ଶୁଣି ସେ ବ୍ରାହ୍ମଣୀ କାନ୍ଦି କହିଲା ତାହାକୁ । କି କହିବି ଘଟୁଛି ଯା ମୋର କପାଳକୁ ॥ ଅର୍ଦ୍ଧରାତେ ନିତି ଭୂତ ପଶଇ ମୋ ଘରେ । ନିର୍ଦ୍ଦୟ ଭାବରେ ମୋର ଶରୀରେ ପ୍ରହାରେ ॥ ତା' ମାଡ଼ରେ ବ୍ୟଥା ପାଇ କରେ ମୁଁ ରୋଦନ । କିଏ ବା ମୋ ଦୁଃଖ ନେବ ମୁଁ ତ ହୀନଜନ ॥ ବ୍ରାହ୍ମଣୀର ଦୁଃଖ ଶୁଣି ପୁରନ୍ଦର ଦାସ । ଅନେକ ବୁଝାଇ ତାକୁ ଦେଲା ସେ ଆଶ୍ୱାସ । ତାହାପରେ ପୁରନ୍ଦର ନିଜରାଜ୍ୟେ ଗଲା । ବିକ୍ରମ ଆଦିତ୍ୟଙ୍କର ସଭାରେ ମିଳିଲା ॥ ବ୍ରାହ୍ମଣୀର କଥାଯାକ କହିଲା ବୁଝାଇ । ତା' ଶୁଣି ବିକ୍ରମ ପର ଦୁଃଖେ ଦୁଃଖୀ ହୋଇ ॥ ପୁରନ୍ଦର ଦାସକୁ ସେ ସଙ୍ଗତେ ଧରିଲେ । ସେହିକ୍ଷଣି ଯିବା-ଲାଗି ଅନୁକୂଳ କଲେ ॥ ମଳୟ ଗିରିରେ ମିଳି ଡାକି ବ୍ରାହ୍ମଣୀକି । ବୋଇଲା ସେ ପୁରନ୍ଦର ନ ଭାବ ଏଣିକି ॥ ଏହି ଯେ ନୃପତି ତୋର ଛଡ଼ାଇବେ ଭୂତ । ଏହା ଶୁଣି ସେ ବ୍ରାହ୍ମଣୀ ହୋଇ ଆନନ୍ଦିତ ॥ ଆଉଷା ଗୃହରେ ତାଙ୍କୁ ବସା ସଞ୍ଜା ଦେଲା । ରନ୍ଧନା ସାମଗ୍ରୀ ନେଇ

ବସି ଯୋଗାଇଲ ॥ ରନ୍ଧନ ଭୋଜନ ସାରି ଶୋଇଲେ ସକଳେ । ନିଶୀଥେ କାନ୍ଦଇ ଦ୍ୱିଜା ପୂର୍ବ ପରକାରେ ॥ ନ ମାର ହେ ମରିଗଲି ବୋଲି କାନ୍ଦେ ସେହି । ତଥାପି ସେ ଭୂତ ତାକୁ ନିର୍ଦ୍ଦୟେ ପିଟଇ ॥ ବ୍ରାହ୍ମଣୀ ବଚନ ଶୁଣି ବିକ୍ରମ ରାଜନ । ତାଳ ବେତାଳକୁ ଆଜ୍ଞା ଦେଲେ ସେହିକ୍ଷଣି ॥ ଆଜ୍ଞା ପାଇ ସେ ବେତାଳେ ଶୀଘ୍ର ଚଳିଗଲେ । ଭୂତ ସଙ୍ଗେ ଯୁଝି ତା'ର ପ୍ରାଣ ବିନାଶିଲେ ॥ ବ୍ରାହ୍ମଣୀ ତା' ଦେଖି ବଡ଼ ସନ୍ତୋଷ ଲଭିଲା । ବିକ୍ରମାଦିତ୍ୟଙ୍କୁ ବହୁ ଆଶୀର୍ବାଦ କଲା ॥ ତହୁଁ ନୃପ ପଚାରିଲେ ବ୍ରାହ୍ମଣୀକି ଚାହିଁ । ତୁମ୍ଭଙ୍କୁ ଏ ଭୂତ ନିତମାରେ କାହିଁ ପାଇଁ ॥ ବୋଇଲା ବ୍ରାହ୍ମଣୀ ତୁମ୍ଭେ ଶୁଣ ହେ ରାଜନ । ଏହି ଭୂତ ଅଟଇ ମୋ ପ୍ରାଣେଶ୍ୱର ଜାଣ ॥ ଯଉବନ ବେଳେ ମୁହିଁ ଉନ୍ମତ୍ତ ହୋଇଲି । ସ୍ୱେଚ୍ଛା ପ୍ରୀତି କରି ପରପୁରୁଷେ ମାତିଲି ॥ ତାହା ଜାଣି ପତି ମୋର ମହାକ୍ରୋଧ ବହି । ମୋ ମୁଖ ନ ଚାହିଁ ମଲା ଆତ୍ମଘାତୀ ହୋଇ ॥ ସେଦିନୁ ସେ ଭୂତ ହୋଇ ଥାଏ ଏହି ଘରେ । ରାତ୍ରଅର୍ଦ୍ଧ ହେଲେ ଆସି ନିର୍ଦ୍ଦୟେ ପ୍ରହାରେ ॥ ତୁମ୍ଭେ ଦୟା କରିବାରୁ ପାଇଲି ଉଦ୍ଧାର । ରତ୍ନ ସାତ ଗରା ଅଛି ନିଅ ଉପହାର ॥ ବିକ୍ରମ ନୃପତି ତାହାଠାରୁ ରତ୍ନ ନେଇ ॥ ପୁରନ୍ଦରେ ଡାକ ପାଶେ କହିଲେ ବୁଝାଇ । ତୁମ୍ଭ ପିତା ପୂର୍ବେ ଥିଲେ ବଡ଼ ଭାଗ୍ୟବାନ । ନିଜ କର୍ମ-ଦୋଷେ ତୁମ୍ଭେ ହୋଇଲ ନିର୍ଦ୍ଧନ ॥ ଏହି ସାତଗରା ରତ୍ନ ଦେଉଅଛି ନିଅ । ବେପାର ବାଣିଜ୍ୟ କରି ମହାସୁଖେ ରହ ॥ ଏହା କହି ପୁରନ୍ଦର ହାତେ ତାହା ଦେଲେ । ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲେ । ଧନ ପାଇ ନିଜ ଗୃହେ ଗଲା ସାଧୁ ପୁଅ । ଶୁଣିଲ ପରୋ-ପକାରୀ ବିକ୍ରମ ଚରିତ । ଏହେ ଭୋଜ ହେଲେ ତୁମ୍ଭେ ତାହାଙ୍କ ସମାନ । ସିଂହାସନେ ବସିବାକୁ କଲାଇବ ମନ ॥ ଏହା କହି ଶୂନ୍ୟ ମାର୍ଗେ ଗଲା ସେ ପୁତ୍ତଳି । ସିଂହ ଜଗନ୍ନାଥ କହେ ପୂର୍ବ କଥା ଭଳି ॥

—:•:—

## ପଞ୍ଚଦଶ ପୁତ୍ତଳିର କଥା

ତହିଁ ଆରଦିନ ଭୋଜ ଦାନ ପୁଣ୍ୟକରି । ବସିବାକୁ ସିଂହାସନେ ସକଳେ ହକାରି ॥ ଦେବ ପିତୃ ପୂଜା ସାରି ଅମୃତ ବେଳାରେ । ସିଂହାସନ ପାଶେ ଯାଇ ପ୍ରବେଶ ହୋଇଲେ ॥ ପଞ୍ଚଦଶ ପୁତ୍ତଳିକା ତାଙ୍କୁ ଦେଖି ହସି । ବୋଇଲା ହେ ଭୋଜ ଏଥି ନ ପାରିବ ବସି ॥ ବିକ୍ରମ ଆଦିତ୍ୟଙ୍କର ଏହୁ ସିଂହାସନ । ଏଥିରେ ବସି ସେ ରାଜ୍ୟ କରନ୍ତି ଶାସନ ॥ ତାଙ୍କ ପରି ଗୁଣ ଯେବେ ଅର୍ଜନ କରିବ । ଏ ସ୍ୱର୍ଗୀୟ ସିଂହାସନ ଉପରେ ବସିବ ॥ ପୁତ୍ତଳି ବଚନ ଶୁଣି ରାଜନ ବୋଇଲେ । କହ ତାଙ୍କ ଗୁଣ ତେବେ ଶୁଣିବି ମୁଁ ଭଲେ ॥ ଦେଲା ତହୁଁ ପଞ୍ଚଦଶ ପୁତ୍ତଳି ଉତ୍ତର । ବିକ୍ରମଙ୍କ ବଡ଼ଗୁଣ ପରଉପକାର ॥ ସିନ୍ଧୁ ନୃପ ନାମେ ଥିଲେ ଏକ ନରପତି । ବହୁ ବିପ୍ର ତାଙ୍କ ଦେଶେ ବାସ କରିଥାନ୍ତି ॥ ବିପ୍ର ଏକ ଥିଲେ ତାଙ୍କ ମଧ୍ୟେ ସୁପଣ୍ଡିତ । ସବେଶଜାଖ୍ୟ ନାମରେ ସେ ଅତ୍ୟନ୍ତ ବିଦିତ ॥ ଯାଦବାନନ୍ଦ ନାମକ କୁମର ତାଙ୍କର । ଗାୟକ ବିଦ୍ୟାରେ ସେହୁ ଅତି ଧୁରନ୍ଧର ॥ ସେ ଗୀତ ଗାଆନ୍ତେ ପଶୁ ହେଲେ ହେଁ ଶୁଣିବ । ଶୁଖିଥିବା ଗଛ ମଧ କଅଁଳ ଉଠିବ ॥ ସେ ଗ୍ରାମର ନାରୀଗଣ ଗୀତ ଶୁଣି ତା'ର । ଘର ବର ପିଲା ଛାଡ଼ି ହୁଅନ୍ତି ବାହାର ॥ ଏପରି ଘଟଣା ନିତି ଘଟିବାରୁ ଦେଖି । ଗ୍ରାମବାସୀମାନେ ହେଲେ ଅତିଶୟ ଦୁଃଖୀ ॥ ଗୁହାରି କଲେ ସେ ରାଜାଆଗେ ସବୁ ଯାଇ । ଆମ୍ଭର ଆପତ୍ତି ଶୁଣ ଆହେ ନରସାଇଁ ॥ ଦାଣ୍ଡରେ ଯାଦବାନନ୍ଦ ଗାଉଥିଲେ ଗୀତ । ଲଜ୍ଜା ଛାଡ଼ି କୁଳବଧୂ ମିଳନ୍ତି ତ୍ୱରିତ ॥ ତାହା ଯୋଗେ ସମସ୍ତଙ୍କ ମହତ୍ତ୍ୱ ସରଇ । ଏ ରାଜ୍ୟ ଭିତରୁ ତାକୁ ଦିଅ ଘଉଡ଼ାଇ ॥ ନୋହିଲେ ସେ ରହୁ ଆମ୍ଭେ ଯିବୁ ଅନ୍ୟ ଦେଶ । ସୁବିଚାର କରି ଆଜ୍ଞା ଦିଅ ହେ ନରେଶ ॥ ଏହା ଶୁଣି

ରାଜା ତାଙ୍କୁ ପାଶେ ଡକାଇଲେ । ଗୀତ ଗାଇବାକୁ ତାଙ୍କ ଆଗେ ଆଜ୍ଞା କଲେ ॥ ରାଜାଙ୍କ ଆଦେଶ ପାଇ ଯାଦବ ବ୍ରାହ୍ମଣ । ବୀଣାସଙ୍ଗେ ତାଳ ଦେଇ କରନ୍ତେ ଗାୟନ ॥ ଶୁଣି ଶୁଣି ପ୍ରେମଭୋଳେ ରାଜା ମୋହ ଗଲେ । ଜଳ ସିଞ୍ଚି ମନ୍ତ୍ରୀଗଣ ଚେତା କରାଇଲେ ॥ ଚେତା ପାଇ ନରପତି କୋପମନ ହୋଇ । ସେକ୍ଷଣି ରାଜ୍ୟରୁ ତାଙ୍କୁ ଦେଲେ ଘଉଡ଼ାଇ ॥ ଯାଦବ ଚଳାଇ ଯାଇ ବହୁ ଦୂର ଦେଶେ । ରାଜା ଘରେ ଚହଞ୍ଚିଲା ରଜନୀ ପ୍ରବେଶେ ॥ ସେ ରାଜାଙ୍କ ଉଆସରେ ହେଉଥିଲା ନୃତ୍ୟ । ତା ଶୁଣି ଯାଦବାନନ୍ଦ ଗାଇଲା ସଙ୍ଗୀତ ॥ ତାହା ଶୁଣି ଦ୍ୱାରପାଳ ନୃପତି ସ୍ମମୁରେ । ଜଣାଇଲା ଗୁଣୀ ଏକ ଗାଉଛି ଦୁଆରେ ॥ ଦ୍ୱାରୀ ବାକ୍ୟ ଶୁଣି ରାଜା ଡକାଇ ତାହାଙ୍କୁ । ଆଦେଶିଲେ ବୀଣା ବାଇ ଗୀତ ଗାଇବାକୁ ॥ ତା ଶୁଣି ଯାଦବାନନ୍ଦ କଲା ଗାୟନ । ଗୀତ ଶୁଣି ପ୍ରେମେ ଭୋଳ ହେଲେ ନରରାଣ ॥ ହାନି ଲାଭ କଥା ନୃପ ଜାଣି ନ ପାରଲେ । ନିଜହାତୁ କାଢ଼ି ତାଙ୍କୁ ରତ୍ନ ମୁଦ୍ଦ ଦେଲେ ॥ ତାହାପରେ ଆସି ନୃତ୍ୟ କଲେ ବେଶ୍ୟାଗଣ । ଅଙ୍ଗଭଙ୍ଗୀ ଦେଖାଇଣ ଭୁଲାଇଲେ ମନ ॥ କାମକାନ୍ତା ନାମେ ଏକ ବେଶ୍ୟା ଥିଲା ତହିଁ । ରୂପ ଗୁଣେ ସ୍ୱର୍ଗବେଶ୍ୟା ସମ ହେବେ ନାହିଁ ॥ ନୃତ୍ୟ ତାର ଦେଖି ତୋଷେ ସେ ଯାଦବାନନ୍ଦ । ରାଜା ଦେବା ମୁଦ୍ଦ ତାଙ୍କୁ ଦେଲା ବହୁ ମୋଦ ॥ ତାହା ଦେଖି ନରପତି କୋପ ବହି ମନେ । ଯାଦବକୁ ତଡ଼ଦେଲେ ସେଠାରୁ ତକ୍ଷଣେ ॥ ଯାଦବ ନୃପତି ଭୟେ କିଛି ଦୂର ଗଲା । ସେହି କାମକାନ୍ତା ଘରେ ଗୁପତେ ରହିଲା ॥ ଗାନ୍ଧାରରେ ସେ ଦୁହେଁ ତ ନିପୁଣ ଅଟନ୍ତି । ଦୁହେଁ ତହିଁ ତହିଁ ହେଲେ ବଢ଼ି ଗଲା ପ୍ରୀତି ॥ ପ୍ରେମଭୋଳେ ଦୁହେଁ ଯାକ ଥିଲେ ଗୁପ୍ତେ ରହି । ଯାଦବ ବୋଇଲା ଧନେ ଶୁଣ ପ୍ରିୟସହି ॥ ହୋଇଛନ୍ତି ମୋହଠାରେ

ରଜା କୋପଚିତ୍ତ । ରହିବା ତୋପାଶେ ମୋର ନୁହଇ ଉଚିତ ॥ ଏହା କହି ସେ ଯାଦବ ତହୁଁ ଚଳିଗଲା । ଉଜ୍ଜ୍ୱଳ ନଗରେ ଯାଇ ପ୍ରବେଶ ହୋଇଲା ॥ ବିକ୍ରମଙ୍କ ସିଂହଦ୍ୱାରେ କଲା ବସି ଗାନ । ଅନ୍ତଃପୁରେ ଥାଇ ଶୁଣି ନୃପ ପ୍ରୀତ ମନ ॥ ସିଂହଦ୍ୱାରେ ଆସି ପୁଣି ଗାୟନ ଶୁଣିଲେ । ପ୍ରଶଂସା କରିଣ ତାକୁ ପାଶେ ରଖାଇଲେ ॥ ବନେ ନରପତି ତାକୁ ବସାଇ ପାଶରେ । ପଚାରନ୍ତେ ଦୁଃଖ ସୁଖ କଥା ପ୍ରସଙ୍ଗରେ ॥ କହିଲା ଯାଦବାନନ୍ଦ ତାର ଗତକଥା । ଯାହା ଯାହା ହୋଇଥିଲା ପୂର୍ବର ବ୍ୟବସ୍ଥା ॥ କହୁଁ କହୁଁ କାମକାନ୍ତା ମନରେ ପଡ଼ିଲା । ଦୁଃଖରେ ତା ନୟନରୁ ଲୋତକ ଝରିଲା ॥ ପ୍ରବୋଧି ନୃପତି ତାକୁ କାରଣ ବୁଝିଲେ । ସତ୍ୟ କରି ନରପତି ବୁଝାଇ କହିଲେ ॥ ହେ ଯାଦବାନନ୍ଦ ତୁମ୍ଭେ ଛାଡ଼ ମନୁ ଚିନ୍ତା । ଆଣାଇ ଦେବି ମୁଁ ନିଶ୍ଚେ ସେହି କାମକାନ୍ତା ॥ ଏହା କହି ନେଇ ବିପ୍ରକୁ ରଖିଲେ ପାଶରେ । ଆଜ୍ଞାପତ୍ର ଲେଖି ଦେଲେ ଚରଗର୍ବି ହସ୍ତରେ ॥ ଚରଗର୍ବି ସେ ଲେଖା ନେଇ ବେଗେ ଚଳିଗଲା । ସେ ଦେଶର ନୃପତିଙ୍କ ହସ୍ତେ ଅରପିଲା ॥ ଫିଟାଇ ସେ ପତ୍ର ପଢ଼ି ଜାଣିଲେ ନରେଶ । ବିକ୍ରମ ଆଦିତ୍ୟ ତାଙ୍କୁ ଦେଇଛି ଆଦେଶ ॥ ଲେଖିଛି ସେ କାମକାନ୍ତା ଅଛି ତୁମ୍ଭ ଦେଶେ । ଆଜ୍ଞା ମାନି ପଠାଇବ ତାକୁ ଆମ୍ଭ ପାଶେ । ନୋହିଲେ ଲାଗିବ ନିଶ୍ଚେ ତୁମ୍ଭ ସଙ୍ଗେ ଯୁଦ୍ଧ । ପଢ଼ୁ ପଢ଼ୁ ନରପତି ବୋଲେ ହୋଇ କ୍ରୁଦ୍ଧ ॥ ଆରେ ଦୂତ କହ ଯାଇ ତୋହର ରଜାକୁ । ଯୁଦ୍ଧ ହେଲେ ହେଉ ଆମ୍ଭେ ନ ଡରୁ ତାହାକୁ ॥ ଆମ୍ଭରାଜ୍ୟ ତାହାର ତ ନୁହଇ ଅଧୀନ । ଆମ୍ଭେ କିପାଁ ତା ଆଜ୍ଞାକୁ କରିବୁ ପାଳନ ॥ ବେଗେ ଯାଇ କହ ଦୂତ ବିକ୍ରମାଦିତ୍ୟକୁ । ଅଛି ତାର କେତେବଳ ଆସୁ ସମରକୁ ॥ କଟୁବାକ୍ୟ ଏହିପରି କହନ୍ତେ ସେ ନୃପ ॥ ଶୁଣି ଫେରିଗଲା ଦୂତ

ମନେ ବହି ତାପ ॥ ବକ୍ରମ ଆଦିତ୍ୟ ପାଶେ ପରବେଶ ହେଲା । କରଯୋଡ଼ ସେ ସକଳ ବୃତ୍ତାନ୍ତ କହିଲା ॥ ଶୁଣି ସେ ବକ୍ରମାଦିତ୍ୟ ସଜାଇ ସଇନ । ଯାଦବ ସଙ୍ଗରେ ବିଜେ କରିଲେ ବହନ ॥ କାମକାନ୍ତା ବାରାଙ୍ଗନା ଥିଲା ଯେ ରାଜ୍ୟରେ । ହୈନ୍ୟ ଘେନି ନରପତି ମିଳିଲେ ସେଠାରେ ॥ ଶିବିର ପକାଇ ନୃପ ରଖିଲେ ସଇନ ॥ ଅର୍ଦ୍ଧରାତ୍ରେ ଆରମ୍ଭିଲେ ଗୁପତଭ୍ରମଣ ॥ ସୌଦାଗର ବେଶ ଧରି ଜାଃଣଙ୍କ ମନରେ । କାମକାନ୍ତା ଗୃହେ ନୃପ ଜାଣ୍ଟି ନ୍ତେ ପଶିଲେ ॥ ଚିନ୍ତିତ ମନରେ କାମକାନ୍ତା ପଲ୍ୟଙ୍କରେ । ବସିଥିଲା ରାଷ୍ଟ୍ରଭାଷା ନୃପ ଆରମ୍ଭିଲେ ॥ ଦେଉଅଛୁ ଲକ୍ଷେ ଟଙ୍କା ହିଅ ତୋର ଦେହ । ବୋଇଲା ସେ ନାଗର ହେ ସେ କଥା ନ କହ ॥ ଯାଦବାନନ୍ଦ ବିହୁନେ ଆନେ ନ ଭଜିବି । ଜଞ୍ଜାଳ ନ କର ମୋତେ ଦେହ ମୁଁ ନ ଦେବି ॥ ଲକ୍ଷେ ଗୁଡ଼ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ଦେଲେ । ଯାଦବ ବ୍ୟତୀତ ଅନ୍ୟେ ନ ଟଳିବ ତିଳେ ॥ ତାହା ଶୁଣି ବୋଲନ୍ତି ସେ ଉଜ୍ଜ୍ୱଳ ନୃପତି । ରାହକ ଶୁଅାଅ ମୋତେ ସୁନ୍ଦରୀ ତୋ ଜତି ॥ ନଷ୍ଟେ ଦେବି ଲକ୍ଷେ ଟଙ୍କା ମିଥ୍ୟା କହୁ ନାହିଁ । ତାହାଶୁଣି କାମକାନ୍ତା କହେ ଦୟାବହି ॥ ଶୁଣ ହେ ରସିକ ଯେବେ ମୋ ଘରେ ରହିବ । କେବଳ ମୋ ପଲଙ୍କରେ ସୁଖେ ବସିଥିବ ॥ ମାତ୍ର ମୋ ଦେହରେ କେବେ ଦେବନାହିଁ ହସ୍ତ । ଶୁଣି ତା'କଥାରେ ନୃପ ହୋଇଲେ ସମ୍ମତ ॥ କାମକାନ୍ତା ସହିତରେ ବସିଲେ ପଲଙ୍କେ । ହାସ୍ୟ ପରିହାସ କଲେ ନାନା କଉତୁକେ ॥ ପରିହାସ ରସ ବେଳେ ବକ୍ରମ ମିହିର । କାମକାନ୍ତା କୁଚ ପରେ ପକାଇଲେ କର ॥ ତା' ଦେହରେ ରାଜାଙ୍କର ଲାଗିବାରୁ ହସ୍ତ । କାମକାନ୍ତା ସେହିକ୍ଷଣି ହୋଇଲା ମୂର୍ଚ୍ଛିତ ॥ ତାହା ଦେଖି ରାଜା ଜଳ ସିଞ୍ଚି ତା' ମୁଖରେ । ପୁଣି ବିଞ୍ଚଣାରେ ବିଞ୍ଚି ଚେତା କରାଇଲେ ॥ ପୃଚ୍ଛିଲେ ବକ୍ରମ ନୃପ ତା ମୁଖକୁ ରୁହିଁ । ହାତ ମୋର

ଲାଗୁଁ ମୂର୍ଚ୍ଛା ଗଲୁ ଗୋ କପାଇଁ ॥ ତହିଁର କାରଣ କହ ବୁଝାଇ ତୁରିତ । ବୋଲେ କାମକାନ୍ତା ଶୁଣ କହୁଅଛୁ ସତ୍ୟ ॥ ଯାଦବାନନ୍ଦ ମୋ ଦେହେ ଅଧିକାରୀଅଟେ । ସବୁବେଳେ ମନ ମୋର ତା ପାଦରେ ଖଟେ ॥ ତେଣୁ ଅନ୍ୟଠାରେ ମୋର ନ ବଳଇ ମନ । ସେଥିପାଇଁ ଏହା ହେଲା ସତ୍ୟ ଏବଚନ ॥ ଏ କଥାକୁ ଶୁଣି ବିଚାରିଲେ ନରପତି । ଧନ୍ୟ ଏହି ଦୁଇ ପ୍ରାଣୀ ଧନ୍ୟ ତାଙ୍କ ପ୍ରୀତି ॥ ଏହା ଭାବି ନୃପବର ଉଠି ପ୍ରଭାତରେ । ଶିବିରକୁ ଗଲେ ତାହା କେହି ନ ଜାଣିଲେ ॥ ସାରି ପ୍ରାତଃକୃତ୍ୟ ବିଧି ସେ ରାଜାଧିମୀଶ । ପଠାଇଲେ ଶ୍ରୀବତ୍ସ ଦୂତ ହାତେ ନୃପ ॥ ଯେ ଆଜ୍ଞା ବୋଲିଣ ଦୂତ ଚଳିଗଲା । ସେହି ଦେଶ ନରେଶଙ୍କ ପାରୁଶେ ମିଳିଲା ॥ ଯଥାମାନ୍ୟ କରି ତାଙ୍କୁ କହଇ ସେ ଦୂତ । ହେ ରାଜନ ଶୁଣ ମୋର କହିବା ବୃତ୍ତାନ୍ତ ॥ ଉଜ୍ଜୟିନୀନଗର ରାଜା ବିକ୍ରମ ମିହିର । ସମସ୍ତ ଭୂମିରେ ଖ୍ୟାତ କୀର୍ତ୍ତି ଯାହାଙ୍କର ॥ ପ୍ରୀତିପଣେ କହିଛନ୍ତି ବଚନକୁରେ ସେହି । ସେ କହିବା କଥା ଏବେ କହୁଅଛୁ ମୁହିଁ ॥ ବାରନାରୀଟାଏ ଲାଗି ଲଗାଇଲେ ବାଦ । ଯଶ ପାଇବା କି ଆମ୍ଭେକରି ଘୋର ଯୁଦ୍ଧ ॥ ଯୁଦ୍ଧ ହେଲେ ଜୟ ପରାଜୟ ତ ନିଶ୍ଚିତ । ମାତ୍ର ସ୍ତ୍ରୀଟେ କଥାଲାଗି ସୈନ୍ୟ ହେବେ ହତ ॥ ନ ହେଲେ ସେ ବାରନାରୀ ନିଶ୍ଚେ ଯୁଦ୍ଧ ହେବ । ହା'ନ ଲାଭ ଭଲ ମନ୍ଦ ପରେ ଜଣାଯିବ ॥ ଏହି ସବୁ କଥା ଭାବ ଆପଣା ମନରେ । ଯାହା ତୁମ୍ଭ ଇଚ୍ଛା କହ ଏ ଦୂତ ମୁଖରେ ॥ ଦୂତ ମୁଖୁଁ ଶୁଣି ଏହା ଗଲେ ସେ ନୃପତି । ମନ୍ତ୍ରୀଗଣ ସଙ୍ଗେ ବସି ବିଚାର କରନ୍ତି ॥ ବିଚାରରେ ସ୍ଥିର ହେଲା ଏକ ବେଶ୍ୟାଲାଗି । ବଇରି ଅର୍ଜିବା କପାଁ ବୃଥାଟାରେ ରାଗୀ ॥ ଯେବେ ମାଗୁଛନ୍ତି ଏବେ ନିଅନ୍ତୁ ତାହାକୁ । ଏହାଭାବି ଡକାଇଲେ ସେ ବାରନାରୀକୁ ॥ ବେଶ କରାଇଲେ ତାକୁ ନାନାଭୂଷଣରେ । ବିକ୍ରମ ଆଦିତ୍ୟ ପାଶେ

ପଠାଇଲେ ଖରେ ॥ ବକ୍ରମ ନୃପତ ତାକୁ ପାଇ ହେଲେ ତୁଷ୍ଟ । ଆଦେଶିଲେ ସୈନ୍ୟଗଣେ ଦେଶକୁ ଲେଉଟ ॥ ଡକାଇଣ ତାହାପରେ ଯାଦବାନନ୍ଦଙ୍କୁ । କାମକାନ୍ତା ବାରନାସ୍ତ ଅରପିଲେ ତାକୁ ॥ ପାଇଣ ଯାଦବ ତାକୁ ହେଲ ହୃଷ୍ଟମତ । ମିଳଗଲ ସତେ ଅବା ଇନ୍ଦ୍ରର ସମ୍ପତ୍ତି ॥ ଆନନ୍ଦରେ ପଥ ମଧ୍ୟେ ସବେ ଯାଉଥିଲେ । ଇଙ୍ଗିତରେ ଯାଦବକୁ ନୃପତ କହିଲେ ॥ ଶୁଣ ହେ ଯାଦବ ତୁମ୍ଭ କାମକାନ୍ତା ନାସ୍ତ । ହସିଗଲ ନଈ ସୁଏ ନ ଆସଇ ଫେର ॥ ପୁଣି ଆହା କହିବାରେ ଯାଦବ ବ୍ରାହ୍ମଣ । ସେହିଠାରେ ପଡ଼ିଗଲ ଛାଡ ଦେହୁଁ ପ୍ରାଣ ॥ ତାହା ଦେଖି ବସିଗଲେ ସବେ ଚିନ୍ତାକର । ଦେଖିଲ ତାହାକୁ ଆସି କାମକାନ୍ତା ନାସ୍ତ ॥ ମୃତ୍ୟୁ ତାର ଜାଣି ଆହା ଜୀବଧନ କହି । ତଳପଡିଲ ସେ ତଳେ ଜୀବନ ହରଇ ॥ ଏପର ଘଟଣା ଦେଖି ବକ୍ରମ ଆଦତ୍ୟ । ବସ୍ମରଲେ ମୋ ଲଗି ଏ ଦୁହେଁ ହେଲେ ମୃତ ॥ ଏହା ଭାବ ମନମଧ୍ୟେ ଆକୁଳତ ହେଲେ । ଦୁର୍ଗାଙ୍କର ପାଦ-ପଦ୍ମେମନେ ନବେଶିଲେ ॥ ଯୋଗାସନେ ରହି ମନ୍ତ୍ର ଜପିଲେ ଅନେକ । ହୋମକଲେ ଯଥାବିଧି ବସି ହନପାକ ॥ ହୋମ ଶେଷ ପରେ ଦେବା ପାଇଁ ବଳଭାଗ । କାଟିବାକୁ ନଜଶିର ଧଇଲେ ଖଡ଼ଗ ॥ ରାଜାଙ୍କର ଶୁଦ୍ଧମନ ଜାଣି ଜଗନ୍ମାତ । ତାଙ୍କପାଶେ ସେହିକ୍ଷଣି ହେଲେ ଉପସ୍ଥିତ ॥ ଧାଇଁକାରେ ନୃପହସ୍ତୁ ଖଡ଼୍ଗ ଧେନଗଲେ । ତାଙ୍କରୂପ ଦେଖି ରାଜା ବହୁ ସ୍ତୁତକଲେ ॥ ଭଗବତୀ ତୁଷ୍ଟହୋଇ ଯାଚ ଦେଲେ ବର । ସଦ୍ଭନସ୍ତେ ମାଗିଲେ ସେ ବକ୍ରମସିହ୍ନର ॥ ମୋହଠାରେ ତୁଷ୍ଟ ଯେବେ ହେଲେ ମହାମାୟୀ । ଏହିଶଙ୍କ ଦୁଇଗୋଟି ଦଅହେ ଜୀଆଇ ॥ ଅସ୍ତୁକହି ଭଗବତୀ ହେଲେ ଅନ୍ତର୍ଦ୍ଧାନ । ଉଠି ବସିଲେ ସେ ଦୁହେଁ ପାଇଣ ଜୀବନ ॥ ବକ୍ରମାଦତ୍ୟ ତା ଦେଖି ଚିନ୍ତା ଦୂର କର ॥ ପରବେଶ ହେଲେଯାଇ ଆପଣା ନଗରୀ ॥ ଯାଦବାନନ୍ଦଙ୍କୁ କାମକାନ୍ତା ସହିତରେ ।

ରଖାଇଲେ ଯତ୍ନ କରି ଆପଣା ରାଜ୍ୟରେ ॥ ଶୁଣିଲ ତ ଭୋଜ ନୃପ କପଟ ଚରିତ । କେତେ ପର ଉପକାରୀ ବିକ୍ରମ ଆଦିତ୍ୟ ॥ ତୁମ୍ଭେ ଯଦି ହୋଇପାର ତାଙ୍କର ସମାନ । ତେବେ ଯାଇ ଦୃଢ଼ଚିତ୍ତେ ବସ ସିଂହାସନେ ॥ ଏହା କହି ସ୍ୱର୍ଗପୁରେ ଗଲା ସେ ପୁତ୍ତଳୀ । ଜଗନ୍ନାଥ ସିଂହ ଏହା ଗୀତେ କହେ ଭଲି ॥

—୧୦ଃ—

## ଷୋଡ଼ଶ ପୁତ୍ତଳୀର କଥା

ଆଉଦିନେ ଭୋଜରାଜ ସାରି ନିତ୍ୟକର୍ମ । ବସିବାକୁ ସିଂହାସନେ କରନ୍ତେ ଉଦ୍ୟମ ॥ ଷୋଡ଼ଶ ପୁତ୍ତଳୀ କହେ ହୋଇ ହସହସ । ଆହେ ନରପତି ଏହା ଉପରେ ନ ବସ ॥ ବିକ୍ରମ ଆଦିତ୍ୟଙ୍କର ଏହି ସିଂହାସନ । ଏଥି ବସି କରନ୍ତି ସେ ପରଜା ପାଳନ ॥ ତାଙ୍କ ପରି ହେଲେ ତୁମ୍ଭେ ସିଂହାସନେ ବସ । ତା' ନ ହେଲେ ବସିବାକୁ ନ କର ସାହସ । ଏହା ଶୁଣି ଭୋଜନୃପ ବୋଇଲେ ଏ ଗୀର । ହେ ପୁତ୍ତଳୀ କହ ତେବେ ଚରିତ ତାଙ୍କର ॥ କହେ ପୁତ୍ତଳିକା ଶୁଣ ବିକ୍ରମ ଆଦିତ୍ୟ । ଉଜ୍ଜୟିନୀ ନଗରେ ଥିଲେ କରି ଆଧିପତ୍ୟ ॥ ଏକଦିନେ ସୈନ୍ୟ ସଖା ନେଇ ସଙ୍ଗତରେ । ନୃପ ପହୁଞ୍ଚିଲେ ପଦ୍ମ କେଟକୀ ଦ୍ୱୀପରେ ॥ ଯମକେତୁ ନାମେ ଥିଲେ ତହିଁର ରାଜନ । ବହୁବିଧ ବିଦ୍ୟାରେ ସେ ଅଟେ ସୁନିପୁଣ ॥ ଦେବାଳୟ ଏକ ତାଙ୍କ ସିଂହଦ୍ୱାରେ ଥାଏ । ଯୋଗୀ ଏକ ବାସକରି ସେମନ୍ଦିରେ ରହେ ॥ ସେ ଯୋଗୀଙ୍କ ପାଶେ ଯାଇ ବିକ୍ରମ ଆଦିତ୍ୟ । ବିଶ୍ୱାସରେ କଲେ ତାଙ୍କ ପାଦେ ପ୍ରଣିପାତ ॥ କଲ୍ୟାଣ ପାଞ୍ଚିଲେ ସେ ସନ୍ନ୍ୟାସୀ ରାଜାଙ୍କର । ପଚାରିଲେ ସବୁ ତାଙ୍କ ଦେଶ ହାଲଚାଲ ॥ ସକଳ ଚରିତ ନୃପ କହିଲେ ବୁଝାଇ ତାହାପରେ ପଚାରିଲେ ଶିରେ କର ଦେଇ ॥ ନ ଚିହ୍ନଇ ତୁମ୍ଭଙ୍କୁ ମୁଁ

ଆହେ ତପଶୀଳ । ମୋରାଜ୍ୟର କଥା ତୁମ୍ଭେ କପରି ଜାଣିଲ । ରାଜାଙ୍କ ମୁଖରୁ ଏହା ଶୁଣି ସେ ସନ୍ନ୍ୟାସୀ । ହସିଣ କହଇ ତାଙ୍କୁ ବହୁତ ପ୍ରଶଂସି ॥ ଯାଇଥିଲିଏକଦିନେ ରାଜ୍ୟକୁ ତୁମ୍ଭର । ପାଇଥିଲି ତୁମ୍ଭଠାରୁ ମାନ୍ୟ ବହୁତର ॥ ଅତି ଯତ୍ନକରି ମୋତେ ରଖାଇଲ ତୁମ୍ଭେ । ଅନ୍ନ ବସ୍ତ୍ରପାଇ ସୁଖେ ବଢାହେଲୁ ଆମ୍ଭେ ॥ ସେହିସବୁ କଥା ମନେ ଅଛଇ ମୋହର । ପୁଣ୍ୟବଳେ ଯାଇଅଛୁ ପାଶୋରି ତୁମ୍ଭର ॥ ପୁଣ୍ୟବନ୍ତ ଲୋକଙ୍କର ସେହିପରି ରୀତି । ଏପରି ପ୍ରଶଂଶାକଲେ ରାଜାଙ୍କୁ ବହୁତ ॥ ସ୍ନେହେ ପୁଣି ପଚ୍ଛରିଲେ ତାଙ୍କୁ ସେ ସନ୍ନ୍ୟାସୀ । ଦେଶ ଛାଡି ତୁମ୍ଭେ କପାଁ ହେଲ ପରଦେଶୀ ॥ କେଉଁଣେ ଯାହା ଶତ୍ରୁ କେହି ଆସିବ ତୁମ୍ଭର । କରିଅଛ ସେଥିପାଇଁ କହ କ ବିଚାର ॥ ଶୁଣିଣ ବିକ୍ରମାଦିତ୍ୟ ଯୋଗୀ ପାଦେ ପଡି । ଜଣାଇଲେ ଆନନ୍ଦରେ କର ଦୁଇ ଯୋଡ଼ି ॥ ଆହେ ଯୋଗୀବର ତୁମ୍ଭ ଆଶୀର୍ବାଦେ ମୁହିଁ । କେ କିସ କରିବ ବୋଲି ତଶ୍ଵାସ ନ ଯାଇ ॥ ଦଇବ ଘଟନା କେବେ ନୁହଇ ଅନ୍ୟଥା । ସେଥିପାଇଁ କହୁଛୁ ମୁଁ ଶୁଣ ଏକ କଥା ॥ ଚନ୍ଦ୍ରସେନ ନାମେ ଥିଲା ଏକ ନରପତି । କଳନା ନ ଯାଏ ତା'ର ଯେ ଧନ ସମ୍ପତ୍ତି ॥ ଭାର୍ଯ୍ୟା ନାମ ଜାଣ ତା'ର ଅଟଇ ସୁଶୀଳା । ମହାସତୀ ପତିବ୍ରତା ଅଟଇ ସେ ବାଳା ॥ ପୁତ୍ର କନ୍ୟା ନ ଥିବାରୁ ସେ ରାଜ ଦମ୍ପତ୍ତି । ଦେଇଥାନ୍ତି ଇଷ୍ଟଦେବ ପୂଜନରେ ମତି ॥ ଆଶ୍ରୁ କୁଡ଼ା ବୋଲି ଜ୍ଞାତି କୁଟୁମ୍ବେ ମିଳିଲେ । ମୁଖ ନ ରୁହିଁବୁ କହି ଦେଶୁ ତଡି ଦେଲେ ॥ ଦେଶ ଛାଡି ପଳାଇଲେ ରାଜା ରାଣୀ ଦୁଇ ! ବନମଧ୍ୟେ ବୃକ୍ଷମୂଳେ ବସିଲେ ସେ ଯାଇ ॥ ଖାଇବାକୁ ନ ପାଇ ସେ ହରିଙ୍କି ଭଜିଲେ । ତିନିଦିନ ତିନିରାତି ଉପାସେ ରହିଲେ । ତାହାପରେ ଚନ୍ଦ୍ରସେନ ଭାରିଯା ସହିତ । ଭିକ୍ଷା ମାଗିବାକୁ ଗଲେ ଦୁଃଖରେ ଅତ୍ୟନ୍ତ ॥ ଦଇବବଳରୁ ବଳ ନାହିଁ ଆଉ ବଳ । ମରିଗଲେ ସେହିଦିନ ସେ ଦେଶ ଭୂପାଳ ॥

ପୁଷ୍ପ ଭାଇ ସହୋଦର ସେ ରାଜାର କେହି । ନ ଥିଲେ ନୃପ ସିଂହାସନେ ବସିବାର ପାଇଁ ॥ ତାହା ଦେଖି ମନ୍ତ୍ରୀମାନେ ବସି ବିଚାରିଲେ । ସୁବର୍ଣ୍ଣ କଳସ ଆଣି ହସ୍ତୀକରେ ଦେଲେ ॥ ବେଶ କରି ସେ ହସ୍ତୀକି ଦେଶ ମଧ୍ୟେ ନେଇ । ବୁଲାଇଲେ ନରପତି ଖୋଜିବାର ପାଇଁ ॥ ତାହା ଦେଖି ପଞ୍ଚଭୂତେ କରନ୍ତି ବିଚାର । ଚନ୍ଦ୍ରସେନ ବୁଲୁଛନ୍ତି ପାଇ କଷ୍ଟ ଘୋର ॥ ଛାଡ଼ିଦେଇ ନିଜରାଜ୍ୟ ସଙ୍ଗେ ଘେନି ରାଣୀ । ନୃପତାଙ୍କୁ କରାଇବା ଆମ୍ଭେ ଏବେ ଆଣି ॥ ଏହା ଭାବି ଭୂତମାନେ ବେଗେ ଧାଇଁ ଗଲେ । ହସ୍ତୀ ଦେହେ ପଶି ଚନ୍ଦ୍ରସେନକୁ ଖୋଜିଲେ ॥ ଚନ୍ଦ୍ରସେନ ନୃପ ଭିକ୍ଷା ମାଗୁଥିଲେ ଯହିଁ । ରାଜହସ୍ତୀ ସେହିଠାରେ ପହଞ୍ଚିଲା ଯାଇ ॥ ଚନ୍ଦ୍ରସେନ ମସ୍ତକରେ କଳସ ଢାଳିଲା । ରାଜାରାଣୀ ଦୁହିଙ୍କି ସେ ପୃଷ୍ଠେ ବସାଇଲା ॥ ଛାଡ଼ିଦେଲା ନେଇ ତାଙ୍କୁ ରାଜସିଂହାସନେ । ତହୁଁ ହସ୍ତୀ ଚାଲିଗଲା ନିଜ ବାସସ୍ଥାନେ ॥ ସେହି ଦେଶେ ଚନ୍ଦ୍ରସେନ ନୃପତି ହୋଇଲେ । ପାତ୍ର ମନ୍ତ୍ରୀଗଣେ ଆସି ପାଦରେ ଭେଟିଲେ ॥ ସେହି ପାତ୍ର ମନ୍ତ୍ରୀ ହସ୍ତେ ରାଜ୍ୟଭାର ଦେଇ । ଚନ୍ଦ୍ରସେନ ଈଶ୍ୱରଙ୍କ ସେବା କରୁଥାଇ ॥ କେତେଦିନ ଏହିପରି ଗଲାର ଅନ୍ତରେ । ଅରି ପାଞ୍ଚ ଦେଶ ରାଜା ମିଳି ଏକତ୍ରରେ ॥ ଚନ୍ଦ୍ରସେନ ନୃପ ସଙ୍ଗେ କରିବାକୁ ଯୁଦ୍ଧ । ତାଙ୍କ ରାଜଦାଣ୍ଡ ଆସି କଲେ ଅବରୋଧ ॥ ପାତ୍ର ମନ୍ତ୍ରୀ ଜଣାଇଲେ ସେ ଚନ୍ଦ୍ରସେନଙ୍କୁ । ଆସିଛନ୍ତି ଶତ୍ରୁଗଣେ ଯୁଦ୍ଧ କରିବାକୁ ॥ ରାଜ ଦଣ୍ଡ ରୁନ୍ଧିଲେଣି ଗଡ଼େ ପଶିବେ ପଶି । ଆଜ୍ଞା ଦିଅ ତାଙ୍କୁ ଆମ୍ଭେ ପକାଇବୁ ନାଶି ॥ ଶୁଣି ବୋଲେ ଚନ୍ଦ୍ରସେନ ନ କର ସମର । ଶ୍ରୀହରି ଅଛନ୍ତି ରକ୍ଷା କରିବେ ଆମ୍ଭର ॥ ଭଜ ସେ ହରିଙ୍କି ତୁମ୍ଭେ ଆକୁଳ ନହୁଅ ॥ କରିବେ ସେ ନିଶ୍ଚେ ରକ୍ଷା ଧୈର୍ଯ୍ୟ ଧରି ରହ ॥ ଏହା ଶୁଣି ମନ୍ତ୍ରୀମାନେ ନୀରବ ହୋଇଲେ । ସେହିକ୍ଷଣି ପଞ୍ଚଭୂତେ ଆସି ପହଞ୍ଚିଲେ ॥ ବୋଇଲେ ହେ ନରପତି ବିସ୍ମର ନ କର । ଯାଉଅଛୁଁ

ଶତ୍ରୁବଳ ମାରିବୁ ତୁମ୍ଭର ॥ ଏହା କହି ପଞ୍ଚଭୂତେ ଧାଇଁଗଲେ ବେଗେ । ଶତ୍ରୁ ସୈନ୍ୟ ମଧ୍ୟେ ପଶି ମାଇଲେ ସେ ରାଗେ ॥ ନ ହରଇ ଶସ୍ତ୍ର ବର୍ଷି କେହି ମାରିବାର । ଆକାଶରୁ ଖଣ୍ଡା ପଡ଼ି କାଟୁଥାଏ ଶିର । ଅଲୌକିକ ମାଡ଼ ସେହି ଭୂତଙ୍କ ମାରେଣି । ଶତ୍ରୁ ସୈନ୍ୟ ପଳାଇଲେ ଭୟେ ପ୍ରାଣ ଘେନି । ଦେଖି ଚନ୍ଦ୍ରସେନ ନୃପ ଆନନ୍ଦ ହୋଇଲେ । ଡକାଇ ଭୂତଙ୍କୁ ରାଜା ପ୍ରଶ୍ନ ପଚାରିଲେ ॥ କି କାରଣେ ମୋହପାଇଁ କଲ ତୁମ୍ଭେ ରଣ । ସତ୍ୟ କର ତାହା ମୋର ଆଗରେ ବଖାଣ ॥ ଉତ୍ତରିଲେ ଭୂତମାନେ ଶୁଣ ନରନାଥ । କହୁଅଛୁ ଏବେ ଆମ୍ଭ ପୂର୍ବର ଚରିତ ॥ ମାଛ ଦେହ ଧରି ଜଳେ ମହାକଷ୍ଟେ ଥିଲୁ । ତୁମ୍ଭର ଦୟାରୁ ଆମ୍ଭେ ମୁକତି ପାଇଲୁ ॥ ସେହିଦିନୁ କରିଥିଲୁ ପ୍ରତିଜ୍ଞା ସେଠାରେ । କରିବୁ ସାହାଯ୍ୟ ବୋଲି ତୁମ୍ଭ ବିପଦରେ ॥ ଏବେ ତୁମ୍ଭ ବିପଦକୁ ଦେଖିକରି ଆସି । ମୁହୂର୍ତ୍ତକେ ପକାଇଲୁ ଶତ୍ରୁ ସୈନ୍ୟ ନାଶି ॥ ଆହେ ତପୀ ମୂଢଜନେ ନ ପାରନ୍ତି ଜାଣି । ସମସ୍ତଙ୍କ ରକ୍ଷାକାରୀ ସେହି ଚକ୍ରପାଣି ॥ ଏହା ଶୁଣି ସେ ସନ୍ନ୍ୟାସୀ ସନ୍ତୋଷ ଲଭିଲେ । ଚିନ୍ତାମଣି ଗୋଟିଏ ସେ ବିକ୍ରମଙ୍କୁ ଦେଲେ ॥ ମଣି ପାଇ ନରପତି ହୋଇଲେ ଆନନ୍ଦ । ଗଲେ ତାଙ୍କ ନିଜ ଦେଶେ ଘେନି ସୈନ୍ୟବୃନ୍ଦ ॥ ଯାଉଁ ଯାଉଁ ବାଟେ ଏକ ଦରିଦ୍ର ବ୍ରାହ୍ମଣ । ତାଙ୍କୁ ଆସି କହିଲେ ସେ ହୋଇ ଅତି ଦୀନ ॥ ଆହେ ନୃପ ମୂର୍ଦ୍ଧି ବଡ଼ ଲକ୍ଷ୍ମୀ ଅଟଇ । ଅନ୍ନହୀନେ ବୁଲୁଅଛି ମାଗି ଦେହି ଦେହି ॥ ବିକ୍ରମ ଆଦିତ୍ୟ ତାର କଷ୍ଟ ନ ସହିଲେ । ସେହି ଚିନ୍ତାମଣି ଗୋଟି ତାଙ୍କୁ ଦାନ କଲେ ॥ ସେ ବ୍ରାହ୍ମଣ ଚିନ୍ତାମଣି ଘେନିକରି ଗଲା । ମଣି ପ୍ରସାଦରୁ ଚିନ୍ତା ତା'ର ଦୂର ହେଲା ॥ ଆହେ ଭୋଜ ତୁମ୍ଭେ ତାଙ୍କ ସମାନ ହୋଇଲେ । ବସିବ ଏ ସିଂହାସନେ କହୁଅଛି ଭଲେ ॥ ଏହା କହି ସେ ପୁତ୍ତଳି ସିଂହାସନ ଛାଡ଼ି । ଗଲା ସ୍ୱର୍ଗପୁରକୁ

ସେ ଆକାଶରେ ଉଡ଼ ॥ ଷୋଡ଼ଶ ପୁତ୍ତଳ କଥା ହେଲା ସମାପତ ।
ସିଂହ ଜଗନ୍ନାଥ କହେ ଶମ୍ଭୁ ରମାକାନ୍ତ ॥

———

## ସପ୍ତଦଶ ପୁତ୍ତଳର କଥା

ପରଦିନ ନିତ୍ୟକର୍ମ ସାରି ଭୋଜରାଣ । ଅତିଥିଙ୍କି ଅନ୍ନ ଦେଇ ବିପ୍ରେ ଦେଲେ ଦାନ ॥ ବସିବାକୁ ସିଂହାସନେ ଗଲେ ହୃଷ୍ଟହୋଇ । ଦେଖି ତାଙ୍କୁ ସପ୍ତଦଶପୁତ୍ତଳ ବୋଲଇ ॥ ଶୁଣ ଆହେ ଭୋଜ ରାଜ ମୋ ବଚନ ବାରେ । ବସି ନ ପାରିବ ତୁମ୍ଭେ ଏ ସିଂହାସନରେ ॥ ଦେବତାଙ୍କ ସିଂହାସନ ଜାଣ ଅଟେ ଏହି । ବିକ୍ରମ ଆଦିତ୍ୟେ ଇନ୍ଦ୍ର ଏହା ଥିଲେ ଦେଇ ॥ ସେ ଯେପରି ପୁଣ୍ୟବାନ ପରଉପକାରୀ । ତାଙ୍କ ସମ ହେଲେ ତୁମ୍ଭେ ବସ ଯାଇକରି । ତାହାଶୁଣି ଭୋଜନୃପ ଆନନ୍ଦେ ପୁଚ୍ଛିଲେ । କହ ତେବେ ତାଙ୍କ ଗୁଣ ଶୁଣିବି ମୁଁ ଭଲେ ॥ ପୁତ୍ତଳ ବୋଇଲା ଶୁଣ ବିକ୍ରମ ଆଦିତ୍ୟ । ବାହାରିଲେ ଥରେ ଦିଗ ବିଜୟ ନିମିତ୍ତ ॥ ଚତୁରଙ୍ଗ ସୈନ୍ୟ ତାଙ୍କ ସଙ୍ଗତରେ ନେଲେ । ଯୁଦ୍ଧେ ଜିଣି କେତେ ଦେଶ କରଗତ କଲେ ॥ କେତେ ନୃପ ଆସି ମଧ୍ୟ ପଶିଲେ ଶରଣ । କଲେ ପୁଣି ସେମାନଙ୍କୁ ଅଭୟ ପ୍ରଦାନ ॥ ଦିଗ୍‌ବିଜୟ ସାରି ପୁଣି ରାଜ୍ୟକୁ ଆଇଲେ । ମନ୍ତ୍ରୀମାନେ ରାଜ୍ୟ ହାଲଚାଲ ଜଣାଇଲେ ॥ କହିଲେ ମନ୍ତ୍ରୀଏ ପୁଣି ଆହେ ନରରାଣ । ପୂର୍ଣ୍ଣ ହୋଇଅଛି ଫୁଲପୁଷ୍ପେ ଉପବନ ॥ ବସନ୍ତର କାଳ ପୁଣି ପଡ଼ିଅଛି ଏବେ । ବିହାର କରନ୍ତୁ ତହିଁ ଇଚ୍ଛା ହୁଏ ଯେବେ ॥ ମନ୍ତ୍ରୀ ମୁଖୁଁ ଶୁଣି ରାଜା ରାଣୀ ସହିତରେ । ପ୍ରବେଶ ହୋଇଲେ ଯାଇ ସେ ଉପବନରେ ॥ ବନ ଶୋଭା ଦେଖି ମନେ ହୋଇଲେ ହରଷ । ଜଣାଇଲା ମନ୍ତ୍ରୀ ଯାଇ ତାହାଙ୍କର ପାଶ । ଶାର୍ଥ

କଣପିବ ମୁହିଁ ଆଜ୍ଞା ମୋତେ କର । ମନ୍ତ୍ରୀର ବଚନ ଶୁଣି ବନ୍ଦମ ମିହିର ॥ ଯାଅ ତୀର୍ଥ କରି ବୋଲି ଦେଲେ ବହୁ ବିତ୍ତ । ଧନ ପାଇ ମନ୍ତ୍ରୀବର ଚଳିଲ୍ଲ ତୁରିତ ॥ ଭ୍ରମି ନାନା ତୀର୍ଥ ପୁଣି ଦେଖି ବହୁ ଦେଶ । କୁଞ୍ଜଗଳ ଦେଶେ ମନ୍ତ୍ରୀ ହୋଇଲ୍ଲ ପ୍ରବେଶ ॥ ଥିଲେ ତହିଁ ମହାଶମ୍ଭୁ ପୂଜା କରି ତାଙ୍କୁ । ପ୍ରବେଶ କରିଲ୍ଲ ମନ୍ତ୍ରୀ ସେ ଗ୍ରାମ ମଧ୍ୟକୁ ॥ ସେ ଗ୍ରାମର କଟୁଆଳ ଆପଣା ଦୁଆରେ । ଟକମକ ଫୁଟାଉଛି ଘୃତ କରେଇରେ ॥ ତାହା ଦେଖି ମନ୍ତ୍ରିବର ପୁଚ୍ଛିଲେ କାରଣ । କଟୁଆଳ ଉତ୍ତରିଲ୍ଲ ଶୁଣ ମୋ ବଚନ ॥ ଆମ୍ଭ ଦେଶ ରାଜଜେମା ଅତ୍ୟନ୍ତ ସୁନ୍ଦରୀ । ଖୋଜନ୍ତେ ନ ମିଳେ ବର ତା'ର ସମସରି ॥ କରିଅଛି ରାଜକନ୍ୟା ଏହିପରି ପଣ । ପଡ଼ିବ ଯେ ଏହି ଘୃତଭାଣ୍ଡରେ ଡେଇଁଣ । ବରିବ ତାହାକୁ ନିଶ୍ଚେ ରାଜାର ଦୁହିତା । କଦାଚିତେ ଏହିକଥା ନୋହିବ ହେ ମିଥ୍ୟା ॥ ତାହା ଶୁଣି ମନ୍ତ୍ରିବର ଆପଣା ବୁଦ୍ଧିରେ । ସେ କନ୍ୟାକୁ ଦେଖିଲେ ଯେ ରହି ଗୋପନରେ ॥ ତା' ରୂପକୁ ଦେଖି ମନ୍ତ୍ରୀ ଜ୍ଞାନ ହରାଇଲ୍ଲ । ପୁଣି ଧୈର୍ଯ୍ୟଧରି ଦେହେ ଜ୍ଞାନ ଯେ ପାଇଲ୍ଲ ॥ ନ ରହି ସେଠାରେ ଆଉ ଗଲ୍ଲ ସେ ବେଗରେ । ଯଥାକାଳେ ପହଞ୍ଚିଲ୍ଲ ଉଜ୍ଜ୍ୱଳ ନଗରେ ॥ ଆନନ୍ଦେ ବିକ୍ରମାଦିତ୍ୟ ସମୀପକୁ ଗଲ୍ଲ । କୁଞ୍ଜଗଳ ଦେଶ କନ୍ୟା ବିଷୟ କହିଲ୍ଲ ॥ ଶୁଣି ନୃପ ସେ ମନ୍ତ୍ରୀକି ଧରିଲେ ସଙ୍ଗରେ । କେତେଦିନେ କୁଞ୍ଜଗଳ ଦେଶେ ପ୍ରବେଶିଲେ ॥ କଟୁଆଳ ପାଶେ ଯାଇ ପଚାରନ୍ତେ ତାକୁ । ପୂର୍ବପରି ବୃତ୍ତାନ୍ତ ସେ କହିଲ୍ଲ ନୃପଙ୍କୁ ॥ କଟୁଆଳ ମୁଖୁଁ ପଣ ଶୁଣି ନରପତି । ଡେଇଁ ପଡ଼ିଲେ ସେ ଘୃତ ଭାଣ୍ଡକୁ ତଡ଼ିତ ॥ ତନୁ ତାଙ୍କ ଜଳିଗଲ୍ଲ ତପତ ଘୃତରେ । ରାଜକନ୍ୟା ତାହା ଶୁଣି ଆଇଲ୍ଲ ସତ୍ୱରେ ॥ ଅମୃତ ମିଶ୍ରିତ ଜଳ ହସ୍ତରେ ଧରିଲ୍ଲ । ଶୀଘ୍ରେ ତାକୁ ନେଇ କରେଇରେ ପକାଇଲ୍ଲ ॥

ଅମୃତ ପ୍ରସାଦେ ରାଜା ପାଇ ଜୀବଦାନ । ଆପଣା ଶରୀର ଧରି ଉଠିଲେ ବହନ ॥ କରେଇରୁ ଆସି ଠିଆ ହେଲେ ନରବର । ପୂର୍ବ ଶତେ ଗୁଣ ତେଜ ଦିଶିଲା ତାଙ୍କର ॥ ରାଜକନ୍ୟା ତାହା ଦେଖି ବରମାଳା ଧରି । ଆସିଲା ସେ ନୃପତିଙ୍କୁ ପତି ଭାବେ ବରି ॥ ବୋଇଲେ ବିକ୍ରମାଦିତ୍ୟ ଶୁଣ ଆଗୋ ବାଳେ । ଏହି ବରମାଳା ଦିଅ ନାହିଁ ମୋର ଗଳେ ॥ ତପ୍ତ ଘୃତେ ପଡ଼ି ମୁହିଁ ହାରିଥିଲି ପ୍ରାଣ । ତୁମ୍ଭେ ଆସି ଦେଲ ମୋତେ ପୁଣି ଜୀବଦାନ ॥ ହୋଇଲ ଧର୍ମରେ ତୁମ୍ଭେ ଜନନୀ ମୋହର । ନୁହଇ ଉଚିତ ମୋତେ ତୁମ୍ଭେ ବରିବାର ॥ ଦେଖ ମୋର ସଙ୍ଗେ ଅଛି ଏହି ମନ୍ତ୍ରିବର । ଏହାର ଆମ୍ଭର ନାହିଁ କିଛି ଭିନ୍ନାଭିନ୍ନ ॥ ମାନି ମୋର ବୋଲ ମାଳ ଏହାଙ୍କ ଗଳାରେ । ଦିଅ ଆଗୋ ନାରୀବର ନିଶ୍ଚିନ୍ତ ମନରେ ॥ ରାଜକନ୍ୟା ତାହା ଶୁଣି ମନ୍ତ୍ରୀଙ୍କି ବରିଲା । ହସ୍ତ ଧରି ସେ ମନ୍ତ୍ରୀର ମଉନେ ରହିଲା ॥ ତାହା ଦେଖି ଆନନ୍ଦରେ ବିକ୍ରମ ନରେଶ । ସେ ଦୁହିଙ୍କି ସଙ୍ଗେ ଧରି ଗଲେ ନିଜଦେଶ ॥ କରାଇଲେ ବିଭା ତାଙ୍କୁ ଶୁଭ ଅନୁକୂଳେ । କନ୍ୟା ସେନି ମନ୍ତ୍ରୀବର ରହିଲେ କୁଶଳେ ॥ ବୁଝିଲ ତ ସେ ବିକ୍ରମ ପରଉପକାରୀ । କପରି ଅଟନ୍ତି ତୁମ୍ଭେ ହୁଅ ତାଙ୍କପରି ॥ ଏହା କହି ସେ ପୁତ୍ତଳି ଗଲା ସ୍ୱର୍ଗପୁରେ । ଜଗନ୍ନାଥ ସିଂହ କହେ ଭୋଜ ବାହୁଡ଼ିଲେ ॥

---

## ଅଷ୍ଟାଦଶ ପୁତ୍ତଳିର କଥା

ତହିଁ ଆରଦିନ ଭୋଜକରି ଦାନ ପୁଣ୍ୟ । ସଙ୍ଗତରେ ଧରି ପାତ୍ର ଅମାତ୍ୟଗଣ ॥ ବସିବାକୁ ସିଂହାସନେ ଯାନ୍ତେ ବେଗହୋଇ ଅଷ୍ଟାଦଶ ପୁତ୍ତଳିକା ବାରଣ କରଇ ॥ ଇଙ୍ଗିତରେ କହେ ଭୋଜ

ବାତୁଳ କି ତୁମ୍ଭେ । ଆସିଲ କିପରି ଭଲି ବସିବାକୁ ଦମ୍ଭେ ॥ ବିକ୍ରମ ଆଦିତ୍ୟଙ୍କର ଏହି ସିଂହାସନ । ବସିପାର ତାଙ୍କପରି ହେଲେ ଗୁଣବାନ ॥ ଏହା ଶୁଣି ଭୋଜନୃପ କହିଲେ ତାହାକୁ । ତାଙ୍କ ଗୁଣ ଜାଣିଥିଲେ କହ ହେ ଆମ୍ଭଙ୍କୁ ॥ ବିକ୍ରମାଦିତ୍ୟଙ୍କ ଗୁଣ ଶୁଣିବାର ପାଇଁ । ସବୁକାଳେ ମନେ ମୋର ଶ୍ରଦ୍ଧା ବଳୁଥାଇ ॥ ତାହା ଶୁଣି ସେ ପୁତଳି କହଇ ସଧୀରେ । ରାଜା ଥିଲେ ସେ ବିକ୍ରମ ଉଜ୍ଜୁଳ ନଗରେ ॥ ବସି ଏହି ସିଂହାସନେ ପାଳୁଥାନ୍ତି ପ୍ରଜା । ଶ୍ରୀ ଚନ୍ଦ୍ରଶେଖର ନାମେ ଅନ୍ୟ ଦେଶ ରାଜା ॥ ବିକ୍ରମାଦିତ୍ୟଙ୍କ ଶାଳୀ ଭାରିଯା ତାଙ୍କର । ଷଶାଶଏ କ୍ରୋଶ ରାଜ୍ୟ ଥାଏ ସେ ନୃପର ॥ ଦିନେ ଏକ ଭାଟ ତାଙ୍କ ନିକଟକୁ ଗଲା । ବିକ୍ରମାଦିତ୍ୟଙ୍କ ଯଶ ସେଠାରେ ଗାଇଲା ॥ ଶ୍ରୀଚନ୍ଦ୍ରଶେଖର ନୃପ ସେ କଥା ଶୁଣିଲେ । ବିକ୍ରମାଦିତ୍ୟଙ୍କ ପରି ହେବ ବିଚାରିଲେ ॥ କରି ଅନଶନ ବ୍ରତ କଲେ ଘୋର ତପ । ତାଙ୍କ କ୍ଳେଶ ଦେଖି ଦେବୀ ଗଲେଟି ସମୀପ । ପ୍ରସନ୍ନ ହୋଇଣ ଦେବୀ ବୋଲନ୍ତି ବଚନ । ହୋଇଲି ସନ୍ତୁଷ୍ଟ ନୃପ ମାଗି ବର ନେନ ॥ ତାହା ଶୁଣି ସେହି ରାଜା କହଇ ଉତ୍ସୁକେ । ବହୁତର ଧନ ମୋତେ ଦିଅ ଗୋ ଅମ୍ବିକେ ॥ ସେ ଧନକୁ ଦାନକରି ଦେବ ବିସ୍ତରରେ । ବିକ୍ରମାଦିତ୍ୟଙ୍କ ସମ ହେବି ଜଗତରେ ॥ ତାହା ଶୁଣି ଭଗବତୀ କହିଲେ ଏପରି । ଆମ୍ଭର ଆଜ୍ଞାକୁ ନୃପ ଧେନ ଦେଇକରି ॥ ଘଣ୍ଟେ ଘୃତ ପୂର୍ଣ୍ଣକରି ବସାଇ ଅଗ୍ନିରେ । ଫୁଟାଇବ ସେ ଘୃତକୁ ଅତି ପ୍ରଖରରେ ॥ ପଡ଼ିବ ତହିଁରେ ଯାଇ ନିତ୍ୟକର୍ମ ସାରି । ଖାଇବେ ଯୋଗିନୀ ତୁମ୍ଭ ମାଂସ ଶେଷ କରି ॥ ସେ ସମୟେ ପୁଣି ଆମ୍ଭେ ସେହିଠାକୁ ଯିବୁ । ତୁମ୍ଭଙ୍କୁ ଜିଆଇଁ ବହୁତର ଧନ ଦେବୁଁ ॥ ଏହିପରି ପ୍ରତିଦିନ କରୁଥିବ ତୁମ୍ଭେ । ତୁମ୍ଭଙ୍କୁ ଜିଆଇଁ ଧନ ଦେଉଥିବୁ ଆମ୍ଭେ ॥ ଇଚ୍ଛାମତେ ସେ ଧନକୁ ବିପ୍ରେ ଦାନ କରି ।

ସଂସାରରେ ବୋଲାଇବ ପରଉପକାରୀ ॥ ଏହା କହି ଭଗବତୀ ଅଦୃଶ୍ୟ ହୋଇଲେ । ଶ୍ରୀଚନ୍ଦ୍ରଶେଖର ନୃପ ସେହିପରି କଲେ ॥ ପ୍ରତିଦିନ ଭଗବତୀ ଦେଉଥାନ୍ତି ଧନ । ନୃପ ନେଇ ସେ ଧନକୁ କରୁଥାନ୍ତି ଦାନ ॥ ନିତି ମରି ରାଜା ଯହୁଁ ଜନ୍ମ ହେଲେ ନିତି । ତାହା ଦେଖି ରାଣୀ ନିତି ଶୋକ କରୁଥାନ୍ତି ॥ ବିକ୍ରମାଦିତ୍ୟଙ୍କ ରାଣୀ ଭଗିନୀର ଶୋକ । ଶୁଣିକରି ମନ ମଧ୍ୟେ ଲଭିଣ ଆତଙ୍କ ॥ ବସିଥିଲେ ଶୋକ କରି ଏହି ସମୟରେ । ବିକ୍ରମ ଆଦିତ୍ୟ ରାଜା ମିଳିଲେ ସେଠାରେ ॥ ପଚାରିଲେ ପ୍ରାଣପ୍ରିୟେ ଶୋକ କାହିଁପାଇଁ । କରୁଅଛ ମୋତେ ତାହା କହ ମହାଦେଈ । ତାହାଶୁଣି ବୋଇଲେ ସେ ରାଣୀ ପ୍ରାଣେଶ୍ୱର । ଶ୍ରୀଚନ୍ଦ୍ରଶେଖର ନୃପ ଭଗ୍ନୀପତି ମୋର ॥ ନିତ୍ୟ ତପ୍ତ ଘୃତେ ସେହି ହାରଇ ଜୀବନ । ତାହା ଦେଖି ଭଗ୍ନୀ ଶୋକ କରେ ପ୍ରତିଦିନ । ଭଗ୍ନୀ ଦୁଃଖ ଶୁଣି ମୋର ଦୁଃଖ ହେଲା ଜାତ । ସେଥିପାଇଁ ଶୋକ ଆସି ହେଲା ଉପଗତ ॥ ବିକ୍ରମ ଆଦିତ୍ୟ ରାଜା ଶୁଣି ସେ କଥାକୁ । ଗଲେ ଶ୍ରୀଚନ୍ଦ୍ରଶେଖର ରାଜାଙ୍କ ରାଜ୍ୟକୁ ॥ ପ୍ରବେଶିଲେ ଶୀଘ୍ର ଯାଇ ଶିବଙ୍କ ମନ୍ଦିରେ । ଫୁଟୁଥିଲା ଘୃତଭାଣ୍ଡ ଦେଖିଲେ ସେଠାରେ ॥ ନିତ୍ୟକର୍ମ ସାରିବାକୁ ରାଜା ଥିଲେ ଯାଇ । ଫେରି ତେଣୁ ଘୃତଭାଣ୍ଡେ ପଡ଼ିଆନ୍ତେ ଡେଇଁ ॥ ବିକ୍ରମ ଆଦିତ୍ୟ ତାହା ଜାଣି ସେହିକାଳେ । ନିଜେ ସେହି ତପ୍ତ ଘୃତଭାଣ୍ଡକୁ ଡେଇଁଲେ ॥ ପଡ଼ିବା ମାତ୍ରକେ ଦେହୁଁ ଛୁଟିଗଲା ପ୍ରାଣ । ଖାଇଗଲେ ମାଂସଯାକ ଆସି ଯୋଗୀଗଣ ॥ ତାହାପରେ ଠାକୁରାଣୀ ସେଠାକୁ ଆସିଲେ । ଦେଇ ତାଙ୍କୁ ଜୀବଦାନ ଏପରି କହିଲେ ॥ ତୁମ୍ଭର ଏ ସାହାସକୁ ଦେଖି ହେଲି ତୁଷ୍ଟ । ବର ମାଗ ଅହେ ନୃପ ଯେ ବା ତୁମ୍ଭ ଇଷ୍ଟ ॥ ଦେବୀଙ୍କର ବାକ୍ୟ ଶୁଣି ବିକ୍ରମ ନୃପତି । ଜଣାଇଲେ ତାଙ୍କ ଆଗେ ଅରପି ଭକତି ॥ ଯେବେ ମାତ ଦେବ ବର ଆଜଠାରୁ ଆଜ ।

ଶ୍ରୀଚନ୍ଦ୍ରଶେଖର ନୃପ ଏ କଷ୍ଟ ନ ପାଉ ॥ ପ୍ରଭନାଦତ୍ୟ ତପସ୍ୟାରେ ହୋଇଅଛୁ ଧନ୍ୟ । ସେ କଷ୍ଟରୁ ମୁକ୍ତ ତାଙ୍କୁ କରମହାମାନ୍ୟ ॥ ଅସ୍ତୁ କହି ଭଗବତୀ ରତ୍ନମୁଦ୍ରିକାକୁ । ନିଜହସ୍ତୁ କାଢ଼ି ଦେଲେ ବକ୍ରମାଦତ୍ୟଙ୍କୁ । କହିଲେ ଏ ରତ୍ନମୁଦ୍ରି କରେ ଯାର ଥିବ । ଯେତେ ମନାସିଲେ ସ୍ୱର୍ଣ୍ଣ ରତ୍ନ ପ୍ରାପ୍ତି ହେବ ॥ ବରଦେଇ ଅନ୍ତର୍ଦ୍ଧାନ ହେଲେ ଶଙ୍କରୀ । ବକ୍ରମ ଆଦିତ୍ୟ ସେହି ମୁଦ୍ରିକାଟି ଧରି । ଶ୍ରୀଚନ୍ଦ୍ରଶେଖର ନୃପ ସମୀପକୁ ଗଲେ । ବୁଝାଇ ସକଳ ତାଙ୍କୁ ମୁଦିଟିକୁ ଦେଲେ ॥ ମୁଦ୍ରିକା ଲଭିଣ ସୁଖେ ରହି ସେ ରାଜନ । ପ୍ରତିଦିନ ଇଚ୍ଛାମତେ କଲେ ଦାନ ପୁଣ୍ୟ ॥ ବକ୍ରମ ଆଦିତ୍ୟ ରାଜା ସନ୍ତୋଷରେ ଗଲେ । ରାମ ରାଜ୍ୟ ପରି ସୁଖେ ପରଜା ପାଳିଲେ ॥ ଶୁଣ ଏବେ ଭୋଜନୃପ ମନରେ ବିଚାରି । କେତେ ଦୂର ଉପକାରୀ ବକ୍ରମ ମିହିର ॥ ତାଙ୍କ ପରି ହେଲେ ତୁମ୍ଭେ ବସ ସିଂହାସନେ । ଏହା କହି ସେ ପୁତ୍ତଳି ଉଡ଼ିଲା ଗଗନେ ॥ ଅମର ଭୁବନେ ଯାଇ ହେଲା ପରବେଶ । ଜଗନ୍ନାଥ ସିଂହ କହେ ମନେ ବହି ତୋଷ ।

---

## ଜନବଂଶ ପୁତ୍ତଳିର କଥା

ତହିଁଆର ଦିନ ଭୋଜ ସାରି ନିତ୍ୟକର୍ମ । ଦେବତାଙ୍କୁ ପୂଜି ବିପ୍ରେ ଦେଲେ ବହୁ ଦାନ ॥ ଅନୁକୂଳ ବେଳ ଦେଖି ଆନନ୍ଦରେ ଗଲେ । ସିଂହାସନେ ଉଠିବାକୁ ଗୋଡ଼ ବଢ଼ାଇଲେ ॥ ଏହା ଦେଖି ଜନବଂଶ ପୁତ୍ତଳିକା କହେ । କର କପାଁ ବୃଥା ଆଶା ପତି ପୂର ମୋହେ ॥ ବସିବାକୁ ସିଂହାସନେ ନ କର ସାହାସ । ବସୁଥିଲେ ଏହା ପରେ ବକ୍ରମ ନରେଶ ॥ ଅଛି ଯେବେ ତାଙ୍କ ସମ ଗୁଣ ହେ ତୁମ୍ଭର । ବସ ସୁଖେ ସିଂହାସନେ ଆନ ନ ବିଚାର ॥ ଏହା ଶୁଣି

ପଚ୍ଚରିଲେ ଭୋଜ ନରବର । କହ କ କ ଭଲ ଗୁଣ ଥିଲା ଟି ତାଙ୍କର ॥ ଏହା ଶୁଣି ସେ ପୁତ୍ତଳି ଆରମ୍ଭିଲା ଖରେ । ବୋଇଲା ବିକ୍ରମ ରାଜ୍ୟ ଉଜ୍ଜ୍ୱଳ ନଗରେ ॥ ପାଳୁଥାନ୍ତି ପ୍ରଜାଗଣ ପୁତ୍ରର ସମାନ । କରୁଥାନ୍ତି ସବୁଲୋକେ ତାଙ୍କୁ ଧନ୍ୟ ଧନ୍ୟ ॥ ବହୁସଂଖ୍ୟ ତୀର୍ଥଯାତ୍ରୀ ବିପ୍ର ଏକ ଦିନେ । ପ୍ରବେଶିଲେ ସେ ବିକ୍ରମରାଜା ସନ୍ନିଧାନେ ସେମାନଙ୍କୁ ଦେଖି ନୃପ ଆନନ୍ଦ ମନରେ । ଯଥାବିଧି ପୂଜା କରି ବସାଇ ଆଦରେ ॥ ନାନା ତୀର୍ଥମାନଙ୍କର କଥା ପଚ୍ଚରିଲେ । ବିପ୍ରେ ଜାଣିଥିଲେ ଯାହା ବୁଝାଇ କହିଲେ ॥ ପରଶେଷେ ବିପ୍ର ଏକ ହୋଇ ତୋଷମତି । ବୋଇଲେ ଆଶ୍ଚର୍ଯ୍ୟ କଥା ଶୁଣ ହେ ନୃପତି ॥ ଏକ ଦେଶେ ପର୍ବତର ଶିଖର ଗୁମ୍ଫାରେ । ରହିଅଛି ପୁଷ୍କରଣୀ ପୂର୍ଣ୍ଣ ସଳିଳରେ ॥ ଫଳ ପୁଷ୍ପ ଦ୍ରୁମେ ଶୋଭା ପାଏ ଚଉକତି । ଲଭଇ ଦେଖିବା ଲୋକ ଅପାର ତୃପତି ॥ ତାହା ଦେଖି ସେ ସ୍ଥାନରେ ମନତୋଷେ ମୁହିଁ । ଶେଷକଲି ଏକରାତ୍ର ଆନନ୍ଦରେ ରହି ॥ ପ୍ରଭାତରୁ ଉଠି ସ୍ନାନ କରିବା କାଳରେ । ଅଦ୍ଭୁତ ଘଟଣା ଏକ ଦେଖିଲି ସେଠାରେ ॥ ପ୍ରାଚୀ ମୂଳେ ଉଦେ ଯହୁଁ ହୋଇଲେ ଆଦିତ୍ୟ । ଏକ ରତ୍ନସ୍ତମ୍ଭ ସେ ଜଳରୁ ହେଲା ଜାତ ॥ ସ୍ତମ୍ଭଟିର ତେଜ ଦିଶେ ସୂର୍ଯ୍ୟର ସମାନ । ଦେଖୁ ଦେଖୁ ତା ଉପରେ ରତ୍ନସିଂହାସନ ॥ କ୍ଷଣକ ମଧ୍ୟରେ ତହିଁ ହୋଇଗଲା ଜାତ । ମଧ୍ୟାହ୍ନ ବେଳକୁ ହେଲା ଆକାଶରେ ସ୍ଥିତ ॥ ସାୟଂକାଳେ ଜଳେ ପୁଣି ମିଶିଗଲା ସେହି । ତାହା ଦେଖି ଆଚମ୍ବିତ ହୋଇଗଲି ମୁହିଁ ॥ ଶୁଣି ଏହା ବିପ୍ରଠାରୁ ବିକ୍ରମ ମିହିର । ସଙ୍ଗେ ଘେନି ସେ ବିପ୍ରକୁ ଚଳିଲେ ସତ୍ୱର ॥ ସେ ସ୍ଥାନରେ କେତେ ଦିନେ ପ୍ରବେଶ ହୋଇଲେ । ବିପ୍ର ସଙ୍ଗେ ଏକ ରାତ୍ର ତହିଁ ବାସ କଲେ ॥ ପ୍ରଭାତରୁ ନିତ୍ୟକର୍ମ ବଢ଼ାଇଲେ ବେଗେ । ସେ ସମୟେ ରବି ଉଦେ ହେଲେ

ଫୃବେଦବେଗେ ॥ ବାହାର ହୋଇଲା ଜଳମଧ୍ୟୁଁ ରତ୍ନସ୍ତମ୍ଭ । ସିଂହାସନ ଦେଖା ଯିବା ହେଲା ତ ଆରମ୍ଭ ॥ ବିକ୍ରମ ଆଦିତ୍ୟ ତାହା ଦେଖିବା ମାତ୍ରକେ । ଜଳେ ଡେଇଁ ସିଂହାସନେ ବସିଲେ ପଲକେ ॥ କ୍ରମେ କ୍ରମେ ରତ୍ନସ୍ତମ୍ଭ ଉଠିଲା ଆକାଶେ ॥ ବିକ୍ରମ ଆଦିତ୍ୟ ବସିଥାନ୍ତି ସୁସାହସେ ॥ ଦେହୁ ତାଙ୍କ ସୂର୍ଯ୍ୟ ତେଜେ ପ୍ରାଣ ଛାଡିଗଲା । କେବଳ ଶରୀର ଗୋଟି ତହିଁ ରହିଥିଲା ॥ ସୂର୍ଯ୍ୟ ପାଶେ ଉପଗତ ହେଲା ସିଂହାସନ । ନୃପେ ଦେଖି ଦୟା କଲେ ଛାୟାଙ୍କ ରମଣ ॥ ସିଞ୍ଚି ସେ ଅମୃତ ତାଙ୍କୁ ବଞ୍ଚାଇଣ ଦେଲେ । କୁଣ୍ଡଳ ଦିଓଟି ଦେଇ ବୁଝାଇ କହିଲେ ॥ ଆହେ ନୃପ ଯାହା ପାଖେ ଥିବ ଏ କୁଣ୍ଡଳ । ଯାହା ସେ ଇଚ୍ଛିବ ତାହା ଲଭିବ ତଞ୍ଚଳ ॥ ଏହିପରି ଆଜ୍ଞା ଦେଲେ ଯହୁଁ ଛାୟାପତି । ରତ୍ନସ୍ତମ୍ଭ ଆସି ଜଳେ ପଡିଲା ଝଟତି ॥ କୂଳେ ଆସି ନରପାଳ ବ୍ରାହ୍ମଣଙ୍କୁ ସଙ୍ଗେ । ଘେନି କରି ନିଜ ରାଜ୍ୟେ ଚଳିଗଲେ ବେଗେ ॥ ଯେଉଁ ବିପ୍ର ନୃପଙ୍କର ସଙ୍ଗେ ଥିଲେ ଯାଇ । ଭିକ୍ଷ ରେ ସେ ପୋଷିହୁଏ ଦରିଦ୍ର ଅଟଇ ॥ ତାହା ଜାଣି ସେ ବିକ୍ରମ କୁଣ୍ଡଳଟି ତାଙ୍କୁ । ଦେଇକରି ବୁଝାଇଲେ ତାହାର ତଥ୍ୟକୁ ॥ କୁଣ୍ଡଳ ଲଭିଣ ବିପ୍ର କଲେ ସୁକଲ୍ୟାଣ । ମନୋବାଞ୍ଛା ଫଳ ପାଇ ରହିଲେ ସୁଖେଣ ॥ କରି ହେ ବିଚାର ମନ ମଧ୍ୟେ ଭୋଜନୃପ । କେତେ ବଡ଼ ଦାତା ପୁଣି କେଡ଼େ ତାଙ୍କ ଦର୍ପ ॥ ତାଙ୍କ ସମ ହେଲେ ତୁମ୍ଭେ ବସ ସିଂହାସନେ ॥ ଏହା କହି ସେ ପୁତ୍ତଳି ଗମିଲା ଗଗନେ ॥ ଭୋଜରାଜ ଫେରିଗଲେ ବିରସ ବଦନେ । ଜଗନ୍ନାଥ ସିଂହ ଏହା ଗୀତରେ ବଖାଣେ ॥

---

## ବିଂଶତି ପୁତ୍ତଳିର କଥା

ତପର ଦିବସେ ଭୋଜ ପ୍ରଭାତୁଁ ଉଠିଲା । ସ୍ନାନ ଦେବପୂଜା ପିତୃ ତରପଣ କଲେ ॥ ଦରିଦ୍ରଙ୍କୁ ଅନ୍ନ ଦେଇ ବିପ୍ରେ କଲେ ଦାନ ।

ବସିବାକୁ ସିଂହାସନେ ବଳାଇଲେ ମନ ॥ ବଂଶନ୍ତ ପୁତ୍ତଳି ତାଙ୍କୁ ଦେଖି ବୋଲେ ବାଣୀ । ସିଂହାସନେ ବସ କପାଁ କତ୍ରୁ କିଁ ନ ଜାଣି ॥ ବନ୍ଦମ ଆଦିତ୍ୟଙ୍କର ଏହି ସିଂହାସନ । ଜଗତେ ଯା ସତ୍‌କୀର୍ତ୍ତି ନିରତ ଅକ୍ଷୂର୍ଣ୍ଣ ॥ ଗୁଣବାନ ତାଙ୍କ ପରି ଅଟ କ ହେ ତୁମ୍ଭେ । ବାହାରଛ ସିଂହାସନେ ବସିବାକୁ ଦମ୍ଭେ ॥ ତାହା ଶୁଣି ପଚ୍ଛରିଲେ ଭୋଜ ନରଗ୍ରଣ । କହ ହେ ପୁତ୍ତଳି ତାଙ୍କ ଥିଲା କ କ ଗୁଣ ॥ ଶୁଣିବାକୁ ଶ୍ରଦ୍ଧା ଜାତ ହୁଏ ମୋର ଚିତ୍ତେ । ତହୁଁ ସେ ପୁତ୍ତଳି କହେ ଭୋଜଙ୍କ ଅଗ୍ରତେ ॥ ବସି ଏହି ସିଂହାସନେ ବନ୍ଦମ ଆଦିତ୍ୟ । ଉଜ୍ଜ୍ୱଳ ଦେଶକୁ ପାଳ ଥିଲେ ତୋଷଚିତ୍ତ ॥ ଏକ ଦିନେ ସଭାକରି ବସି ଥିଲେ ସେହି । ପାଶେ ପରବେଶ ହେଲା ଦୂତ ଏକ ଯାଇ ॥ ଜଣାଇଲା କର ଯୋଡ଼ ଶୁଣ ମହାରାଜ । ଦେଖିଲି ମୁଁ ପୁରୁଷେକ ଉପବନେ ଆଜ ॥ ଯୋଗାସନ କରି ସେହୁ ବସିଛନ୍ତି ତହିଁ । ଜଳନ୍ତା ଅନଳ ପରି ଜ୍ୟୋତି ବିରାଜଇ ॥ ନିଶ୍ଚୟେ ଦେବତା ସେହୁ ହୁଅଇ ବିଶ୍ୱାସ । ଦୂତ ମୁଖୁଁ ଏହା ଶୁଣି ଉଜ୍ଜ୍ୱଳ ନରେଶ ॥ ସେହିକ୍ଷଣି ଦୂତ ସଙ୍ଗେ ଉଦ୍ୟାନକୁ ଗଲେ । ସେ ଦିବ୍ୟ ପୁରୁଷଙ୍କର ପାଶେ ପ୍ରବେଶିଲେ ॥ ଭଣୁଥିଲେ ସେ ପୁରୁଷ ଦେବତାଙ୍କ ପ୍ରାପ୍ତ । ଦେଖି ତାଙ୍କୁ ପ୍ରଣିପାତ କଲେ ନରନାଥ ॥ ହସ୍ତ ଉତ୍ତୋଳନ କରି କଲ୍ୟାଣ ସେ କଲେ । ମୌନବ୍ରତେ ନୃପଙ୍କୁ ସେ କିଛି ନ କହିଲେ ॥ ଚଳଚଲେ ସେହିକ୍ଷଣି ସେଠାରୁ ସେ ଉଠି । ତା ଦେଖି ବିକ୍ରମାଦିତ୍ୟ ଗଲେ ତାଙ୍କ ସାଥୀ ॥ ପଥ ତାଙ୍କ ଅନୁସରି ବହୁ ଦୂର ଗଲେ । ଏକ ଗିରି ଗହ୍ୱରରେ ପ୍ରବେଶ ହୋଇଲେ । ସେ ଗୁହାରେ ଘୋଟିଅଛି ଘୋର ଅନ୍ଧକାର । ପୁରୁଷଙ୍କୁ ନ ଦେଖିଲେ ବିକ୍ରମ ମିହିର ॥ ଯୋଗାସନେ ବସି ରାଜା ଗଲେ ଅନ୍ଧକାରେ । ଭିତରେ ଦେଖିଲେ ଅଛି ଦ୍ୱାର କେତେ ଦୂରେ ॥ ଥିଲେ ତହିଁ ଦୁଇ

ନାରୀ ଦେଖି ସେ ସୁଜନ । ପୁଚ୍ଛନ୍ତେ ସେ ତାଙ୍କୁ କିଛି ନ କହି ବଚନ ॥ ହାତ ଠାରି ଜଣାଇଲେ ଯାଅ ଭିତରକୁ । ପଶିଗଲେ ନରପତି ପିଠାଇ ଦ୍ୱାରକୁ ॥ ଦେଖିଲେ ସେଠାରେ ଶୁଭେ ଗହଳି ବିଶେଷ । ବିକ୍ରମ ଆଶ୍ଚର୍ଯ୍ୟ ଶୁଣି ଲଭିଲେ ସନ୍ତୋଷ ॥ ଦେଖିଲେ ସେ ପୁର ଅଷ୍ଟରତନେ ଜଡ଼ିତ । ହୀରା ମାଳା ପାବଚ୍ଛରେ ଝଟଣେ ସୁଶୋଭିତ ପୂରିଛି ସକଳ ଗୃହ ଗୀତ ନୃତ୍ୟ ନାଦେ । ଜନେ ବିହରନ୍ତି ତହିଁ ପରମ ପ୍ରମୋଦେ ॥ ସର୍ବସୁଲକ୍ଷଣୀ ନାରୀ ଦେଖି ଢଳଢଳ । ପୂଜୁଛନ୍ତି ଇଷ୍ଟଦେବ ଦଳେ ଦଳେ ମିଳି ॥ ଜରାମୃତ୍ୟୁ ବାଧା ନ ପଶଇ ସେ ପୁରରେ । ସର୍ବେ ଦେଖା ଯାଉଛନ୍ତି ଯୁବା ପ୍ରକାରେ ॥ ତାହା ଦେଖି ବିଚାରିଲେ ବିକ୍ରମ ଭୂପତି । ପୁରନ୍ଦର ପୁର ଅବା ଦିବ୍ୟ ବାରସ୍ତି ॥ ସେ କାଳେ ପୁରୁଷ ଏକ ଅଇଲା ସେଠାକୁ । ବିକ୍ରମ ଆଶ୍ଚର୍ଯ୍ୟ ଦେଖି ପଚାରିଲେ ତାକୁ ॥ ହେ ଦିବ୍ୟ ପୁରୁଷ କହ କେଉଁ ପୁର ଏହି । ଶୁଣି ତାଙ୍କୁ ଅଳ୍ପ ହସି ପୁରୁଷ କହଇ ॥ କେଉଁଠାରେ ତୁମ୍ଭ ଘର ତୁମ୍ଭେ କି ନ ଜାଣ । ବୁଝ ଏବେ ଏହା ଅଟେ ପାତାଳ ଭୁବନ ॥ ସେ ପୁରୁଷ ଏହା କହି ହୋଇଲା ଅନ୍ତର । ବିଚାରିଲେ ମନ ମଧ୍ୟେ ବିକ୍ରମ ମିହ୍ୱର ॥ ବଳିରାଜା ଭୁବନ ଏ ଅଟଇ ପାତାଳ । ଭଲ ଯୋଗେ ଆସିଅଛି ଦେଖିବି ସକଳ ॥ ବଳି ରାଜା ଦ୍ୱାରେ ଥିବେ ଶ୍ରୀମଧୁସୂଦନ । ସେ ପ୍ରଭୁଙ୍କ ପାଦପଦ୍ମ କରିବି ଦର୍ଶନ ॥ ଏହା ଭାବି ଗଲେ ତହିଁ ବିକ୍ରମ ନରେଶ । ବଳି ରାଜା ସିଂହଦ୍ୱାରେ ହେଲେ ପରବେଶ ॥ ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଚତୁର୍ଭୁଜେ । ଦ୍ୱାରପାଳ ରୂପେ ହରି କରୁଛନ୍ତି ବିଜେ ॥ ଝଟଣେ ନବ ଜଳଧର ଶୋଭା ତନୁ କାନ୍ତି । ପଦରେ ନୂପୁର କଣ୍ଠେ ଶୋଭେ ଗଜମୋତି ॥ ମକର କୁଣ୍ଡଳ ଯାଏ କର୍ଣ୍ଣେ ଅତି ଶୋଭା । କିରୀଟ ଜିଣଇ କୋଟି ସୂର୍ଯ୍ୟଙ୍କର ପ୍ରଭା ॥ ଶୋଭାବନ ଝଟଣେ କଟି-

ତଟେ ପୀତବାସ । କରନ୍ତ ପ୍ରକାଶ ବମ୍ବାଧରେ ମନ୍ଦହାସ ॥ ପୂର୍ଣ୍ଣଚନ୍ଦ୍ର ଲୋକ ଏକା ପାଏ ଦରଶନେ । ଦେଖି ତାଙ୍କୁ ସ୍ତୁତି କଲେ ବକ୍ରମ ରାଜନ ॥ ଯାଚଦେଲେ ବର ପ୍ରଭୁ ହୋଇଣ ସନ୍ତୋଷ । ଇଚ୍ଛା ବର ମାଗ ଆହେ ବକ୍ରମ ନରେଶ ॥ ବୋଇଲେ ରାଜନ ପ୍ରଭୁ ଶ୍ରୀଚରଣେ ମନ । ସବୁକାଳେ ରହୁ ଏହା ଏକମାତ୍ର ଧ୍ୟାନ ॥ ଅସ୍ତୁ କହ ଗୁଡ଼ଦେଲେ ବାଟ ନାରାୟଣ ॥ ଭିତରେ ପ୍ରବେଶ କଲେ ବକ୍ରମ ରାଜନ ॥ ଦେଖିଲେ ସେ ପୁର ମଧ୍ୟେ ରତ୍ନ ସିଂହାସନେ । ବସିଥିଲେ ବଳରାଜା ଅତି ହୃଷ୍ଟମନେ ॥ ଦେଖି ସେ ବକ୍ରମ ତାଙ୍କୁ କଲେ ବହୁ ସ୍ତୁତି । ତାହା ଶୁଣି ବଳରାଜା ଲଭିଲେ ନ୍ତ୍ରପତି ॥ ଯୋଗବଳେ ଜାଣିଲେ ସେ ବକ୍ରମାଦ୍ରତ୍ୟଙ୍କୁ । ବସାଇଲେ ପାଶେ ଶୁଭାଶିଷ ଦେଇ ତାଙ୍କୁ ॥ କୁଶଳ ବାରତା ସବୁ ପଚ୍ଚାର ବୁଝିଲେ । ଭକ୍ତି ଦେଖି ସନ୍ତୋଷରେ ବୁଝାଇ କହିଲେ ॥ ହେ ବକ୍ରମ ନୃପ ତୁମ୍ଭେ ଅଟ ପୂର୍ଣ୍ଣବନ୍ତ । ତୁମ୍ଭ ଯଶ ତିନ୍ନିପୁରେ ହୋଇଛି ବିଖ୍ୟାତ । ପାତାଳରେ ଦେଖାକଲ ଆସି ଆମ୍ଭ ପାଶ । କ ଦେଇ ତୋଷିବା କହ ତୁମ୍ଭର ମାନସ ॥ ଏହା କହ ଚନ୍ତାମଣି ପୁଣି ଏକ ଫଳ । ଦେଇ ତାଙ୍କୁ ବୁଝାଇଲେ ତତ୍ତ୍ୱ ସେ ଦୁଇର ॥ ଆହେ ନୃପ ଏ ମଣିକ ଦେଲେ ଛୁଆଁଇଣ । ଲୌହ ଆଦ ଯେତେ ଧାତୁ ହୋଇବ ସୁବର୍ଣ୍ଣ । ଏ ଫଳ ଖାଆନ୍ତେ କ୍ଷୁଧା ତୃଷା ନ ରହିବ । ହୋଇଥିଲେ ଜରାଜୀର୍ଣ୍ଣ ଯୁବା ପାଲଟିବ ॥ ଏହା କହ ଦେଲେ ତାଙ୍କ କରେ ମଣି ଫଳ । ଆନନ୍ଦେ ଘେନିଲେ ତାହା ବକ୍ରମ ମିହିର ॥ ପ୍ରଣମି ସେ ବଳ ପାଦେ ମେଲାଣି ମାଗିଲେ । ବସି ଯୋଗାସନେ ନିଜ ଦେଶେ ବାହୁଡ଼ିଲେ ॥ ଯିବାବେଳେ ପଥ ମଧ୍ୟେ ଦେଖିଲେ ରାଜନ । ନିଜ ଦ୍ୱାରେ ବସିଅଛି ଏକ ବୃଦ୍ଧ ଜନ ॥ ବସିଥିବା ସ୍ଥାନରୁ ସେ ନ ପାରଇ ଉଠି । ଅତି କଷ୍ଟେ ଉଠିବାକୁ ରଖିଅଛି ଯଷ୍ଟି ॥ ସେ ବୃଦ୍ଧ ପାଶକୁ ଯାଇ ବକ୍ରମ ମିହିର ।

ପଶ୍ଚରନ୍ତେ ବକଲରେ କହିଲ ସେ ଗିର ॥ କି କରିବି ଶକ୍ତି ମୋର ଉଠିବାକୁ ନାହିଁ । ବହୁ ଲୋକ ଖାଇବାକୁ ଘରେ ଛନ୍ତି ରହି ॥ ଅରଜିବା ଲାଗି ଆଉ ନାହିଁ କେହି ଘରେ । ଏହି ଦୁଃଖ ଶୋକ ମୋତେ ସବୁବେଳେ ଘାରେ ॥ ତାହା ଶୁଣି ଦୟା କରି ବିକ୍ରମ ଆଦିତ୍ୟ । ଫଳଟିକୁ ଦେଲେ ତାକୁ ଖାଇବା ନିମିତ୍ତ ॥ ସେ ଫଳଟି ଖାଇବାରୁ ବୃଦ୍ଧ ଦେହ ତାର । ଗୁଚିଯାଇ ଦିଶିଲା ସେ କନ୍ଦର୍ପ ପ୍ରକାର ॥ ନିଜକୁ ଅନାଇ ବୃଦ୍ଧ ବିସ୍ମିତ ହୋଇଲା । ବିକ୍ରମାଦିତ୍ୟଙ୍କ ପାଦେ ପଡ଼ି ଜଣାଇଲା ॥ କେଉଁ ଦେବତା ତୁମ୍ଭେ ଯେବେ ଦୟା କଲ । କୁଟୁମ୍ବ ପୋଷିବା ଚିନ୍ତା କପାଁ ନ ହଟିଲ ॥ ତା ଶୁଣି ବିକ୍ରମାଦିତ୍ୟ ଅଳପ ହସିଲେ । ଚିନ୍ତାମଣିଟିକୁ ତାହା ହସ୍ତେ ସମର୍ପିଲେ ॥ କହିଲେ ବୁଝାଇ ତାକୁ ଏଥିଁ ଲୁହା ଆଦି । ଲଗାଇଲେ ସୁନା ହେବ ରଖିଦେ ସମ୍ପାଦି ॥ ଏହା କହି ଚଳିଗଲେ ଆପଣା ନଗର । ଧନ ପାଇ ସେ ଦରିଦ୍ର ହୋଇଲା କୁବେର ॥ ଶୁଣିଲ ତ ଭୋଜରାଜ ବିକ୍ରମ ଚରିତ । ତାଙ୍କ ପରି ଯେବେ ନୃପ ହେବ ଗୁଣବନ୍ତ ॥ ତେବେ ଯାଇ ସିଂହାସନେ ଆରୋହଣ କର ॥ ପୁତ୍ତଳି ଏତେକ କହି ଗଲା ସ୍ୱର୍ଗପୁର ॥ ଏହା ଶୁଣି ଭୋଜରାଜ ବିରସ ବଦନେ । ଜଗନ୍ନାଥ ସିଂହ କହେ ଫେରିଲେ ଭୁବନେ ॥

---

## ଏକବିଂଶତି ପୁତ୍ତଳିର କଥା

ପୂର୍ବପରି ଭୋଜରାଜ ଆରି ଦିନ ଗଲେ । ବସିବାକୁ ସିଂହାସନେ ଆଗ୍ରହୀ ହୋଇଲେ ॥ ତାହା ଦେଖି ଏକବିଂଶ ପୁତ୍ତଳି କହଇ । ଆହେ ଭୋଜ ତୁମ୍ଭେ ସିଂହାସନେ ବସ ନାହିଁ ॥ ବସୁଥିଲେ ଯାହା ଉପରେ ବିକ୍ରମ ମିହିର । ସେପରି ଯଶସ୍ୱୀ ହେଲେ ଯାଇ ବସି ପାର ॥ ପୁତ୍ତଳି ବଚନ ଶୁଣି ଭୋଜ ନରବର । ବୋଇଲେ କହ ହେ

ତେବେ ତାଙ୍କ ଲାଗି ଶୁଣ ॥ ପୁତ୍ତଳି କହିଲା ଶୁଣ ବିକ୍ରମ ରାଜନ । ପୁତ୍ରସମ ପାଳୁଥିଲେ ସଦା ପ୍ରଜାଗଣ ॥ ଦିନେ ଏକା ହୋଇ ବନ ମଧ୍ୟେ ସେହି ଗଲେ । ତପୀ ଜଣେ ସେ ବନରେ ଥିବାର ଦେଖିଲେ ॥ ତାଙ୍କ ପଦେ ନମ୍ର ହୋଇ କଲେ ନମସ୍କାର । ମନ୍ତୋଷେ ଅର୍ପିଲେ ତପୀ କଲ୍ୟାଣ ଅପାର ॥ ବହୁ ପୁଣ୍ୟ ତୀର୍ଥ କଥା ବୁଝାଇ କହିଲେ । ଅପୂର୍ବ କଥାଏ ତପୀ ଶେଷେ ଜଣାଇଲେ ॥ ବୋଇଲେ ଶୁଣ ହେ ନୃପ କାଞ୍ଚନ ପର୍ବତେ । ତପୀ ଏକ ରହିଥିଲେ ଦେଖିଅଛୁଁ ନେତେ ॥ ନ କରନ୍ତି ଭୋଜନ ସେ ନିଦ୍ରା ତାଙ୍କୁ ନାହିଁ । ପଲକ ପଡ଼ିବା ତାଙ୍କ କେହି ନ ଦେଖଇ ॥ ଏକାସନେ ସବୁକାଳେ ବସିଥାନ୍ତି ଜାଣ । ନ ଦେଖଇ କେହି ତାଙ୍କ ଗମନାଗମନ ॥ ଏହା ଶୁଣି ବୋଇଲେ ସେ ବିକ୍ରମ ନରେଶ । ସେ ତପସ୍ୱୀ ପାଶେ ମୁହିଁ ଯିବଇଁ ଅବଶ୍ୟ ॥ କେଉଁ ଦିଗେ ଗଲେ ଶୀଘ୍ର ପହଞ୍ଚିବ ତହିଁ । ଦୟା କରି କହିଦେଲେ ସୁଖୀ ହେବି ମୁହିଁ ॥ ତପସ୍ୱୀ କହିଲେ ଅଇଶାନ୍ୟ ଦିଗେ ବାଟ । ବିଶେଷ ଦୁର୍ଗମପଥ ପଡ଼ଇ ସଙ୍କଟ ॥ ରହିଛନ୍ତି ଦୁଷ୍ଟ ଜୀବେ ବାଟଯାକ ପୂରି । ଏକାକୀ ରାଜନ ତୁମ୍ଭେ ଯିବ କେଉଁପରି ॥ ଏହା ଶୁଣି ନୃପରାଣ ସେ ତପୀଙ୍କ ପାଦେ । ପ୍ରଣତି ଜଣାଇ ତହୁଁ ଉଠିଲେ ଆନନ୍ଦେ ॥ ଯୋଗ ଆସନରେ ବସି ଶୂନ୍ୟ ମାର୍ଗେ ଗଲେ । କାଞ୍ଚନ ଗିରିରେ ଯାଇ ତକ୍ଷଣେ ମିଳିଲେ ॥ ତପୀ ଯାହା କହିଥିଲେ ଦେଖିଲେ ସେପରି । ବସିଥିଲେ ସେହି ଯୋଗୀ ଯୋଗଧ୍ୟାନ କରି ॥ ପ୍ରଣମି ବିକ୍ରମ ପଦେ କରେ ବହୁ ସ୍ତୁତି । ଜାଣି ତାହା ନେତ୍ର ଫେଡ଼ି ବୃଝିଲେ ସେ ଯତି ॥ ଭକ୍ତି ଦେଖି ରାଜାଙ୍କର କଲେ ସୁକଲ୍ୟାଣ । ବୁଝିଲେ ତାଙ୍କର ସବୁ କଥା ପରିଚଣ ॥ ତା ଉତ୍ତରୁ ସନ୍ତୋଷରେ ସେହି ମହାଯତି । ବୋଇଲେ ଏତିକ ଦ୍ରବ୍ୟ ନିଅ ହେ ନୃପତି ॥ ବେତବାଡ଼ି

ଖଟ ଆଜ ଏହ ଯନ୍ତମୂର୍ତ୍ତି । କହୁଅଛୁ ମନେରଖ ଯାଙ୍କ ଗୁଣ ସ୍ଫୂର୍ତ୍ତି ॥ ପିତୁଳା ମାଟିରେ ଗଢ଼ି ରଖି ପଲ୍ୟଙ୍କରେ । ତା ହାତକୁ ଦୁଇବାହୁ ପିଟିଲେ ବେଗରେ ॥ ଜୀବନ ପାଇଣ ସେହୁ ସତ୍ତ୍ୱରେ ଉଠିବ । ସଂଗ୍ରାମରେ ଜାଣ ସେହୁ ମହାବୀର ହେବ ॥ ଏ କୋଥଳ ମୂର୍ତ୍ତି ମଧ୍ୟେ ପୂରାଇଲେ ହସ୍ତ । ଖାଇବା ପଦାର୍ଥ ନୃପ ପାଇବ ଭରତ ॥ ଲକ୍ଷ ଲକ୍ଷ ଲୋକ ବସି ଖାଉଥିବେ ଯେତେ । ଏ କୋଥଳ ମୁଣା ମଧ୍ୟୁ ବାହାରିବ ସେତେ ॥ ବୁଝାଇ ଏ ତିନି ଦ୍ରବ୍ୟ ଦେଲେ ତାଙ୍କୁ ଋଷି । ଘେନି ତାହା ରାଜା ଗଲେ ଯୋଗାସନେ ବସି ॥ ଯିବାବେଳେ ଦେଖିଲେ ସେ ବସି ଏକ ଜନ । ବନେ ବସି କାନ୍ଦୁଥିଲା ଦେଖିଲେ ରାଜନ ॥ ବିକଳ ନ ସହି ତାର ପାଶକୁ ସେ ଯାଇ । ପଚାରିଲେ ନୃପ କହ କାନ୍ଦ କାହିଁ ପାଇଁ ॥ ବୋଲଇ ସେ କି କହିବି ଶୋକର କାରଣ । ସୈନ୍ୟମାନଙ୍କୁ ମୋ ନାଶକଲେ ଶତ୍ରୁଗଣ ॥ ଛଡ଼ାଇନେଇ ମୋ ରାଜ୍ୟ ଧନ ଦେଲେ ତଡ଼ି । ନିଃସହାୟେ ଲୁଚିଛୁ ମୁଁ ଶୋକଜଳେ ବୁଡ଼ି ॥ କହିଲେ ତା ଦୁଃଖ ଶୁଣି ବିକ୍ରମ ମହୀର । ଏବେ ଚାଲ ହୋଇବି ମୁଁ ସହାୟ ତୁମ୍ଭର ॥ ତା ଶୁଣି ସେ ନୃପ ବୋଲେ ତୁମ୍ଭେ ଏକା ହୋଇ । କି କରିବ ଶତ୍ରୁ ସୈନ୍ୟ ବହୁତ ଅଛଇ ॥ ବିକ୍ରମ ଆଦିତ୍ୟ ଶୁଣି ସେ ରାଜା ବଚନ । ପିତୁଳା ସହସ୍ରେ କଲେ ମାଟିରେ ଗଠନ ॥ ଶୁଆଇ ପଲ୍ୟଙ୍କେ ତାଙ୍କୁ ବେଗକୁ ଧଇଲେ । ହାତେ ତାଙ୍କ ଦୁଇ ଦୁଇ ବାହୁ ପିଟିଦେଲେ ॥ ଜୀବ ପାଇ ସେହିକ୍ଷଣି ଉଠିଲେ ସେମାନେ । ମହାବୀର ମୂର୍ତ୍ତି ହୋଇ ଗର୍ଜିଲେ ତକ୍ଷଣେ ॥ ଖାଇବାକୁ ଦିଅ ବୋଲି ମାଗନ୍ତେ ବିକ୍ରମ ଖାଦ୍ୟଦ୍ରବ୍ୟ କୋଥଳରୁ କାଢ଼ିଲେ ଅସୀମ ॥ ବୀରଗଣେ ତାହା ଖାଇ ଲଢ଼ିଲେ ତୁରନ୍ତ । ପଡ଼ିଲା ବିକ୍ରମ ପାଦେ ତା ଦେଖି ନୃପତ ॥ ଆଶ୍ୱାସନା ଦେଇ ତାକୁ ବିକ୍ରମ ରାଜନ । ସତ୍ତ୍ୱର ତା

ସଙ୍ଗେ ଗଲେ ଯେସନ ବୀରଗଣ ॥ ସେହିକ୍ଷଣି ଯାଇ ତାର ରାଜ୍ୟେ ପହୁଞ୍ଚିଲେ । ଘୋରତର ଯୁଦ୍ଧ କରି ଶତ୍ରୁ ହନାଗିଲେ ॥ ସେ ବୀରଙ୍କ ଡରେ ଶତ୍ରୁମାନେ ପଳାଇଲେ । ଲୁଚିଗଲେ ପ୍ରାଣ ଘେନି କନ୍ଦର ମଧ୍ୟରେ ॥ ବିକ୍ରମ ଆଦିତ୍ୟ ଦେଖି ହୋଇ ତୋଷମନ । ସେ ରାଜାକୁ ରାଜ୍ୟ ତାର କରି ସମର୍ପଣ ॥ ଦିବାପାଇଁ ନିଜ ରାଜ୍ୟେ ହୁଅନ୍ତେ ବାହାର । ସେ ନୃପତି ଜଣାଇଲା ସମ୍ମୁଖରେ ତାଙ୍କର ॥ ନିଜ ରାଜ୍ୟ ଆପଣ ତ ବିଜେ କଲ ଏବେ । ଶତ୍ରୁମାନେ ଯେବେ ଆସି ପୁନଶ୍ଚ ଲଢ଼ିବେ ॥ ତେତେବେଳେ କି କରିବି ବୁଦ୍ଧି ନ ଦିଶଇ । ଏହା ଶୁଣି ବିକ୍ରମ ନୃପ ମନେ ଦୟା ବହି ॥ ଝିଲ ମୁଣି ବେତବାଡ଼ ପଲ୍ଲଙ୍କ ସହିତେ । ଅକୁଣ୍ଠେ ସମର୍ପିଲେ ସେ ନୃପରି ହସ୍ତେ ॥ ସେ ତିନିର ତଥ୍ୟ ସବୁ ବୁଝାଇଲେ ତାକୁ । ଆନନ୍ଦରେ ଚଳିଗଲେ ଆପଣା ଦେଶକୁ ॥ ତାହା ପାଇ ସେ ନୃପତି ମନୁ ଭୟ ତେଜି ॥ ଡରାଇଲା ଶତ୍ରୁଗଣେ ସନ୍ତତ ଗରଜି ॥ ଶୁଣ ଆହେ ଭୋଜନୃପ ବିକ୍ରମ ମିହିର । ଏହିପରି କରୁଥିଲେ ପର ଉପକାର ॥ ଶୌର୍ଯ୍ୟ, ଧୈର୍ଯ୍ୟ, ଗୁଣ ତାଙ୍କ ଦେହେ ଥିଲା ପରି । ହୋଇପାର ତୁମ୍ଭେ ଯେବେ ସେ ନୃପଙ୍କ ପରି ॥ ତେବେ ଯାଇ ଆରୋହଣ କର ସିଂହାସନେ । ଏହା କହି ସେ ପୁତ୍ତଳି ଚଳିଲା ଗଗନେ ॥ ଭୋଜନୃପ ତାହା ଶୁଣି ବିରସମନରେ । ବାହୁଡ଼ି ମିଳିଲେ ଯାଇ ଆପଣାମନ୍ଦିରେ । ବିକ୍ରମଙ୍କ ଗୁଣସ୍ମରି ହେଲେ ଆଚମ୍ବିତ । ଜଗନ୍ନାଥ ସିଂହ ଦ୍ୱାରା ଏ ଗୀତ ଭଣିତ ॥

---

## ଦ୍ୱାବିଂଶ ପୁତ୍ତଳିର କଥା

ତହିଁ ଆରଦିନ ପୁଣି ଭୋଜ ନୃପବର । ବସିବାକୁ ସିଂହାସନେ ହୋଇ ତତପର ॥ ନିତ୍ୟକର୍ମ ଯଥାବିଧି ସାରି ତୋଷିତରେ । ସଙ୍ଗେ

ଦେଖି ଚାରି ମନ୍ତ୍ରୀ ଚଳିଲେ ତୁରିତେ ॥ ସିଂହାସନ ନିକଟରେ ମିଳନ୍ତେ ସେ ଯାଇ । ଦ୍ୱାତ୍ରିଂଶତି ପୁତ୍ତଳିକା ହସିଣ କହଇ ॥ ବୋଲେ ବୃଥା ଆଶା ନୃପ କର କି କାରଣେ । ବସି ତୁମ୍ଭେ ନ ପାରିବ ଏହି ସିଂହାସନେ ॥ ବସନ୍ତ ଏଥିରେ ରାଜା ବିକ୍ରମ ଆଦିତ୍ୟ । ତାଙ୍କସମ ହେଲେ ଏଥି ବସିବ ନିଶ୍ଚିତ ॥ ସେ ବିକ୍ରମାଦିତ୍ୟ ଦେହେ ଥିଲା କେତେ ଗୁଣ । କହ ବୋଲି ପଚାରିଲେ ଭୋଜ ନୃପଗଣ ॥ କହଇ ପୁତ୍ତଳି ତାଙ୍କୁ ଶୁଣ ଏହି ବାଣୀ । ବିକ୍ରମ ମିହିର ଥିଲେ ଭବେ ମହାଦାନୀ ॥ ପ୍ରଜାଗଣ ପାଳୁଥାନ୍ତି ଅତି ଯତନରେ ॥ ସୁପଣ୍ଡିତ ବିପ୍ର ଜଣେ ଥିଲେ ସେ ନଗରେ । ଜାଣନ୍ତି ସେ ବେଦ ବିଦ୍ୟା ମନ୍ତ୍ର ତନ୍ତ୍ର ସର୍ବ । ସମ ତାଙ୍କୁ କବିପଣେ ନୋହନ୍ତି ଭାର୍ଗବ ॥ ରାଜସଭା ମଧ୍ୟେ ବସନ୍ତି ସେ ପ୍ରତିଦିନ । ପୁରସ୍କାର ରୂପେ ପାଆନ୍ତି ବହୁ ରତ୍ନ ଧନ ॥ ଶଙ୍କର ବୃଦ୍ଧ ବୋଲିଣ ତାଙ୍କ ପୁତ୍ର ଥିଲା । ମନ ଦେଇ ନ ପଢ଼ି ସେ ଗଜମୂର୍ଖ ହେଲା ॥ ସେ ପଣ୍ଡିତ କାଳବଶେ ଛାଡ଼ିଲେ ଶରୀର । ଶଙ୍କର ବୃଦ୍ଧ କରିଲେ ଶ୍ରାଦ୍ଧାଦି ସତ୍ୱର ॥ ପିତାମୃତ୍ୟୁ ପରେ ଦୁଃଖେ ଯାପିଲେ ଜୀବନ । ଗ୍ରାମ ଲୋକେ କଲେ ତାଙ୍କୁ ତେଣୁ ହତମାନ୍ୟ ॥ ଯେଉଁମାନେ ତା ପିତାଙ୍କୁ ପୂଜା କରୁଥିଲେ । ସେହିମାନେ ତାକୁ ପୁଣି ମୋଟେ ନ ପୁଚ୍ଛିଲେ ॥ ରାଜାଙ୍କର ସଭାରେ ସେ ବସି ନ ପାରିଲା । ଲଜେ ରହି ଏକମନେ ବିଚାରି ସେ କଲା ॥ ପିତାର ମୋ ସୁପଣ୍ଡିତ ଥିବାରୁ ସକଳେ । ରାଜା ପ୍ରଜା ସମ୍ମାନରେ ମାନ୍ୟ କରୁଥିଲେ ॥ ହେଲି ମୁହିଁ ମହାମୂର୍ଖ କେ ମୋତେ ଖୋଜିବ । ପଣ୍ଡିତପୁତ୍ର ମୁଁ ପୁଣି ଧିକ ମୋର ଜୀବ ॥ ଏଣେ ଦରିଦ୍ର କୁଟୁମ୍ବ ମୋର କିଛି ଲୋଡ଼ା ନାହିଁ । ଆଜ ଏଥେ ନ ରହିବି ଅପମାନ ସହି ॥ ଅପମାନ-ଠାରୁ ଶ୍ରେଷ୍ଠ ଅଟଇ ମରଣ । ବିଦେଶକୁ ବିଦ୍ୟାଅର୍ଥେ କରିବି ଗମନ ॥ ଉଠିଲା ସେ ଏହିପରି ନିଷ୍ଠା ଧରି ମନେ । ଗୃହ ଛାଡି ଗଲା ମୂର୍ଖ

ଭୀଷଣ କାନନେ ॥ ଯାଉଁ ଯାଉଁ ଦେଖିଲା ସେ ଅରଣ୍ୟମଣ୍ଡଳେ । ବସିଥିଲେ ତପୀ ଜଣେ ବଟବୃକ୍ଷ ତଳେ ॥ ପ୍ରଜ୍ଜ୍ୱଳିତ ଅଗ୍ନିପରି ତେଜ ବପୁଜଇ । ଅଛନ୍ତି ସେ ଏକା ହୋଇ କେହି ସଙ୍ଗେ ନାହିଁ ॥ ଦେଖି ତାଙ୍କୁ ମୂର୍ଖ ଦ୍ୱିଜ ବିଚାରଇ ମନେ । ଦେଖିଲି ମୁଁ ଭାଗ୍ୟେ-ବଳେ ଏହାଙ୍କୁ ନୟନେ ॥ ଦୟାକଲେ ଏହି ତପୀ ପଣ୍ଡିତ ହୋଇବ । ଏହା ଭାବ କହିଲା ସେ ତପୀପାଦେ ସେବ ॥ ଫଳମୂଳ ଖାଇ ସେବା କରେ ନିରନ୍ତର । ଦେଖି ତାହା ତୋଷ ହୋଇ ସେହି ତପୀବର ॥ ପାଶେଡାକ ପଚାରିଲେ କହଆରେ ବାବୁ । କ କାରଣେ ଏତେ କଷ୍ଟେ ଆମ୍ଭଙ୍କୁ ତୁ ସେବୁ ॥ ତାହା ଶୁଣି ସେ ଶଙ୍କର ପଡ଼ି ତାଙ୍କ ପାଦେ । ଶୋକଭରେ ଜଣାଇଲା ଅଶ୍ରୁ ଗଦଗଦେ ॥ ଆଜନ୍ମରୁ ମୂର୍ଖ ମୁହିଁ ପାଠ ପଢ଼ି ନାହିଁ । କେହି ମୋତେ ସେହିହେତୁ ପଚାରନ୍ତି ନାହିଁ ॥ ଯେଉଁ ରୂପେ ଏ ଦେହରେ ବିଦ୍ୟା ହେବ ମୋର । କୃପା କରି ସେ କଥାକୁ କରନ୍ତୁ ବିଚାର ॥ ତାହା ଶୁଣି ତପୀ ମନେ ହୋଇ ଅତି ତୋଷ । ଦେଲେ ତା କର୍ଣ୍ଣରେ ସିଦ୍ଧମନ୍ତ୍ର ଉପଦେଶ ॥ ଶଙ୍କର ବୁଦ୍ଧ ସେ ତପୀ ପାରୁଣରେ ରହି । ଜପ କଲା ସେ ମନ୍ତ୍ରକୁ ସ୍ଥିରଚିତ୍ତ ହୋଇ ॥ ସିଦ୍ଧ ମନ୍ତ୍ର ପ୍ରଭାବରେ ପଣ୍ଡିତ ହୋଇଲା । ତପୀଠାରୁ ବିଦା ହୋଇ ଉଭରତେ ଚଳିଲା ॥ ନିଜ ଦେଶେ ଯାଉଁ ଯାଉଁ ବାଟରେ ଦେଖିଲା । କାନନ ଭିତରେ ଏକ ଶିବାଳୟ ଥିଲା ॥ ସେହି ସ୍ଥାନେ ରହିଲା ସେ ହୋଇଣ ଆନନ୍ଦ । ଶିବଙ୍କ ସମ୍ମୁଖେ ଅଛି ଅତି ରମ୍ୟ ହ୍ରଦ ॥ ପଦ୍ମ ଆଦି ପୁଷ୍ପ ଫୁଟି ଦିଶେ ମନୋହର । ଦେଖି ତା ଶଙ୍କର ବୁଦ୍ଧ କରଇ ବିଚାର । ରହି ଏଥେ ଆଜ ରାତ୍ର ଯିବ ପ୍ରଭାତରେ । ଏହା ଭାବ ରହିଲା ସେ ଶିବଙ୍କ ମନ୍ଦିରେ ॥ ରାତ୍ର ଆସି ପ୍ରହରେକ ହେଲା ସେ ଉପରୁ । ଆଠକନ୍ୟା ବାହାରିଲେ ସେ ଜଳ ଭିତରୁ ॥ ମଣ୍ଡି ହୋଇଛନ୍ତି ଦେହେ ନାନା ଅଳଙ୍କାର । ସୁନ୍ଦରପଣରେ ତାଙ୍କୁ

ସେହି ପଠାନ୍ତର ॥ ତନ୍ତ୍ର ନାହିଁ ଦେହ ବସ୍ତ୍ର ଜନ୍ତୁ ବାହାରନ୍ତି । ଗନ୍ଧ ପୁଷ୍ପ ବିଲ୍ୱ ଦଳ ହସ୍ତେ ଧରିଛନ୍ତି ॥ ଶିବଙ୍କୁ ପୂଜିଲେ ପଶି ମନ୍ଦିର ଭିତରେ । ପୂଜା ଶେଷ କଲେ ନାନାବିଧ ଉପଚାରେ ॥ ସେ ଉତ୍ତାରୁ ଏକମୁଖେ ଦେଇଣ ହୁଳହୁଳି । ନୃତ୍ୟ କଲେ ଆନନ୍ଦରେ ଚହିଁ ସର୍ବ ବାଳୀ ॥ ରାତ୍ରଶେଷେ ଜଳେ ପଶି ନିଜ ସ୍ଥାନେ ଗଲେ । ତା ଦେଖି ଶଙ୍କର ତାଙ୍କ ପଛରେ ଚାଲିଲେ ॥ ଜଳେ ପଶୁ ବୋଧ ହେଲା ଅଗ୍ନି ପରି ତାଙ୍କୁ । ଭୟ ପାଇ ସେହିକ୍ଷଣି ଫେରିଲା କୂଳକୁ ॥ ସେହିଠାରୁ ବାଟ ଚାଲି ପୁଣି କେତେ ଦିନେ । ପ୍ରବେଶ ହୋଇଲା ଯାଇ ଆପଣା ଭୁବନେ ॥ ହେବାରୁ ପଣ୍ଡିତ ଗଲା ରାଜାଙ୍କର ପାଶେ । ବିକ୍ରମଆଦିତ୍ୟ ଦେଖି ବସାଇଲେ ପାଶେ । ତାହାପରେ ପଚାରିଲେ ସେ ସକଳ କଥା । କହିଗଲା ବିପ୍ର ତାଙ୍କୁ ଘଟିଥିଲା ଯଥା ॥ ସମୁଁ ଶିବାଳୟ କଥା ଶୁଣିଲେ ନୃପତି । ସଙ୍ଗେ ଘେନି ସେ ଦ୍ୱିଜକୁ ଚଳିଲେ ଝଟତି ॥ ପ୍ରବେଶ ହୋଇଲେ ଯାଇ ଶିବଙ୍କ ମନ୍ଦିରେ । ଦିନଶେଷହେଲା ରାତ୍ର ପ୍ରହରକଠାରେ ॥ ପୂର୍ବପରି ଅଷ୍ଟକନ୍ୟା ଜଳୁ ବାହାରିଲେ । ରାତ୍ରେ ଶିବ ପୂଜି ପ୍ରାତଃ ଜଳେ ସେ ପଶିଲେ ॥ ବିକ୍ରମ ଆଦିତ୍ୟ ତାହା ଦେଖୁଥିଲେ ବସି । କନ୍ୟାଙ୍କ ପଛରେ ଗଲେ ଜଳମଧ୍ୟେ ପଶି ॥ ଯାଉ ଯାଉ ପ୍ରବେଶିଲେ ପାତାଳ ଭୁବନେ । ପଚାରିଲେ ସେ ନାରୀଙ୍କି ଚହିଁ ତୋଷମନେ ॥ ହେ ସୁନ୍ଦରୀଗଣ କହ ଏ କେଉଁ ଭୁବନ । ତାହା ଶୁଣି ନାରୀଗଣ ଭଣିଲେ ବଚନ ॥ ଆହେ ନୃପ ଜାଣ ଏହି ଅଟଇ ପାତାଳ । ଏ ଭୁବନେ ଜରା ମୃତ୍ୟୁ ନାହିଁ ପ୍ରାଣୀଙ୍କର ॥ ମର୍ତ୍ତ୍ୟକୁ ନ ଯାଇ ତୁମ୍ଭେ ରହ ଏହିଠାରେ । ବିକ୍ରମ ଆଦିତ୍ୟ ଶୁଣି କହନ୍ତି ସଧୀରେ ॥ ମୁଁ ରହିବି ଯେବେ ଏହି ପାତାଳ ଭୁବନେ । ଅନାଥ ହୋଇବେ ଜାଣ ମୋର ପ୍ରଜାମାନେ ॥ ଫେରିଯିବେ ଅତିଥିଏ ଆସି ମୋର ଦ୍ୱାରୁ । ଯିବି ମୁଁ ମେଲାଣି ଦିଅ ସନ୍ତୋଷେ ଏଠାରୁ ॥ ତାହା

ଶୁଣି ଅଷ୍ଟନାଗ୍ନି ହୋଇ ତୋଷ ମନ । ତାଙ୍କ ହସ୍ତେ ଆଣି ଦେଲେ ଆଠୋଟି ରତନ ॥ ରତ୍ନ ଘେନି ତହୁଁ ନୃପ ଯୋଗାସନେ ବସି । ପ୍ରବେଶ ହୋଇଲେ ଶିବ ମନ୍ଦିରରେ ଆସି ॥ ଶଙ୍କରଙ୍କୁ ସଙ୍ଗେ ଘେନି ନିଜ ଦେଶେ ଗଲେ । ଯାଉଯାଉ ବାଟରେ ସେ [illegible]ର ଦେଖିଲେ ॥ ଅରଣ୍ୟ ଭିତରେ ବସି ଏକ ବିପ୍ରବର । କାନ୍ଦୁଥିଲା ନିନ୍ଦାକରି କରମକୁ ତାର ॥ ବିକ୍ରମ ଆଦିତ୍ୟ ଶୁଣି ତା ପାଶକୁ ଗଲେ । କାନ୍ଦିବା କାରଣ ସେହି ବିପ୍ରଙ୍କୁ ପୃଚ୍ଛିଲେ ॥ ଶୁଣି ଅତି ଦୁଃଖେ ତାଙ୍କୁ କହଇ ବ୍ରାହ୍ମଣ । ବହୁକୁଟୁମ୍ବୀ ମୁଁ ପୁଣି ଗରିବ ନିର୍ଦ୍ଧନ ॥ ଦିନ ଦିନେ ଦିନେ ଖାଇବାକୁ ନ ମିଳଇ । ଘରଯାଇ କଟୁବାକ୍ୟ ନ ପାରିଲି ସହି ॥ ଅରଣ୍ୟରେ ସେହି ହେତୁ କରୁଛି ରୋଦନ । ତା ଶୁଣି ବିକ୍ରମ ହେଲେ ତାହାଠାରେ ପ୍ରସନ୍ନ ॥ ଆଣିଥିବା ଅଷ୍ଟରତ୍ନ ସେ ବିପ୍ରକୁ ଦେଲେ । ଆନନ୍ଦ ମନରେ ନିଜ ନଗରେ ଚଳିଲେ ॥ ଗରିବ ବ୍ରାହ୍ମଣ ପାଇ ସେ ଅଷ୍ଟରତନ । ବିକି ଭାଙ୍ଗି ମହାସୁଖେ କଟାଇଲା ଦିନ ॥ ବୁଝ ଆହେ ଭୋଜନୃପ ମନରେ ବିଚାରି । ବିକ୍ରମଆଦିତ୍ୟ କେଡ଼େ ପରଉପକାରୀ ॥ ଯେବେ ତୁମ୍ଭେ ତାଙ୍କ ସମ ଅଟ ନରବର । ତେବେ ସୁଖେ ସିଂହାସନେ କରଆରୋହଣ । ଏହାକହି ସେ ପୁତ୍ତଳି ଗଲାସ୍ୱର୍ଗପୁର । ଶୁଣି କାହୁଡ଼ିଲେ ଲାଜେ ଭୋଜ ନୃପବର ॥ ଦ୍ୱାବିଂଶତି ପୁତ୍ତଳିର କଥା ହେଲା ଶେଷ । ସିଂହ ଜଗନ୍ନାଥ କହେ ସ୍ମରି ରମାଈଶ ॥

---

## ତ୍ରୟୋବିଂଶ ପୁତ୍ତଳିର କଥା

ତହୁଁ ଆରଦିନ ଭୋଜ ପୂର୍ବ ପରକାରେ । ଯଥାବିଧି ନିତ୍ୟକର୍ମ ବହନ ସାରିଲେ ॥ ବସିବାକୁ ସିଂହାସନେ କଲେ ମନେ ବିଚାର । ପ୍ରବେଶ ହୁଅନ୍ତେ ଯାଇ ନିକଟରେ ତାର ॥ ତାଙ୍କୁ ଦେଖି ତ୍ରୟୋବିଂଶ

ପୁତ୍ତଳିକା ହସି । ବୋଇଲା ହେ ନୃପ ଏଥି ନ ପାରିବ ବସି
ଏଥିରେ ବସନ୍ତ ରଜା ବିକ୍ରମ ମହିଶ୍ୱର । ତାଙ୍କପରି ଗୁଣୀ ଥିଲେ
ବସ ନରବର ॥ ଏହା ଶୁଣି ଭୋଜ ତାକୁ ପଚାରିଲେ ସ୍ନେହେ ।
କି କି ଗୁଣ ଥିଲା କହ ସେ ବିକ୍ରମ ଦେହେ ॥ ତାହା ଶୁଣି ସେ
ପୁତ୍ତଳି ବୋଲଇ ବଚନ । କହୁଅଛି ତାହା ଶୁଣ ହୋଇ ସ୍ଥିରମନ ॥
ଉଜ୍ଜଳ ନଗର ରଜା ବିକ୍ରମ ଆଦିତ୍ୟ । ପ୍ରଜାଙ୍କୁ ସେ ପୁତ୍ର ପରି
ପାଳନ୍ତି ସତତ ॥ ଦିନେ ସେ ନୃପତି ଗଲେ ଦିଗ ବିଜେ କରି ।
ତା ମଧ୍ୟରେ ହେଲା ଯାହା ଶୁଣ ଦଣ୍ଡଧାରି ॥ ସୌଦାଗର ଜଣେ
ତାଙ୍କ ଦେଶ ମଧ୍ୟେ ଥାଏ । କେତେ ଧନ ଥିଲା ତାର କହିବ ବା
କିଏ ॥ ହାତୀ ଘୋଡ଼ା ଗୋରୁ ଗାଈ ଥିଲା ଅସୁମାର । ଭାଗ୍ୟବଳେ
ଥିଲେ ପୁଣି ଚାରିପୁତ୍ର ତାର ॥ ସୌଦାଗର ଦିନେ ସେହି
ପୁତ୍ରଙ୍କୁ ଡକାଇ । ବୋଲେ ମୋହଠାରୁ ତୁମ୍ଭେ ଶୁଣ ଚାରିଭାଇ ॥
ଅଳ୍ପଦିନେ ମୃତ୍ୟୁ ମୋର ହୋଇବ ନିଶ୍ଚୟ । ସନ୍ଦେହ ନ କରି ଏହା
ମନେ ରଖିଥାଅ ॥ ମିଳିମିଶି ଚାରିଭାଇ ରହିବ ଏକାଠି । ଜ୍ୟେଷ୍ଠ-
ଭ୍ରାତାଠାରେ ସଦା ରଖିଥିବ ଭକ୍ତି ॥ କନିଷ୍ଠକୁ ପୁତ୍ରପରି କରିବ
ପାଳନ । କଦାଚିତେ ନ ଶୁଣିବ ପରାରି ବଚନ ॥ କର୍ମବଶେ ଭିନେ
ଯେବେ ହେବ କେତେବେଳେ । ଅଛି ଯାହା ମୋ ଖଟରେ ଚାରି
ଖୁରାତଳେ ॥ ବଣ୍ଟନ କାଳରେ ତାହା ଯତନେ ଖୋଳିବ ।
ଯଥାବିଧି ନିୟମରେ ସବୁ ବାଣ୍ଟିନେବ ॥ କଳି ନ କରିବ ତୁମ୍ଭେ
ମାନି ମୋ ବଚନ । କଳହରେ ଘରୁ ଶିରୀ ତୁଟିଯାଏ ଜାଣ । ଏହି-
ପରି ଉପଦେଶ ଦେଇ ସେ ପୁତ୍ରଙ୍କୁ । ଅଳ୍ପ ଦିନେ ସୌଦାଗର
ତେଜିଲା ଦେହକୁ ॥ ପିତା ମୃତ୍ୟୁ ଦେଖି ପୁତ୍ରେ କାନ୍ଦିଲେ ଅପାର ।
ଶେଷ କଲେ ବିଧିମତେ ପ୍ରେତକ୍ରିୟା ତାର ॥ ଏକତ୍ରରେ ଚାରିଭାଇ
ରହି ନ ପାରିଲେ । ଭିନ୍ନ ଭିନ୍ନ ହେବା ଲାଗି ବିଚାର କରିଲେ ॥

ପିତାକଥା ସ୍ମରି ଗଲେ ମିଳି ଚାରିଭାଇ । ଖଟଖୁରାତଳ ଖୋଳିଲେ ସେ ସର୍ବେ ରହି ॥ ଚାରିଖୁରା ତଳେ ଥିଲା ଚାରିଗୋଟି ଗାର । ତୁଷ ମାଟି ଅସ୍ଥି ଅଙ୍ଗାରରେ ତାହା ଭରା ॥ ଚାରି ଗାର ଚାରି ଦ୍ରବ୍ୟ ଭାଇଏ ଦେଖିଲେ । ସେଥିର ମରମ କିଛି ଜାଣି ନ ପାରିଲେ ॥ ଗାର ଘେନି ପଚାରିଲେ ବୁଲି ନାନାସ୍ଥାନେ । ସର୍ବେ ଅସମର୍ଥ ହେଲେ ସେ ତଥ୍ୟ ବର୍ଣ୍ଣନେ ॥ ତହୁଁ ସେ ବିକ୍ରମାଦିତ୍ୟ ରାଜା ପାଶେ ଗଲେ । ଯୋଗକୁ ବିକ୍ରମାଦିତ୍ୟ ସେକାଳେ ନ ଥିଲେ ॥ ଭଗବଜେ କରିବାକୁ ଯାଇଥିଲେ ସେହି । ତା ମରମ ପାତ୍ରମନ୍ତ୍ରୀ ନ ଜାଣିଲେ କେହି ॥ ବରଷରେ ତହୁଁ ଚାରି ସୌଦାଗର ଗଲେ । ପଶ୍ଚିମ ଅଙ୍ଗିର ଦେଶ ରାଜାଙ୍କୁ ଭେଟିଲେ । ସେ ନୃପତି ସଭାମଧ୍ୟେ ଏହା ପଚାରନ୍ତେ । ପାତ୍ର ମନ୍ତ୍ରୀ ସଭାସଦ ଥିଲେ ତହିଁ ଯେତେ ॥ ତାହାର କାରଣ କିଛି ନ ପାରିଲେ କହି । ବରଷରେ ଫେରି ତହୁଁ ଗଲେ ଚାରି ଭାଇ ॥ ଯିବାବେଳେ ପଥେ ହେଲା ଘଟଣା ଯେମନ୍ତ । ବୁଝାଇ କହିବା ଶୁଣ ତହିଁର ବୃତ୍ତାନ୍ତ ॥ ବିଧବା ବ୍ରାହ୍ମଣୀ ଜଣେ ଥିଲା ସେ ରାଜ୍ୟରେ । ଅତ୍ୟନ୍ତ ସୁନ୍ଦରୀ ସେହୁ ପୃଥିବୀ ମଧ୍ୟରେ ॥ ନୂତନ ଯୌବନା ହୋଇ ରହୁ ଘରେ ଦିନ । ପ୍ରଭାତେ ନଦୀକି ଗଲା କରିବାକୁ ସ୍ନାନ ॥ ବାସୁକି ତା ରୂପ ଦେଖି ମଦନ ଆତୁରେ । ମାୟାରୂପ ଧରି ଯାଇ ତା ସଙ୍ଗେ ରମିଲେ ॥ ସେହିଦିନ ଗର୍ଭସ୍ଥିତ ହେଲା ସେ ବାଳାର । ଜାଣି ସେ କଥାକୁ ତା'ର ଜ୍ଞାତି ସହୋଦର ॥ ପରପ୍ରୀତି ଦୋଷେ ତାକୁ ନ ରଖିଲେ ଘରେ । ବ୍ରାହ୍ମଣୀ ରହିଲା ଯାଇ କୁମ୍ଭାର ଶାଳରେ ॥ ଦଶମାସ ପୂରଯାନ୍ତେ ଜନ୍ମିଲା କୁମର ॥ ତା ତେଜକୁ ସମ ନୋହି ରବି ବୈଶ୍ୱାନର ॥ ଦେହରେ ତା ବିରାଜଇ ଚକ୍ରବର୍ତ୍ତୀ ଚିହ୍ନ । ବାସୁକି ପାତାଳେ ଥାଇ ଜାଣିଲେ ତକ୍ଷଣ ॥ ଆନନ୍ଦେ ଆସିଲେ ସେହୁ କୁମ୍ଭାରଶାଳକୁ । ଶ୍ରୀ ଶାଳିବାହନ ନାମ

ଦେଲେ କୁମରଙ୍କୁ ॥ ବ୍ରାହ୍ମଣୀଙ୍କୁ ଦେଇଗଲେ ଅସଂଖ୍ୟ ରତନ । ପରମ ଆନନ୍ଦେ ସେହୁ ପାଳିଲା ନନ୍ଦନ ॥ ହେଲା ଯହୁଁ ପାଞ୍ଚବର୍ଷ ଶାଳିବାହନଙ୍କୁ । ସଙ୍ଗେ ଘେନି ଖେଳିଲା ସେ କୁମ୍ଭାର ପିଲାଙ୍କୁ ॥ ସୈନ୍ୟ ହାତୀ ଘୋଡ଼ାମାନ ମାଟିରେ ଗଢ଼ଇ । ସଙ୍ଗୀ ପିଲାଙ୍କୁ ସେ ପାତ୍ରମନ୍ତ୍ରୀ କରେ ନେଇ ॥ ରାଜାହୋଇ ଆପେ ନିତ କରୁଥାଏ ଖେଳ । ଖେଳିବା ସମୟେ ସେହି ଚାରି ସୌଦାଗର । ବିରସ ମନରେ ସେହିବାଟେ ଯାଉଥିଲେ । ଶାଳିବାହନ ତାହାଙ୍କୁ ପାଖକୁ ଡାକିଲେ ॥ ପଚାରନ୍ତେ ଚାରି ଗାର ତା ଆଗରେ ଥୋଇ । ବୁଝାଇ କହିଲେ ସବୁ ତାକୁ ସ୍ଥିରହୋଇ ॥ ଅତି ବୁଦ୍ଧିମାନ ଅଟେ ସେ ଶାଳିବାହନ । ଭାବି ଭାବି ସେମାନଙ୍କୁ କହିଲା ଏସନ ॥ ଦେଖ ନାମ ଲେଖା ଅଛି ଗାରମାନଙ୍କରେ । ବାଣ୍ଟି ନେବ ତୁମ୍ଭେମାନେ ସେହି ପରକାରେ ॥ ଚକ୍ଷୁ ଥିବା ଗାର ମଧ୍ୟେ ନାମ ଯାର ଅଛି । ଧାନ ମୁଗ ଆଦି ଶସ୍ୟ ତା ଭାଗେ ପଡ଼ିଛି ॥ ମୃତ୍ତିକା ଗାରରେ ଲେଖା ଅଛି ନାମ ଯାର । ଜମି ବାଡ଼ି ଭୂମି ସବୁ ହୋଇଲା ତାହାର ॥ ଅଙ୍ଗାର ଗାରରେ ଯାର ନାମ ଅଛି ରହି । ସୁନା ରୁପା ଧାତୁ ଦ୍ରବ୍ୟ ନେବ ସବୁ ସେହି ॥ ଅସ୍ଥି ଗାରଗୋଟି ଲେଖା ଅଛି ଯା' ନାମରେ । ଗୋରୁ ଗାଈ ହାତୀ ଘୋଡ଼ା ହେଲା ତା' ଭାଗରେ ॥ ହେଲୁ ବୁଝି ବଣିକେ ସେ ଛିଣ୍ଡାଇ ଏପରି । ଚାଲିଗଲେ ଆନନ୍ଦରେ ସୌଦାଗର ଚାରି ॥ ପାଖେଥିବା ଲୋକେ ଦେଖି ହେଲେ ଆଚମ୍ବିତ । ବୋଲନ୍ତି ରେ ଧନ୍ୟ ଶିଶୁ କେଡ଼େ ବୁଦ୍ଧିମନ୍ତ ॥ ସେ ଦେଶର ରାଜା ଶୁଣି ଏପରି ଚରିତ୍ର । ଶାଳିବାହନଙ୍କୁ ଘେନି ଗଲେ ନିଜପୁର ॥ ଗୃହେ ରଖି ପାଳିଲେ ସେ କରି ଧର୍ମସୁତ । ଚନ୍ଦ୍ରଦତ୍ତେ ଏହି କଥା ହୋଇଲା ବିଦିତ ॥ ବିଚାରିଲେ ସାରି ତେଣେ ବିଷମ ଆଦରୀ । ନିଜ ନଗରୀରେ ଆସି ହେଲେ ଉପସ୍ଥିତ ॥ ରାଜପାରିଷଦେ ତାଙ୍କୁ ସୌଦାଗର କଥା । କହି ବୁଝାଇଲେ ହେଲା

ଯେପରି ବ୍ୟବସ୍ଥା ॥ ଭେଦ ନ ପାରିଲେ ବଡ଼ ବଡ଼ ଲୋକେ ଯାହା । ଶିଶୁ ଶାଳବାହନ ଯେ କହିଦେଲା ତାହା ॥ ବିକ୍ରମ ଆଦିତ୍ୟ ଶୁଣି ବିସ୍ମିତ ହୋଇଲେ । ଶାଳବାହନକୁ ଆଣିବାକୁ ବିଚାରିଲେ ॥ ଦୂତ ପଠାଇ ଅଙ୍ଗିରପଞ୍ଚ ନୃପଠାକୁ । କହିଲେ ସେ ମାଗି ଆଣ ଶାଳବାହନକୁ ॥ ଅଙ୍ଗିରପଞ୍ଚ ପାଶକୁ ଗଲା ସେହି ଦୂତ । ବୋଇଲା ପେଷିଲେ ମୋତେ ବିକ୍ରମ ଆଦିତ୍ୟ ॥ ଶାଳବାହନକୁ ଦିଅ କହିଛନ୍ତି ସେହୁ । ସେ ନୃପତି ଶୁଣି ବୋଲେ କ୍ରୁଦ୍ଧ ହୋଇ ତହୁଁ ॥ ଆମ୍ଭେ ବିକ୍ରମାଦିତ୍ୟର ଅଧୀନ ତ ନୋହୁ । ପୁଅ ମାଗିବାକୁ ସେହୁ ସାହସିଲା କାହୁଁ ॥ କହ ଯାଇ ଦେବ ନାହିଁ ଶାଳବାହନକୁ । ଇଚ୍ଛା ହେଲେ ଦେଖିଯାଉ ଏଠାରେ ପୁତ୍ରକୁ ॥ ଶୁଣି ତାହା ଦୂତ ଆସି କହିଲା ସକଳ । ବିକ୍ରମ ଆଦିତ୍ୟ ଶୁଣି ହେଲେ କ୍ରୋଧାନଳ ॥ ଚତୁରଙ୍ଗ ସେନା ଘେନି ଅଙ୍ଗିରପଞ୍ଚନେ । ପ୍ରବେଶି ପେଷିଲେ ଦୂତ ରାଜା ସନ୍ନିଧାନେ ॥ ବୋଇଲେ ସେ ନୃପକୁ ହେ କହ ଏବେ ଯାଇ । ବେଗେ ଆଣିଦେଉ ଶାଳବାହନକୁ ସେହି । ନୋହିଲେ ସେ କରୁ ଆସି ଆମ୍ଭ ସଙ୍ଗେ ରଣ । ତାହାଶୁଣି ସେ ନୃପତି ସାଜିଲା ବି ସୈନ୍ୟ ॥ ବିକ୍ରମ-ଆଦିତ୍ୟ ସଙ୍ଗେ ଆରମ୍ଭିଲା ଯୁଦ୍ଧ । ଭୀଷଣ ସମରେ ତାର ସୈନ୍ୟ ହେଲେ ବଧ ॥ ବିକ୍ରମାଦିତ୍ୟଙ୍କୁ ତହିଁ ହାରି ପଳାଇଲା । ଶାଳବାହନକୁ ଶୋକେ ଯାଇ ଟସ କହିଲା ॥ ଅଟଇ ବିକ୍ରମାଦିତ୍ୟ ଚକ୍ରବର୍ତ୍ତୀ ରାଜା । ବହୁ ବହୁ ରାଜା ତାର ଅଟନ୍ତି ପରଜା ॥ ଯୁଦ୍ଧକରି ତାଙ୍କ ସଙ୍ଗେ ହାରିଗଲି ମୁହିଁ । ପଶିବା ଶରଣ ବିନା ରାହା ଆଉ ନାହିଁ ॥ ଏହା ଶୁଣି କୋପ କଲା ସେ ଶାଳବାହନ । ବୋଲେ ଆଜ୍ଞା ଦିଅ ମୋତେ କରିବି ମୁଁ ରଣ ॥ ଏହା କହି କୁମ୍ଭକାର ଶାଳକୁ ସେ ଗଲା । ବିବିଧ ଜାତି ସେନା ତହିଁ ମାଟିରେ ଗଢ଼ିଲା ॥ ପିତା ବାସୁକିଙ୍କି ପୁଣି କଲା ମନେ ଧ୍ୟାନ । ସେକ୍ଷଣି ସେ ଆସି ତାଙ୍କୁ ଦେଲେ

ଜୀବଦାନ ॥ ମିଳୁଲାଏ ଜୀବ ପାଇ ହେଲେ ମହାବୀର । ଶାଳିବାହନ ଆଜ୍ଞାରେ କଲେ ଯୁଦ୍ଧ ଘୋର ॥ ଦୁଇ ସେନାଙ୍କର ହେଲା ସମର ବହୁତ । ସେ ଯୁଦ୍ଧରେ ହାରିଗଲେ ବିକ୍ରମ ଆଦିତ୍ୟ ॥ ବିକ୍ରମଙ୍କ ବହୁ ସୈନ୍ୟ ଗଲେ ତହିଁ ମରି । ଯେତେକ ବା ବଞ୍ଚିଥିଲେ ପଳାଇଲେ ଡରି ॥ ସେମାନଙ୍କୁ ଘେନି ରାଜା ବିକ୍ରମ ମିହିର । ଗ୍ରାମ ପ୍ରାନ୍ତେ ବିଶ୍ରମିଲେ କରିଣ ଶିବିର ॥ ଅଷ୍ଟକୁଳୀ ନାଗମାନେ ଆସି ରଜନୀରେ । ସେ ସୈନ୍ୟଙ୍କୁ ନାଶ କଲେ ବାସୁକି ଆଜ୍ଞାରେ ॥ ଗନ୍ଧର୍ବସେନ ଅଟନ୍ତି ବାସୁକିଙ୍କ ମିତ୍ର । ବିକ୍ରମ ଆଦିତ୍ୟ ରାଜା ସେ ଗନ୍ଧର୍ବପୁତ୍ର ॥ ତାଙ୍କ ଜୀବରକ୍ଷା କରି ମିତ୍ର ସୁତ ବୋଲି । ସୈନ୍ୟ ନାଶି ଅଷ୍ଟନାଗେ ଗଲେ ତହୁଁ ଫେରି ॥ ସଇନମାନଙ୍କୁ ନାଗେ କରିବାରୁ ହତ । ମନେ ମନେ ଚିନ୍ତେଇଲେ ବିକ୍ରମ ଆଦିତ୍ୟ ॥ ବାସୁକିଙ୍କ ପିତାଙ୍କର ମିତ୍ର ବୋଲି ଜାଣି । ଧ୍ୟାନ କଲେ ମନମଧ୍ୟେ ତାଙ୍କୁ ନୃପମଣି ॥ ବାସୁକି ଜାଣିଲେ ଥାଇ ପାତାଳଭୁବନେ । ଉଭା ହେଲେ ଆସି ବିକ୍ରମଙ୍କ ସନ୍ନିଧାନେ । ବୋଇଲେ ପ୍ରସନ୍ନ ହେଲି ମାଗ ଇଚ୍ଛା ବର । ବିକ୍ରମ ଆଦିତ୍ୟ ଶୁଣି ଯୋଡି ଦୁଇ କର ॥ କହିଲେ ଯୁଦ୍ଧେ ମୋ ମଲେ ଯେତେକ ସଇନ । ଦୟାକରି ସେମାନଙ୍କୁ ଦିଅ ଜୀବଦାନ । ଯହିଁ ଶୁଣି ବାସୁକି ତାକୁ ଦୁଇଭାଣ୍ଡ ସୁଧା । ସମର୍ପି ବୋଇଲେ ଏବେ କରି ହେ ସୁବିଧା ॥ ଏହି ଯେ ଅମୃତ ଏଥୁଁ ନେଇ ଟୋପେ ଟୋପେ । ମୃତଶବ ମୁଖେ ଦେଲେ ଉଠିବେ ସେ ଆପେ ॥ ଆନନ୍ଦେ ନୃପତି ସେହି ସୁଧାଭାଣ୍ଡ ନେଲେ । ମୃତ ସୈନ୍ୟମାନଙ୍କର ସମୀପକୁ ଗଲେ ॥ ସେକାଳେ ବାସୁକୀ ବୃଦ୍ଧ ବ୍ରାହ୍ମଣ ରୂପରେ । ମିଳିଲେ ବିକ୍ରମାଦିତ୍ୟ ନୃପଙ୍କ ଆଗରେ ॥ ସତ୍ୟ କରାଇଣ ତାଙ୍କୁ ମାଗିଲେ ସେ ଦ୍ୱିଜ । ଦୁଇ ସୁଧା ଭାଣ୍ଡ ଦିଅ ହେ ବିକ୍ରମ ରାଜ । ସେହିକ୍ଷଣି ସେ ବିକ୍ରମ

ସତ୍ୟ ଭଙ୍ଗ ଭୟେ । କପଟ ବିପ୍ରଙ୍କୁ ଗୃହ୍ନି ନିର୍ମଳ ହୃଦୟେ ॥ ସୁଧା ଦୁଇଭାଣ୍ଡ ଟେକି ଦିଅନ୍ତେ ତାହାଙ୍କୁ । ବିଚାରିଲେ ନାଗରାଜ ଆପଣା ମନକୁ ॥ ଜଗତ ଭିତରେ ନାହିଁ ଏପରି ଧାର୍ମିକ । ସେଲାଗି ବିଖ୍ୟାତ ଏହୁ ହି ଜଗତ ଯାକ ॥ ଏହା ଭାବି ନିଜ ରୂପ ତାଙ୍କୁ ଦେଖାଇଲେ । ପୁତ୍ର ଶାଳିବାହନକୁ ଡକାଇଆଣିଲେ ॥ ଯେତେ ସୈନ୍ୟ ଦୁହିଙ୍କର ମରିଥିଲେ ରଣେ । ଜିଆଁଇଲେ ସମସ୍ତଙ୍କୁ ଅମୃତ ସେଚନେ ॥ ବୋଇଲେ ବିକ୍ରମାଦିତ୍ୟ ତୁମ୍ଭେ ମିତ୍ର ସୁତ । ଏ ଶାଳି-ବାହନ ଅଟେ ମୋର ପ୍ରିୟ ପୁତ୍ର ॥ ଦୁଇଭାଇ ମନାନ୍ତର ହେବା ଅସୁନ୍ଦର ॥ ସଙ୍ଗେ ସଙ୍ଗେ ମୋ ଆଗରେ ସମାଧାନ କର ॥ ଦୁଇ ପୁତ୍ରେ ଶୁଣି ପିତା ଚରଣେ ନମିଲେ । କୋଳାକୋଳି ହୋଇ ଦୁହେଁ ସ୍ୱସ୍ଥାନେ ଗମିଲେ ॥ ଦେଖ ଭୋଜରାଜ ସେହି ବିକ୍ରମ ଆଦିତ୍ୟ । କପରି ସେ ସତ୍ୟବାଦୀ ପରହିତେ ରତ ॥ ଯେବେ ତୁମ୍ଭେ ହୋଇଥିବ ତାଙ୍କର ସମାନେ । ତେବେ ଯାଇ ନିର୍ଭୟରେ ବସ ସିଂହାସନେ ॥ ଫେରିଗଲେ ଏହା ଶୁଣି ଭୋଜ ନରସାଇଁ । ପୁତ୍ତଳିକା ଉଡ଼ିଗଲା ସ୍ୱର୍ଗେ ଗୃହ୍ନି ଗୃହ୍ନି । ଏଠାରେ ହୋଇଲା ଶେଷ ତ୍ରୟୋବିଂଶ କଥା ॥ ବିଷ୍ଣୁପାଦେ ରହୁ ସଦା ଜଗନ୍ନାଥ ମଥା ॥

---

## ଚତୁର୍ବିଂଶତି ପୁତ୍ତଳିର କଥା

ପୁଣି ପର ଦିନ ଶୁଭଲଗ୍ନେ ଭୋଜରାଜ । ବସିବାକୁ ସିଂହାସନେ ହେଲେ ସଜବାଜ ॥ ଚତୁର୍ବିଂଶ ପୁତ୍ତଳିକା ବୋଲେ ତାଙ୍କୁ ଦେଖି । ଆହେ ଭୋଜ ନରପତି ବାତୁଳ ହେଲ କି ॥ ବସିବାକୁ ସିଂହାସନେ ନିତି ନିତି ଆସ । ଜାଣ ତ ବସନ୍ତ ଏଥି ବିକ୍ରମ ନରେଶ ॥ ତାଙ୍କ ପରି ଗୁଣ ଯେବେ ଅରଜିଛ ତୁମ୍ଭେ । ତେବେ ଆସି ସିଂହାସନେ

ବସିଯାଅ ବନେ ॥ ତାହା ଶୁଣି ପଚାରିଲେ ଭୋଜ ନରରାଣ । କହ ତେବେ ତାଙ୍କଠାରେ ଥିଲା କି କି ଗୁଣ ॥ ତାହା ଶୁଣି ଆରମ୍ଭିଲା କଥା ସେ ପୁତ୍ତଳ । ଶୁଣ ହେ କହୁଛି ତାଙ୍କ ଏକ କଥା ଭଲ ॥ ବିକ୍ରମ ଆଦିତ୍ୟ ବସି ଏହି ସିଂହାସନେ । ପାତ୍ରମନ୍ତ୍ରୀ ସେନା ସଙ୍ଗ କରୁଥିଲେ ଦିନେ ॥ କାଳିଦାସ ଆଦି କରି ସକଳ ପଣ୍ଡିତ । ସୁଖେ ବସି ଅର୍ଥ କରୁଥିଲେ ନାନା ଶାସ୍ତ୍ର ॥ ସୁବିଖ୍ୟାତ ଜ୍ୟୋତିର୍ବିଦ ବରାହ ମିହିର । ଜଣାଇଲେ ସେ ସମୟେ ଛାମୁରେ ତାଙ୍କର ॥ ରୋହିଣୀଚକ୍ରକୁ ବିଦ୍ଧ ମଙ୍ଗଳ ହୋଇବ । ପୃଥିବୀରେ ଅମଙ୍ଗଳ ସେ ହେତୁ ଘଟିବ ॥ ବୃଷ୍ଟି ନ ହେବାରୁ ଶସ୍ୟ ଉପୁଜିବ ନାହିଁ । ନାଶ ଯିବେ ଜନ ପଶୁ ନିରାହାରେ ରହି ॥ ତାହା ଶୁଣି କହିଲେ ସେ ବିକ୍ରମ ଆଦିତ୍ୟ । ଅନ୍ୟାୟ ଅନୀତି ଆମ ଏ ଦେଶେ ନାହିଁ ତ ॥ ଯାଗ ଯଜ୍ଞ ହେଉଅଛି ବିଧି ମୁତାବକ ॥ କହିଁ ହେବ ଅନାବୃଷ୍ଟି ତା ସଙ୍ଗେ ମଡ଼କ ॥ ତାହା-ଶୁଣି ତୁନିହେଲେ ସର୍ବ ସଭାଜନ । ସୁଖ ଶାନ୍ତ ଭାବେ ଚଳି ଗଲା କେତେ ଦିନ ॥ ରୋହିଣୀଚକ୍ରକୁ ବିଦ୍ଧ ହେବାରୁ ମଙ୍ଗଳ । ଘଟିଲା ସେ ରାଜ୍ୟେ ନାନା ସ୍ଥାନେ ଅମଙ୍ଗଳ ॥ ବୃଷ୍ଟି ନୋହିବାରୁ ଶସ୍ୟ ଉପୁଜିଲେ ନାହିଁ । ପ୍ରଜାଗଣେ ପଳାଇଲେ ପେଟକୁ ନ ପାଇ ॥ ଅନୁକ୍ଷଣେ ଆକାଶରୁ ନିର୍ଘାତ ପଡ଼ିଲା । ଭୂମିକମ୍ପ ଆଦି ନାନା ଉତପାତ ହେଲା ॥ ଏପରି ଦେଖିଲେ ଯହୁଁ ବିକ୍ରମ ଆଦିତ୍ୟ । ଇନ୍ଦ୍ର ପୂଜା କରିବାକୁ ହୋଇଲେ ଉଦ୍ୟତ ॥ ସେ ସମୟେ ଶୁଣାଗଲା ଏକ ଶୂନ୍ୟବାଣୀ । ମହାପଶୁ ମାଂସ ବଳି ଦିଅ ନରମଣି ॥ ଗ୍ରହ ଦୋଷ ନାଶଯାଇ ମେଘ ବରଷିବ । ଉତପାତ ଦୂରେ ଯେତେ ସକଳ ଲିଭିବ । ଶୁଣନ୍ତେ ବିକ୍ରମ ଏହିମତ ଶୂନ୍ୟ ବାଣୀ । ପ୍ରଜାହିତ ଚିନ୍ତା ମନେମନେ ହେଲେ ଗୁଣି ॥ ପ୍ରଜାଙ୍କୁ ପାଳିବା ପାଇଁ କରଇ ମୁଁ ଯାଗ । ଉଚିତ କି ତାଙ୍କୁ ନାଶ କରି ଦେବା ଭୋଗ ॥ ପ୍ରଜା ନାଶ କଲେ ହେବ ବହୁତ ଅନ୍ୟାୟ ।

ଲୋକନିନ୍ଦା ହେବ ପୁଣି ଧର୍ମ ହେବ କ୍ଷୟ ॥ ଏ କଳଙ୍କ ଯୁଗେ ଯୁଗେ ରହିଥିବ ସିନା । ବଳ ହେଲେ ନକେ ମୁହିଁ ହେବ ଉଚ୍ଚମନା ॥ ଏହା ଭାବି ସଚୀବଙ୍କୁ ରାଜ୍ୟ ସମରପି । ଇଷ୍ଟ ଦେବତାଙ୍କ ନାମ ମନେ ମନେ ଜପି ॥ ଶୁଦ୍ଧ ସୂତ ହୋଇ ଧରି ଶାଣିତ ଖଡ଼ଗ । ଯାଗକୁଣ୍ଡ ସମୀପରେ ମିଳିଲେ ସେ ବେଗ ॥ ନିଜ ଶିର କାଟିବାକୁ ଉଠାଇଲେ ଅସି । ଦେବତାଏ ଡାକ ଦେଲେ କୁସୁମ ବରଷି ॥ ନ କାଟ ନ କାଟ ଶିର ବିକ୍ରମ ଆଦିତ୍ୟ । ଜଗତରେ ତୁମ୍ଭ ସମ ନାହିଁ ପୁଣ୍ୟବନ୍ତ ॥ ପର ହିତେ ରତ ପୁଣି ସାହସୀ ଧାର୍ମିକ । ତୁମ୍ଭର ଏ ଗୁଣ ଦେଖି ହୋଇଲୁଁ ଅବାକ ॥ ଦେଉଅଛୁଁ ବର ଏବେ ବରଷିବ ଜଳ । ଅଚିରେ ତୁଟିବ ନିଶ୍ଚେ ପ୍ରଜାଙ୍କ ବିକଳ ॥ ଏହା କହି ଦେବତାଏ ହେଲେ ଅନ୍ତର୍ଦ୍ଧାନ । ସେକ୍ଷଣି ବର୍ଷିଲା ମେଘ କରି ଗରଜନ ॥ ନଦୀ, ନାଳ ବିଲ ବାଡ଼ି ଗାଡ଼ିଆ ପୋଖରୀ । ଘଡ଼ିକ ଭିତରେ ସବୁ ଜଳେ ଗଲା ପୂରି ॥ ବିକ୍ରମ ଆଦିତ୍ୟ ରାଜା ଲଭିଲେ ସନ୍ତୋଷ । ଦ୍ୱିଜଙ୍କୁ ଦକ୍ଷିଣା ଦେଇ ଯଜ୍ଞ କଲେ ଶେଷ ॥ ତୁମ୍ଭେ ଯେବେ ଭୋଜନୃପ ବିକ୍ରମଙ୍କ ପରି । ସାହସିକ ପୁଣି ଆଉ ପର ଉପକାରୀ ॥ ତେବେ ଯାଇଁ ସିଂହାସନେ ବସ ହେ ନିଃଶଙ୍କେ । ଏହା କହି ସେ ପୁତ୍ତଳି ଗଲା ସ୍ୱର୍ଗଲୋକେ ॥ ତା ଦେଖି ଫେରିଲେ ଭୋଜ ବିରସ ମନରେ । ଜଗନ୍ନାଥ ସିଂହ ଭଣେ ଶମ୍ଭୁ ମହେଶ୍ୱରେ ॥

---

## ପଞ୍ଚବିଂଶତି ପୁତ୍ତଳିର କଥା

ଆଉଥରେ ଭୋଜ ନୃପ ପୂର୍ବ ପରକାରେ । ସିଂହାସନେ ବସିବାକୁ ମିଳନ୍ତେ ସେଠାରେ ॥ ପଞ୍ଚବିଂଶ ପୁତ୍ତଳିକା କରିଲେ ବାରଣ । ବୋଇଲେ ବିକ୍ରମଙ୍କର ଏହି ସିଂହାସନ ॥ ସମ ଯେବେ ଅଛ

ରାଜା ମର୍ତ୍ତ୍ୟପୁରେ ବସ । ତା ନ ହେଲେ ବୃଥା ହେବ ସକଳ ସାହସ ॥ ତାହା ଶୁଣି ଭୋଜରାଜ ତାଙ୍କୁ ପଚାରିଲେ । କହ ହେ ଆମ୍ଭଙ୍କୁ ସେହୁ କେଉଁପରି ଥିଲେ ॥ ପୁତ୍ତଳିକା ବୋଲେ ତାଙ୍କ ଥିଲା ବହୁଗୁଣ । ଗୋଟିଏ ଦେଖିଛୁ ମୁହିଁ କହିବ ତା ଶୁଣ ॥ ସ୍ୱର୍ଗପୁରେ ଇନ୍ଦ୍ର ଦିନେ ଦେବତାଙ୍କ ଆଗେ । ବିକ୍ରମ ପ୍ରଶଂସା ଗାଇ କହିଲେ ସରାଗେ ॥ ମଘବାଙ୍କ ଠାରୁ ବିକ୍ରମଙ୍କ ଖ୍ୟାତି ଶୁଣି । ଅବିଶ୍ୱାସ କରି ଦେବେ କହିଲେ ଏ ବାଣୀ ॥ କର୍ଣ୍ଣ ମାନଧାତା ବଳି ଆଦି କେତେ କେତେ । ନରପତି ଥିଲେ ଶ୍ରେଷ୍ଠ ଜାଣନ୍ତି ସମସ୍ତେ ॥ ବିକ୍ରମାଦିତ୍ୟ କି ଶ୍ରେଷ୍ଠ ସେମାନଙ୍କ ଠାରୁ । ସଂଶୟ ଜନମେ ଇନ୍ଦ୍ର ତୁମ୍ଭ ବଚନରୁ ॥ ତା ଶୁଣି କହିଲେ ଇନ୍ଦ୍ର ସୁଯୋଗ୍ୟ ବଚନ । ତୁମ୍ଭ ଆମ୍ଭ ବିବାଦରେ ନାହିଁ ପ୍ରୟୋଜନ ॥ ଚାଲ ମର୍ତ୍ତ୍ୟପୁରେ ତାଙ୍କୁ ପରୀକ୍ଷା କରିବା । କପରି ସେ ଧର୍ମଶୀଳ ସେ କଥା ବିଡ଼ିବା ॥ ଦେବତାଏ ସେ କଥାରେ କଲେ ଅଙ୍ଗୀକାର । ଧର୍ମ ଇନ୍ଦ୍ର ଦୁହେଁ ତହୁଁ ହୋଇଲେ ବାହାର । ଏକାକୀ ବିକ୍ରମାଦିତ୍ୟ ସେହି ସମୟରେ । ବୁଲୁଥିଲେ ଛଦ୍ମବେଶେ ଆପଣା ରାଜ୍ୟରେ ॥ ପ୍ରଜାଙ୍କର ହାନି ଲାଭ ବୁଝିବା ସକାଶ । ରାଜା ହୋଇ ଧରିଥିଲେ ବ୍ରହ୍ମଚାରୀ ବେଶ ॥ ଦେଶଯାକ ବୁଲି ବୁଲି ବନସ୍ତ ମଧ୍ୟରେ । ବସିଥିବାବେଳେ ଇନ୍ଦ୍ର ଧର୍ମ ପହୁଞ୍ଚିଲେ ॥ ଗାଈ ହେଲେ ଇନ୍ଦ୍ର ପୁଣି ଧର୍ମ ହେଲେ ବ୍ୟାଘ୍ର । ବିକ୍ରମଙ୍କୁ ବିଡ଼ିବାକୁ ବାହାରିଲେ ଶୀଘ୍ର ॥ ବସିଥିଲେ ବୃକ୍ଷମୂଳେ ବିକ୍ରମ ଆଦିତ୍ୟ । ଭୟେ ଧେନୁ ଆସି ତହିଁ ହେଲା ଉପସ୍ଥିତ । ବୋଇଲା ହେ ମୋତେ ରଖ ବିକ୍ରମଆଦିତ୍ୟ । ଗୋଡ଼ାଉଛୁ ବ୍ୟାଘ୍ର ପଛେ କରିବ ନିହତ ॥ କହୁଁ କହୁଁ ବ୍ୟାଘ୍ର ଆସି ସେଠାରେ ମିଳିଲା । ବିକଟ ରୂପରେ ନାନା ଭୟ ଦେଖାଇଲା ॥ ତା ଦେଖି ବିକ୍ରମାଦିତ୍ୟ ତାକୁ ପ୍ରହାରିଲେ । ବ୍ୟାଘ୍ର ତହୁଁ ଗରଜିଲା ଅତି ବିକଟାଳେ ।

ବୋଇଲା ନୃପତି ଗୁଡ଼ ଧେନୁକୁ ଖାଇବ । ତୁମ୍ଭେ କପାଁ ରଖିଅଛ ମୋ ଖାଦ୍ୟ ମୁଁ ନେବ ॥ ପେଟ ପୋଡ଼ୁଅଛି ମୋର ହୁଏ ବଡ଼ କ୍ଷୁଧା । ଭୋଜନରେ ମୋର ତୁମ୍ଭେ ନ ଦିଅ ହେ ବାଧା ॥ ଅବିଗ୍ଭର କର କିମ୍ପା କଥା ମହୀପାଳ । ଜାଣି ତ ଥିବ ହେ ତୁମ୍ଭେ ପେଟର ବିକଳ ॥ ବିକ୍ରମ ଆଦିତ୍ୟ ଶୁଣି ବ୍ୟାଘ୍ରର ବଚନ । ବୋଇଲେ ପଶିଛି ସେ ତ ମୋ ପାଶେ ଶରଣ ॥ ଏଥି କାରଣୁ ତାକୁ ଗୁଡ଼ି ନ ପାରିବି ମୁହିଁ । ଶୁଣି ତାକୁ ବ୍ୟାଘ୍ର କହେ କୋପଭରେ ଗୃହିଁ ॥ ଯେବେ ତୁମ୍ଭେ ଦୟା କରି ରଖିଲ ଧେନୁକୁ । ତୁମ୍ଭ ମାଂସ ଦିଅ ମୋତେ କ୍ଷୁଧା ନାଶିବାକୁ ॥ ହେଳେ ଆକୁଳ ଦେଖ ହୁଏ ମୋ ଶରୀର । ଲଭିବି ସନ୍ତୋଷ ମାଂସ ଖାଇଲେ ତୁମ୍ଭର ॥ ଏହିପରି ବ୍ୟାଘ୍ର ଯହୁଁ ଉତ୍ତର କହିଲା । ନରପତି ମନରେ ଯେ ଆନନ୍ଦ ଜନ୍ମିଲା । ବୋଇଲେ ସେ ବ୍ୟାଘ୍ର ତୁମ୍ଭେ ଖାଇ ମୋର ମାଂସ । ଗୁଡ଼ିଦିଅ ଏ ଧେନୁକୁ ଲଭିଣ ସନ୍ତୋଷ ॥ ଉଭୟ ହିଗରେ ଧର୍ମ ହୋଇବ ମୋହର । ଏହା କହି ବ୍ୟାଘ୍ର ମୁଖେ ପୂରାଇଲେ ଶିର ॥ ଇନ୍ଦ୍ର ଧର୍ମ ଦୁହେଁ ଦେଖି ତାଙ୍କ ଶୁଦ୍ଧମନ । ନିଜ ରୂପ ଧରି ଉଭା ହେଲେ ସେହିକ୍ଷଣ ॥ ଉଭୟ ବୋଇଲେ ଧନ୍ୟ ଧନ୍ୟ ନୃପବର । ତୁମ୍ଭପରି ଧର୍ମବନ୍ତ ନାହିଁ ଏ ସଂସାର ॥ ସନ୍ତୁଷ୍ଟ ହୋଇଲୁଁ ଦେଖି ତୁମ୍ଭର ଏ କୀର୍ତ୍ତି । ଇଚ୍ଛା ଅନୁରୂପେ ବର ମାଗ ନରପତି ॥ ତାହା ଶୁଣି କର ଯୋଡ଼ି ଜଣାଇଲେ ନୃପ । କଦାପିତେ ହୃଦେ ମୋର ନ ପଶିବ ପାପ ॥ ରହିଥିବ ସବୁକାଳେ ପର ଉପକାରେ । ଏହା ବିନା କାର୍ଯ୍ୟ ମୋର ନାହିଁ ଅନ୍ୟ ବରେ ॥ ତଥାସ୍ତୁ କହିଣ ତାଙ୍କୁ ଧର୍ମ ପୁରନ୍ଦର । ଦେଇ ଏକ କାମଧେନୁ ଗଲେ ସ୍ୱର୍ଗପୁର ॥ ଘେନି ସେ ଧେନୁକୁ ରାଜା ଆନନ୍ଦରେ ଗଲେ । ବାଟେ ଯିବାବେଳେ ଭିକ୍ଷୁ ବିପ୍ରେକ ଦେଖିଲେ । କାମଧେନୁ ଗୋଟିକୁ ସେ ବିପ୍ରେ ଦାନ କରି । ଗଲେ ନିଜ ରାଜ୍ୟ

ହୃଦେ ପ୍ରେମାନନ୍ଦ ଭର ॥ ଆହେ ଭୋଜ ଯେବେ ତୁମ୍ଭେ ଅଟ ତାଙ୍କ ସମ । ବସ ସିଂହାସନେ ନିଶ୍ଚେ ହେବ ପୂର୍ଣ୍ଣକାମ ॥ ଏହା ଶୁଣି ଭୋଜରାଜ ଫେରିଲେ ନଗରେ । ଜଗନ୍ନାଥ କହେ ଗଲା ପୁତ୍ତଳ ଶୂନ୍ୟରେ ।

—:୦:—

## ଷଡ଼୍‌ବିଂଶ ପୁତ୍ତଳର କଥା

ତାପରେ ଦିବସେ ପୁଣି ଭୋଜ ନରବର । ସିଂହାସନେ ବସିବାକୁ କରିଲେ ଗମନ ॥ ଦେଖି ତାଙ୍କୁ ଷଡ଼ବିଂଶ ପୁତ୍ତଳ କହଇ । ସିଂହାସନ ମାହାତ୍ମ୍ୟ କି ତୁମ୍ଭେ ଜାଣ ନାହିଁ ॥ ଏଥି ପର ବସୁଥିଲେ ବିକ୍ରମ ରାଜନ । କେଉଁ ଗୁଣେ ତୁମ୍ଭେ ବଳାଉଛ ମନ ॥ ତାଙ୍କପରି ଗୁଣବାନ ଯେହୁ ହୋଇଥିବ । ସେହି ଏଥି ବସିବାକୁ ସାହସ କରିବ ॥ ଏହା ପଦ୍ୟ ଶୁଣିଲେ ସେ ଭୋଜ ନରପତି । ବୋଇଲେ ପୁତ୍ତଳ କହ ତେବେ ସେ ଭାରତି ॥ ଆରମ୍ଭିଲା ପୁତ୍ତଳିକା ହେଜ ତେବେ ଶୁଣ । ବୁଲି ଯାଇଥିଲେ ଦିନେ ବିକ୍ରମ ରାଜନ ॥ ସାମାନ୍ୟ ବେଶରେ ଭ୍ରମୁଥିଲେ ଦେଶାନ୍ତରେ । ଏକ ସ୍ଥାନେ ଶିବଙ୍କର ମନ୍ଦିର ଦେଖିଲେ ॥ ପୂଜା କରେ ସେ ଶିବଙ୍କୁ ଗୋଟିଏ ବ୍ରାହ୍ମଣ । ଶୋଭାପାଏ ତା ଦେହରେ ବହୁ ଆଭରଣ ॥ ପୂଜା ସାରି ସେ ବ୍ରାହ୍ମଣ ସ୍ୱଗୃହେ ଫେରିଲେ । ତହୁଁ ସେ ମନ୍ଦିରେ ରାଜା ସନ୍ତୋଷେ ରହିଲେ ॥ ସେହି ଦ୍ୱିଜବର ପର ଦିନ ପ୍ରଭାତରେ । ବିନା ଅଳଙ୍କାରେ ଆସି ପଶିଲା ମନ୍ଦିରେ ॥ ସଂଶୟମନେ ବିକ୍ରମ ନୃପ ଏହା ଦେଖି । ପଚାରିଲେ ବ୍ରାହ୍ମଣଙ୍କୁ ନିକଟକୁ ଡାକି ॥ ବୋଇଲେ ହେ ବିପ୍ର ତୁମ୍ଭ ଦେହେ ଅଳଙ୍କାର । କାଲି ଥିଲା ଆଜ କିପାଁ କରିଲ ବାହାର ॥ ତାହା ଶୁଣି ବୋଲେ ବିପ୍ର କାଲି ଜୁଆ ଖେଳି । ଟଙ୍କା ସୁନା ଅଳଙ୍କାର ସବୁ ହରାଇଲି ॥ ଏହା ଶୁଣି କହିଲେ ସେ ବିକ୍ରମ

ରାଜନ । ଅତି ଅମଙ୍ଗଳ ଅଟେ ଜୁଆ ଖେଳ ଜାଣ ॥ ସାଧୁଜନେ କରିଥାନ୍ତି ନିନ୍ଦା ସେ ଖେଳକୁ । ଗୁରୁ ତୁମ୍ଭେ ଆଜଠାରୁ ଭୁଲିଯାଅ ତାକୁ ॥ ଦ୍ୱିଜବୋଲେ ଆହେ ନୃପ ସେ କଥା ନ ବୁଝ । ଜାଣିଥିଲେ ଜିଣିବାକୁ ଉପାୟ ବତାଅ ॥ ଏ ବଚନ ନୃପ ଯହୁଁ କର୍ଣ୍ଣରେ ଶୁଣିଲେ । ସଙ୍ଗେ ନେଇ ସେ ବିପ୍ରକୁ ସତ୍ୱରେ ଚଳିଲେ ॥ ପ୍ରବେଶ ହୋଇଲେ ଯାଇ ବିନ୍ଧ୍ୟଗିରି ପାଶେ । ଦେବୀ ଏକ ଥିଲେ ତାଙ୍କୁ ପୂଜିଲେ ବିଶ୍ୱାସେ ॥ ଦୁହେଁ କହୁଛନ୍ତି ତହିଁ ପୂଜା କରିବାରେ । ଶୁଣିପାରିଲେ ଯେ କଥା ଲୋକଙ୍କ ମୁଖରେ ॥ ନରବଳି ନ ପାଇଲେ କଉଣସି କାଳେ । ନୁହନ୍ତି ସନ୍ତୁଷ୍ଟ ଦେବୀ ଯେବେ ପୂଜା କଲେ ॥ ଏହି କଥା ଶୁଣି ବିପ୍ର ହୋଇଲା ହତାଶ । ନରବଳି କାହୁଁ ଆଣି ଦେବା ଦେବୀ ପାଶ ॥ ବିକ୍ରମ ଆଦିତ୍ୟ ଶୁଣି ବିଚାରି ମନରେ । ନିଜେ ବଳି ହେବା ପାଇଁ ଖଡ଼ଗ ଧଇଲେ ॥ ଦେବୀଙ୍କ ସମ୍ମୁଖେ ଯାଇ ହେଲେ ଉପସ୍ଥିତ । ତାଙ୍କର ଏ ଭକ୍ତି ଦେଖି ନିଜେ ଜଗନ୍ନାଥ ॥ ଆଗେ ଉଭା ହୋଇ ତାଙ୍କୁ କହିଲେ ଏସନ । ନ କାଟ ମସ୍ତକ ଆଉ ବର ମାଗିଘେନ ॥ ବୋଇଲେ ନୃପତି ଯେବେ ହୋଇଲ ପ୍ରସନ୍ନ । ବାରେ ମାତ ଏ ବିପ୍ରର ବାଞ୍ଛା କର ପୂର୍ଣ୍ଣ ॥ ଏହା ଶୁଣି ସେ ବିପ୍ରକୁ ଦେବୀ ପଚାରିଲେ । ମାଗରେ ଆମ୍ଭଙ୍କୁ ଇଚ୍ଛା ତୋର ଯେଉଁ ବରେ ॥ ବିପ୍ର ଶୁଣି ବୋଲେ ଦେବ ଦିଅ ଏହି ବର । ଜୁଆଖେଳେ ସବୁଦିନେ ଜୟ ହେବ ମୋର ॥ ଅସ୍ତୁ କହି ଅନ୍ତର୍ଦ୍ଧାନ ହେଲେ ଭଗବତୀ । ସନ୍ତୋଷେ ବ୍ରାହ୍ମଣ ଗଲା ଆପଣା ବସତି ॥ ବିକ୍ରମ ଆଦିତ୍ୟ ରାଜା ଗଲେ ନିଜ ପୁର । ଭୋଜନୃପ ଶୁଣିଲ ତ କୀରତି ତାଙ୍କର ॥ ଯେବେ ପର ଉପକାର୍ଯ୍ୟ ଅଛି ତାଙ୍କ ପରି । ତେବେ ଏହି ସିଂହାସନେ ବସ ଯାଇକରି ॥ ଏହା କହି ପୁତ୍ତଳିକା ଗଲା ସ୍ୱର୍ଗପୁରେ । ଭୋଜରାଜ ବାହୁଡ଼ିଲେ ପୂର୍ବ ପରକାରେ ॥ ଷଡ଼ବିଂଶ

ପୁତ୍ତଳର କଥା ଶେଷ ହେଲା । ଦୁର୍ଗା ସ୍ମରି ଜଗନ୍ନାଥ ଗୀତରେ ଗାଇଲା ॥

—:*:—

## ସପ୍ତବିଂଶତି ପୁତ୍ତଳର କଥା

ପୁଣି ପରଦିନ ଗଲେ ଭୋଜ ନରପତି । ପାତ୍ର ମନ୍ତ୍ରୀ ପାରିଷଦ ସଙ୍ଗରେ ଅଛନ୍ତି ॥ ବସିବାକୁ ସିଂହାସନେ ଉଦ୍ୟମ କରନ୍ତେ । ସପ୍ତବିଂଶ ପୁତ୍ତଳିକା ରୋକିବା ନିମନ୍ତେ ॥ ବୋଇଲା ହେ ବସୁଅଛ କିପାଁ ମହୀପାଳ । ଏହାପରେ ବସିବାକୁ ନାହିଁ ତୁମ୍ଭ ବଳ ॥ ଏଥିରେ ବସନ୍ତି ରାଜା ବିକ୍ରମ ଆଦିତ୍ୟ । ତାଙ୍କ ପରି ତୁମ୍ଭେ ଯଦି ଥିବ ଗୁଣବନ୍ତ ॥ ତେବେ ବସ ସିଂହାସନେ ବୋଲ ମୋର ମାନ । ତା ନ ହେଲେ ଫେରିଯାଅ ନୃପ ହୋଇ ଭିନ ॥ ନୃପତି ବୋଇଲେ କହ ବିକ୍ରମଙ୍କ ଗୁଣ । ଜାଣିବା କିପରି ଥିଲେ ନ୍ୟାୟପରାୟଣ ॥ ଥିଲେ କେଉଁ ପରି ପୁଣି କହ ଦାନଶୀଳ । ପୁତ୍ତଳିକା କହେ ଶୁଣ ନୋହି ଅସମ୍ଭାଳ ॥ ଅଧିପତି ହୋଇଥିଲେ ଉଜ୍ଜ୍ୱଳର ସେହି । ପାଳୁଥିଲେ ରାଜଧର୍ମେ ସମୁଦ୍ରାନ୍ତ ମହୀ । ପାତ୍ର ମନ୍ତ୍ରୀ ଘେନି ସେହୁ ଗଲେ ଏକ ଦିନେ । ପାରିଧି କରିବାପାଇଁ ମହାଘୋର ବନେ ॥ ବରାହ ଭଲ୍ଲୁକ ବ୍ୟାଘ୍ର ସମ୍ବର ହରିଣ । ମାଇଲେ ବହୁତ ଜୀବ ଖେଳି ତୀକ୍ଷ୍ଣ ବାଣ ॥ ମୃଗୟା ବିନୋଦେ ରାଜା ସନ୍ତୋଷ ନୋହିଲେ । ମୃଗଟିଏ ଦେଖି ତାର ପଛେ ଗୋଡ଼ାଇଲେ ॥ ଚଞ୍ଚଳ ଗତିରେ ଯହୁଁ ଧାଇଁଲେ ସେ ବେଗେ । ସୈନ୍ୟଗଣ ନ ପାରିଲେ ଯାଇ ତାଙ୍କ ସଙ୍ଗେ ॥ କ୍ରମେ କ୍ରମେ ଦିନ ଆସି ହେଲା ଅବସାନ । ବାହୁଡ଼ିଲେ ସୈନ୍ୟଗଣେ ପୁରକୁ ବହନ ॥ ମୃଗକୁ ନ ପାଇ ତେଣେ ବିକ୍ରମ ଆଦିତ୍ୟ । କିସ ଏବେ କରିବା ହେ ବିଚାରିଲେ ଚିତ୍ତ ॥ ଆସ୍ତେ ଆସ୍ତେ ବିହାରିବା

ହେଲା ପରବେଶ । ଗ୍ରାମ ଏକ ଥିଲା ପାଶେ ଗଲେ ସେ ନରେଶ ॥ ବାସକରେ ସେ ଗ୍ରାମରେ ଏକ ଦ୍ୱିଜବର । ନୃପତି ମିଳିଲେ ଯାଇଁ ସେ ବିପ୍ର ମନ୍ଦିର ॥ ବିପ୍ର ତାଙ୍କୁ ରଖାଇଣ ଅତିଥି ଭାବରେ । ଥିଲା ଯାହା ଖାଇବାକୁ ଦେଇ ସନ୍ତୋଷରେ ॥ ବିନୟରେ ଜଣାଇଲା କରିଣ କାକୁତି । ଏହି ଦାଣ୍ଡଦ୍ୱାରେ ନିଦ୍ରାଯାଅ ହେ ନୃପତି । ମୁଁ ଅଟେ ଦରିଦ୍ର ମୋର ଘର ଆଉ ନାହିଁ । ଏ ଘରେ ରହିଛି ଭାର୍ଯ୍ୟା ପ୍ରସବିନୀ ହୋଇ । ତାହା ଶୁଣି ଅଙ୍ଗୀକାର କଲେ ନୃପମଣି ॥ ମଞ୍ଚିଣା ଖଣ୍ଡି ଏ ବିପ୍ର ଦେଲେ ତାକୁ ଆଣି ॥ କେତେବେଳେ ବସି ରାଜା ମଞ୍ଚିଣା ଉପରେ । ଜାଣିଲେ ଶୋଇଲେ ସର୍ବେ ଗ୍ରାମ ନାଗ୍ରନରେ ॥ ସକଳେ ଶୋଇଲେ କାର ଦେହେ ଜ୍ଞାନ ନାହିଁ । ନାନା ଭାବନାରେ ନୃପ ବସିଥିଲେ ଚାହିଁ ॥ ଥିଲା ଷଷ୍ଠୀଘର ପୂଜା ସେଦିନ ଶିଶୁର । ଷଷ୍ଠୀଦେବୀ ଆସିବାର ହୋଇଗଲା ବେଳ ॥ ଆସି ପହଞ୍ଚି ସେ ଦେବୀ ନୃପତିଙ୍କୁ ଚାହିଁ । ବୋଇଲେ ନରେଶ ଏଥେ ବସିଛ କିପାଇଁ । ବାଟ ଛାଡ଼ି ଦିଅ ମୋତେ ଭିତରକୁ ଯିବି । ଶିଶୁଟିର କର୍ମଫଳ ଲେଖି ମୁଁ ଆସିବି ॥ ଷଷ୍ଠୀଦେବୀ ବୋଲି ତାଙ୍କୁ ନୃପତି ଚିହ୍ନିଲେ । ଦ୍ୱାର ଛାଡ଼ି କର ଯୋଡ଼ି ଗୁହାରି ସେ କଲେ ॥ ବୋଇଲେ ହେ ମାତ ଶିଶୁ ଭାଗ୍ୟେ ଯା ଲେଖିବ । ଫେରିବା ସମୟେ ମୋତେ କହିଦେଇ ଯିବ ॥ ଆଜ୍ଞା ହେଉ କହି ଦେବୀ ଗୃହେ ପ୍ରବେଶିଲେ ।ଶିଶୁ କପାଳେ ତା ଭାଗ୍ୟ ଲେଖି ବାହୁଡ଼ିଲେ ॥ ତାଙ୍କୁ ଚାହିଁ ବସିଥିଲେ ବିକ୍ରମ ଆଦିତ୍ୟ । ଷଷ୍ଠୀ ଦେବୀ ଜଣାଇଲେ ତାହାଙ୍କୁ ଏମନ୍ତ ॥ କୁମର କପାଳେ ନୃପ ସବୁ ଭଲ ହେବ । ବିଭା ରବେ ବ୍ୟାଘ୍ର କିନ୍ତୁ ଏହାକୁ ନାଶିବ ॥ ଲବ୍ଧ ବା ଅର୍ଥ କଥା ମୂଳପାଦ ଘେନ । ଆଉ ତିନିପାଦ ଯେବେ ହୋଇବ ସମ୍ପୂର୍ଣ୍ଣ ॥ ତେବେ ଜାଣ ଏହି ଶିଶୁ ବଞ୍ଚିଯିବ ଭଲେ । କହି ଏହା ଷଷ୍ଠୀଦେବୀ ଅଦୃଶ୍ୟ ହୋଇଲେ । ପ୍ରଭାତେ ସେ ନରପତି

ଡାକ ବ୍ରାହ୍ମଣକୁ । ଶୁଣିଥିଲେ ସର୍ବେ ଯାହା କହିଲେ ତାହାକୁ ॥ ଜାତପୁତ୍ର ବିଭାସର୍ବେ ମୃତ ହେବ ଜାଣି । କାନ୍ଦିଲେ ବିକଳେ ଅତି ବ୍ରାହ୍ମଣ ବ୍ରାହ୍ମଣୀ ॥ ପ୍ରବୋଧ ଦେଇଣ ତାଙ୍କୁ ବୋଇଲେ ଭୂପତି । ହେବା ତାର ପ୍ରତିକାର କହି ଯାଉଛନ୍ତି । ଏହି କଥା ଗୋଟି ତୁମ୍ଭେ ରଖିଥିବ ମନେ । ଡକାଇବ ମୋତେ ପୁତ୍ର ବିଭାହେବା ଦିନେ । ବିକ୍ରମ ଆଦିତ୍ୟ ମୁହିଁ ଉଜ୍ଜ୍ୱଳ ନୃପତି । ରାଜା ବୋଲି ଡାକିବାକୁ ନ କରିବ ଭ୍ରାନ୍ତି ॥ ଏହା କହି ଗଲେ ନୃପ ଆପଣା ରାଜ୍ୟକୁ । ବ୍ରାହ୍ମଣ ରହିଲେ ଚାହିଁ ବିଭା ଦିବସକୁ ॥ କ୍ରମେ କ୍ରମେ ବଢ଼ିଲା ସେ ବ୍ରାହ୍ମଣ କୁମର । କର୍ଣ୍ଣବେଧ ବିଦ୍ୟାରମ୍ଭ ବ୍ରତବିଧି ତାର ॥ ସାରି ଦ୍ୱିଜ କିଛି ଦିନେ କନ୍ୟା ଅନ୍ୱେଷିଲେ । ବିଭା କଲେ ଶୁଣି ନୃପ ଆପେ ପହୁଞ୍ଚିଲେ ॥ ବହୁତ ପ୍ରଶଂସି ଦ୍ୱିଜ କଲା ସୁକଲ୍ୟାଣ । ରହିଲେ ତା ଘରେ ରାଜା ହୋଇ ତୋଷମନ ॥ ନିଶୀଥରେ ବର କନ୍ୟା ମଧୁଶଯ୍ୟା କଲେ । ସୈନ୍ୟ ଘେନି ନୃପ ସେହି ଗୃହକୁ ଜଗିଲେ । ଏହା ଦେଖି କନ୍ୟା ନିଜ ବରକୁ ପୁଛିଲା । ସୈନ୍ୟ ଘେନି ନୃପ କିପାଁ ଜଗିଛନ୍ତି ଭଲା ॥ ମୋ କର୍ମରେ ଲେଖା ଅଛି ଏହା ବୋଲେ ବର । ବ୍ୟାଘ୍ର ଏ ବାସରେ ଆସି ପ୍ରାଣ ନେବ ମୋର ॥ ଜଗିଛନ୍ତି ସେଥିପାଇଁ ନୃପ ଘେନି ସୈନ୍ୟ । ଏଠାକୁ ଆସିଲେ ବ୍ୟାଘ୍ର କରିବେ ନିଧନ ॥ ସ୍ୱାମୀ କଥା ଶୁଣି ବୋଲେ ବ୍ରାହ୍ମଣ କୁମାରୀ । ଚିହ୍ନି ନାହିଁ ବ୍ୟାଘ୍ର ମୁହିଁ ଦେଖିବି କିପରି ॥ ସେ କଥାକୁ ଶୁଣି ବିପ୍ର ସୁତ ଅତି ଖରେ । ବ୍ୟାଘ୍ର ରୂପ ଅବିକଳ ଆଙ୍କିଲା କାନ୍ଥରେ । ଚକ୍ଷୁ ଦେଇ ଜୀବନ୍ୟାସ କଲା ତାକୁ ସହୁଁ । ସେହି ବ୍ୟାଘ୍ର ଅତିଖରେ ଆକ୍ରମିଲା ତହୁଁ ॥ ମଧୁଶଯ୍ୟା ଘରେ ତାର ବିନାଶିଲା ପ୍ରାଣ । ବିବାହିତା କନ୍ୟା କଲା ଉଚ୍ଚରେ କ୍ରନ୍ଦନ ॥ ସେ କଥାକୁ ବୁଝିପାରି ବିକ୍ରମ ଆଦିତ୍ୟ । ମଧୁଶଯ୍ୟା ଘରେ ପଶି ଦେଖିଲେ ତ୍ୱରିତ ॥ ବିପ୍ରସୁତ

ଶବ ହୋଇ ପଡ଼ିଛି ଶଯ୍ୟାରେ । ଲେଖାଅଛି ବ୍ୟାଘ୍ର ରୂପ ସେ ଘର କାନ୍ଥରେ ॥ ବ୍ରାହ୍ମଣ ବ୍ରାହ୍ମଣୀ ଦେଖି ପୁତ୍ରର ମରଣ । କପାଳରେ କର ମାରି କରନ୍ତି ରୋଦନ ॥ ବିକ୍ରମ ଆଦିତ୍ୟ ତାଙ୍କୁ କହିଲେ ବୁଝାଇ । ଏ କଷ୍ଟେ ବଞ୍ଚିବ ତୁମ୍ଭେ କାନ୍ଦ ନାହିଁ କେହି ॥ ରଖ ନେଇ ଏ ଶବକୁ ତଇଲ ଭାଣ୍ଡରେ । ସାବଧାନେ ରଖିଥିବ ନ ଦେଖାଇ କାରେ ॥ ଏଥେ ମୁହିଁ ଆଜ ଥରେ ଆସିବାର ଯାଏ । ଜାଣି ଥାଅ ରଖିଥିବ ଲୁଚାଇ ସଭିଏଁ ॥ ଏହା କହି ପକାଇଲେ ଚେଲିକୁଣ୍ଡେ ତାକୁ । ନୃପ ଗଲେ ମନଦୁଃଖେ ଆପଣା ଦେଶକୁ ॥ ସୈନ୍ୟ ଯାହା ସଙ୍ଗେ ଥିଲେ ରାଜ୍ୟରେ ରଖାଇ । ବନ ମଧ୍ୟେ ବୁଲିଲେ ସେ ଏକା ହୋଇ ଯାଇ ॥ 'ଲବ୍ଧ ଅର୍ଥ' 'ଲବ୍ଧ ଅର୍ଥ' କହି ସବୁବେଳେ । ଅନ୍ୟ କିଛି କଥା ମନ ମଧ୍ୟେ ନ ଭାବିଲେ ॥ ଶୁଣି ସର୍ବେ ସେ କଥାକୁ ନ ଦେଇ ଉତ୍ତର । ଉପହାସେ କହନ୍ତି ଏ ଅଟଇ ବାତୁଳ ॥ ବିଧାତା ଲେଖନ ଅବା କେ କରିବ ଆନ । ତାହାପରେ ହେଲା ଯାହା ଶୁଣ ଭୋଜରାଣ ॥ ସେ ରାଜ୍ୟ ରାଜଦୁଲଣୀ ପାତ୍ରର ନନ୍ଦନୀ । ସୌଦାଗର କନ୍ୟା ମିଶି ବାଳିକା ଏ ତିନି ॥ ଏକମେଳେ ବାଲ୍ୟକାଳୁ ଗୁରୁ ପାଶେ ଯାଇଁ । ପଢ଼ୁଥାନ୍ତି ବ୍ୟାକରଣ ଜ୍ଞାନ ହେବା ପାଇଁ ॥ ସେ ତିନିଙ୍କ ସଙ୍ଗତରେ ଗୁରୁଙ୍କର ସୁତ । ପଢ଼ୁଥାଏ ବ୍ୟାକରଣ ଦୃଢ଼ କରି ଚିତ୍ତ ॥ କାଳବଶେ ଯଉବନ ପାଇଲେ ସକଳେ । ଯୁବତୀଙ୍କୁ ଦେଖି ଗୁରୁପୁତ୍ର କାମ ଶରେ । ମହା ପୀଡ଼ା ପାଇ ହେଲା ଦିନୁଦିନ କ୍ଷୀଣ । ବୁଝିପାରି କନ୍ୟାମାନେ ତହିଁର କାରଣ । ଏକାନ୍ତେ କହିଲେ ଡାକି ଗୁରୁ କୁମରଙ୍କୁ । କପାଇଁ ଭାବନା କରି ନିରେଖି ଆମ୍ଭଙ୍କୁ । ତୁମ୍ଭେ ହେଲ ଯୁବା ଆମ୍ଭେ ହୋଇଲୁଁ ଯୁବତୀ । ନିତିପ୍ରତି ଦେଖା ଦେଖି ଉଲ୍ଲସଇ ଚିତ୍ତ ॥ ପାଖା ପାଖି ହେଲାବେଳେ ପୁଲକଇ ଅଙ୍ଗ । ତୁମ୍ଭେ ଆମ୍ଭେ ସମସ୍ତଙ୍କୁ ପୀଡ଼ଇ ଅନଙ୍ଗ ॥ ହେହେ

ଦେହ ଲାଗିଗଲେ ଆସେ ଉତ୍ତେଜନା । ସୁରତି କରିବା ମିଳ ନ ହୁଅ ବାସନା । ଆଜ ରାତ୍ରେ ଗ୍ରାମପ୍ରାନ୍ତ ଶିବାଳୟେ ଯିବ । ସେଠାରେ ତାଙ୍କ ସଙ୍ଗେ ନିର୍ଭୟେ ରମିବ ॥ ଏହା କହି ଚାଲିଗଲେ ଯେ ଯାହା ପୁରକୁ । ସତ୍ୟ କହି ଗୁରୁପୁତ୍ରେ ଦେନ ଅର୍ପିବାକୁ ॥ ପଣ୍ଡିତଙ୍କ ଭୃତ୍ୟ ତାଙ୍କ ଖବର ସକଳ । ଗୁପତରେ ଶୁଣୁଥିଲା ରହି ଅନ୍ତରାଳ ॥ ଭୃତ୍ୟ ଭୃତ୍ୟ ପଣ୍ଡିତଙ୍କୁ କହିଲା ସେ କଥା । ଶୁଣନ୍ତେ ପଣ୍ଡିତଙ୍କ ଘୂରିଗଲା ମଥା । ଅନର୍ଥ ଘଟିବ ବୋଲି ଉପୁଜିଲା ଭୟ । ସନ୍ଧ୍ୟା ହେଲା ଡାକନ୍ତେ ସେ ଆସିଲା ତନୟ ॥ ବୋଇଲେ ପୁସ୍ତକ ବାପୁ ଆଣିବୁଟି ମୋର । ଆଜ୍ଞା ମାନି ପୁତ୍ର ଗୃହେ ପଶିଲା ସତ୍ୱର ॥ ସେହିକ୍ଷଣି ସେ ପଣ୍ଡିତ ଟାଣି କବାଟକୁ । ଯତନେ ଶିକୁଳ ଦେଇ ବନ୍ଦୀ କଲେ ତାକୁ ॥ ଯେତେ ପରକାରେ ପୁନ ମିନତି କରିଲା । କୌଣସି ପ୍ରକାରେ ପିତା ଦ୍ୱାର ନ ଖୋଲିଲା ॥ ପଣ୍ଡିତ ବୋଇଲେ ଭୁଷ୍ଟ କରିବାକୁ ଯାହା । ମନେ ଭାବିଅଛୁ କେବେ ନ ହୋଇବ ତାହା ॥ ସେ କଥା ନୋହିଲା କିଛି କନ୍ୟାକୁ ଗୋଚର । ବୁଲି ବୁଲି ସେହିଦିନ ବିକ୍ରମ ମିହିର ॥ ସେ ସଙ୍କେତ ଶିବାଳୟେ ସେ ନିଶି ରହିଲେ । ରାତ୍ର ପ୍ରହରକେ ରାଜନନ୍ଦିନୀ ଆସିଲେ ॥ ନୃପଙ୍କୁ ସେ ନ ପାରିଲେ ଚିହ୍ନି ଅନ୍ଧକାରେ । ଗୁରୁପୁତ୍ର ଭାବି ବରମାଲ୍ୟ ଗଳେ ଦେଲେ ॥ ମୁଖ ଚୁମ୍ବି ସେ କନ୍ୟାର ବିକ୍ରମ ରାଜନ । ଲବ୍ଧ ଅର୍ଥ ପାଦଗୋଟି କଲେ ତାକୁ ପ୍ରଶ୍ନ ॥ ପଣ୍ଡିତା ଅଟେ ସେ ପୁଣି ରାଜାର କୁମାରୀ । ଶୀଘ୍ର ସେ ଦୁଇଟି ପାଦ ଦେଲା ପୂର୍ତ୍ତି କରି ॥ ପୁଣି କେଣି କୋମଳାଙ୍ଗୀ ଅଇଲେ ସେଠାକୁ । ନ ଚିହ୍ନି ବରଣ ମାଳା ଦେଲେ ନୃପତିଙ୍କୁ ॥ ବିକ୍ରମ ଆଦିତ୍ୟ ତାଙ୍କୁ ପଚାରନ୍ତେ ପ୍ରଶ୍ନ । ଅନ୍ୟ ଦୁଇପାଦ ଦୁହେଁ କରିଦେଲେ ପୂର୍ଣ୍ଣ ॥ ମିଶିବାରୁ ଚାରି ପାଦ ହେଲା ଏହି ଶ୍ଲୋକ । ବୁଝ ସବୁ ଅର୍ଥ କରି ହେ ପଣ୍ଡିତ ଲୋକ ॥

## ଶ୍ଳୋକଃ

୧ । ଲବ୍‌ଧବ୍ୟମର୍ଥଲଭତେ ମନୁଷ୍ୟୋ—
୨ । ଦେବୋଽପି ତତ୍ ବାରୟିତୁଂ ନ ଶକ୍ୟଃ ।
୩ । ଅତୋ ନ ଶୋଚାମି ନ ବିସ୍ମୟୋ ମେ—
୪ । ଲଲାଟ ଲେଖା ନ ପୁନଃ ପ୍ରୟାତି ।

## ଅର୍ଥ

ଯୋଗ ଯାହା ଥାଏ ନିଶ୍ଚେ ଲଭଇ ମାନବ । ନିବାରି ନପାରେ ତାକୁ ନିଜେ ବି ଦଇବ ॥ ତେଣୁଟି ମୁଁ ତାହା ଜାଣି ଶୋକ ବିସ୍ମୟକୁ । ନ ପାରେ କେ ପୋଛି ମୋର ଲଲାଟ ଲେଖାକୁ ॥ ଗୃହ ଛାଦ ଏହିରୂପେ ହୁଅନ୍ତେ ପୂରଣ । ତେଲଗଣ୍ଡି ପ୍ରାଣ ପାଇ ଉଠଇ ବ୍ରାହ୍ମଣ ॥ ବରମାଳ୍ୟ ଦେବା ପରେ ସେ ତିନି ଯୁବତୀ । ଦେଖିଲେ ବେଳକୁ ଗୃହପୂର ସେ ନୃପତି ॥ କିଭ କାମ୍ଭଲେ ଭାବ ହେଲୁ ହଟହଟା । ପୁଣି ବୁଝିବାକୁ ଧୈର୍ଯ୍ୟ ଧରି ସେ କଥାଟା ॥ ପଚାରିଲେ କେମା ତୁମ୍ଭେ କଏ ମହାଶୟ । ଉତ୍ତମ ଚିତ୍ତରେ ଦିଅ ସତ୍ୟ ପରି-ଚୟ ॥ ବୋଲନ୍ତି ସେ ନୃପ ଶୁଣି ତାଙ୍କର ବଚନ । ବିକ୍ରମ ଆଦିତ୍ୟ ରାଜା ଆମ୍ଭେ ଅଟୁ ଜାଣ ॥ ତୁମ୍ଭେମାନେ ରାଣୀ ହେବ ଉଜ୍ଜୟିନ ନଗରେ । ଏହା କହି ସେ ତିନିଙ୍କୁ ଘେନି ସଙ୍ଗତରେ ॥ ଆପଣା ରାଜ୍ୟକୁ ଗଲେ ଗହଣ ଲଗାଇ । ବୁଝି ଆହେ ଭୋଜରାଜ ଯାହାଗଲା ଭାଇ ॥ ବିକ୍ରମଙ୍କ ସମ କେବା ଅଛି ଅବନୀରେ । ଯେପରି ସେ ଥିଲେ ସଦା ପର ଉପକାରେ ॥ ତୁମ୍ଭେ ଯେବେ ସେହିପରି ଅଟ ନରଗଣ । ଗ୍ରହଣ କର ହେ ସୁଖେ ଏହି ସିଂହାସନ ॥ ଏହା କହି ସେ ପିତୁଳା ସ୍ୱର୍ଗେ ଗଲା ଚଳି । ଭୋଜନୃପ ବାହୁଡ଼ିଲେ ମନେ ମନେ ଭାଳି ॥ ସପ୍ତବିଂଶ ପୁତ୍ତଳିର କଥା ଏ ଅପୂର୍ବ । ଜଗନ୍ନାଥ କହେ ଶୁଣି ସନ୍ତୋଷ ଲଭିବ ॥

———

# ଅଷ୍ଟାବିଂଶତି ପୁତ୍ତଳିର କଥା

ପର ଦିନ ଭୋଜ ରାଜ ସାରି ଦାନ ପୁଣ୍ୟ । ବସିବାକୁ ସିଂହାସନେ ବଳାଇଲେ ମନ ॥ ପାତ୍ର ମନ୍ତ୍ରୀ ସହିତରେ ଯାଇ ନରଙ୍କୁଶ । ସିଂହାସନ ନିକଟରେ ହେଲେ ପରବେଶ ॥ ଉଠି ତହୁଁ ଅଷ୍ଟାବିଂଶ ପୁତ୍ତଳି କହଇ । ଆହେ ଭୋଜନୃପ ତୁମ୍ଭେ ହୋଇଲ କି ବାଇ ॥ କାହିଁ ପାଇଁ ବୃଥା ଆଶା ପ୍ରତିଦିନ କର । ଜାଣ ତ ବସନ୍ତ ଏଥି ବିକ୍ରମ ମିହିର ॥ ଆଗେ ତାଙ୍କ ପରି ଆହେ ହୁଅ ଗୁଣବାନ । ତା ପରେ କରିବ ସିଂହାସନେ ଆରୋହଣ ॥ ଏହା ଶୁଣି ଫେରିଲେ ଭୋଜ ନରପତି । କହ ତେବେ ଶୁଣିବା ହେ ତାଙ୍କ ଯଶ କୀର୍ତ୍ତି ॥ ବୋଇଲା ସେ ପୁତ୍ତଳିକା ଶୁଣ ହେ ରାଜନ । ବିଦ୍ୟା ଶିକ୍ଷା କରେ ଏକ ବ୍ରାହ୍ମଣ ନନ୍ଦନ ॥ ନାନା ଦେଶ ବୁଲି ବହୁ ଶାସ୍ତ୍ର ସେ ପଢ଼ିଲା ॥ ସାମୁଦ୍ରିକ ଶାସ୍ତ୍ର କିନ୍ତୁ ଜାଣି ନ ପାରିଲା ॥ ଜାଣିବି କିପରି ବୋଲି ମନରେ ବିଚାରି । ହୋଇଲା ପ୍ରବେଶ ଯାଇ ଉଜ୍ଜ୍ୱଳ ନଗରୀ ॥ ଲୋକମୁଖୁ ଶୁଣିଲା ସେ ବିକ୍ରମନୃପତି । ପଢ଼ି ଅଷ୍ଟାଦଶବିଦ୍ୟା ପଣ୍ଡିତ ବୋଲାନ୍ତି ॥ ମନମଧ୍ୟେ ବିଚାରିଲା ବ୍ରାହ୍ମଣ ନନ୍ଦନ । ତାଙ୍କ ଠାରୁ ଅର୍ଜିବାକୁ ସାମୁଦ୍ରିକ ଜ୍ଞାନ ॥ ଏହା ଭାବି ବିପ୍ରସୁତ ଯିବା ସମୟରେ । ଆସୁଥିଲା ପୁରୁଷେକ ଦେଖିଲା ପଥରେ ॥ ଶୁଭଚିହ୍ନମାନ ମସ୍ତକରେ ବିରାଜଇ । ମାତ୍ର ମୁଣ୍ଡେ କାଠ ବୋଝ ନେଉଛି ସେ ବହି ॥ ଅତିଶୟ ଗରିବ ସେ ଦେହେନାହିଁ ବାସ । କାଠ କାଟି ନ ବିକିଲେ ନ ମିଳଇ ଗ୍ରାସ ॥ ଦେଖି ତାର ଏହିପରି ଅବସ୍ଥାକୁ ଗଲା । ବିକ୍ରମ ଆଦିତ୍ୟ ନୃପ ସମୀପେ ମିଳିଲା ॥ ବୋଲଇ ସେ ବିନୟରେ ବ୍ରାହ୍ମଣ ନନ୍ଦନ । ଏ ପୁରୁଷ ଦେହେ ନୃପ ଦେଖ ଶୁଭଚିହ୍ନ ॥ ବଂଚାଇ ପୁଣି ଏହୁ ଦରିଦ୍ର ହୋଇଛି ! କାରଣ ଏଥିର ମୁହିଁ ଜାଣି ନ ପାରୁଛି ॥ ବିକ୍ରମ ନୃପତି ଯହୁଁ ଏପରି ଶୁଣିଲେ

ସେହି ପୁରୁଷକୁ ନିଜ କତି ଡକାଇଲେ ॥ ଲକ୍ଷଣକୁ ତା ଦେହରେ କରି ନିରୀକ୍ଷଣ । ବୋଇଲେ ହେ ବିପ୍ର ଶୁଣ ଏହାର କାରଣ ॥ ସର୍ପଫଣା ଚିହ୍ନ ଦେଖ ସ୍ତ୍ରୀ ଶିରରେ ଦିଶେ । ଦରିଦ୍ର ହୋଇଛୁ ତେଣୁ ଜାଣ ସେହି ଦୋଷେ ॥ ଏହା ଶୁଣି ସେ ବ୍ରାହ୍ମଣ ଅତି ବିନୟରେ । ଜଣାଇଲେ ବିକ୍ରମଙ୍କ ଆଗେ ଧୀରେ ଧୀରେ ॥ କହ ନୃପ ଶ୍ରୀଅଙ୍ଗରେ ଅଛି କି କି ଚିହ୍ନ । ଚକ୍ରବର୍ତ୍ତୀ କି ଲକ୍ଷଣେ ହୋଇଛ ଆପଣ ॥ ସେ ଲକ୍ଷଣ ସବୁ ମୋତେ ଚିହ୍ନାଅ ନରେଶ । ସଂଶୟ ଯିବ ମୋ ମନୁ ଲଭିବ ସନ୍ତୋଷ ॥ ବିପ୍ରର ବଚନ ଶୁଣି ବିକ୍ରମ ମିହିର । ଦେଖାଇଲେ ନିଜ ଅଙ୍ଗ ସୁଚିହ୍ନ ସକଳ ॥ କିଛି ଦିନ ପାଶେ ରଖି ବ୍ରାହ୍ମଣ ପୁତ୍ରକୁ ଭଲରୂପେ ସାମୁଦ୍ରିକ ପଢ଼ାଇଲେ ତାକୁ ॥ ଆଉ ମଧ୍ୟ ବହୁ ବିଦ୍ୟା ତାକୁ ଶିକ୍ଷା ଦେଲେ । ଅଳ୍ପ ଦିନେ ସେ ବ୍ରାହ୍ମଣ ସୁପଣ୍ଡିତ ହେଲେ । ଶେଷେ ନରପତି ତାଙ୍କୁ ଦେଇ ବହୁ ବିତ୍ତ । ବିଦାକଲେ ଦେବଦ୍ୱିଜେ ସଦା ତାଙ୍କ ଚିତ୍ତ ॥ ମହାନନ୍ଦେ ଗଲେ ସେହି ବ୍ରାହ୍ମଣ ନନ୍ଦନ । ଏହିପରି ଜାଣ ଥିଲେ ବିକ୍ରମ ରାଜନ ॥ ଚିତ୍ତ ତାଙ୍କ ଥାଇ ସଦା ପର ଉପକାରେ । ତୁମ୍ଭେ କି ହୋଇବ ନୃପ ତାଙ୍କ ସମାନରେ ॥ ଯେବେ ଅଟ ତେବେ ସିଂହାସନେ ବସ ଭୋଜ । ପ୍ରତିଦିନ ଶୁଣ ଯାହା ମନେ ମନେ ହେଜ ॥ ଏହା କହି ପୁତ୍ତଳିକା ସ୍ୱର୍ଗେ ଗଲା ଚଳି । ବାହୁଡ଼ିଲେ ଭୋଜ ବିକ୍ରମଙ୍କ କୀର୍ତ୍ତି ଭାଳି ॥ ଅଷ୍ଟାବିଂଶ ପୁତ୍ତଳିର କଥା ହେଲା ଶେଷ । ଜଗନ୍ନାଥ ସିଂହ କହେ ସ୍ମରି ଗଣେଶ ॥

---

## ଊନତ୍ରିଂଶ ପୁତ୍ତଳିର କଥା

ତାହା ପରଦିନ ଭୋଜ ପୂର୍ବଦିନ ପରି । ନିତ୍ୟ କର୍ମ ଦାନ ପୁଣ୍ୟ ଯଥାବିଧି ସାରି ॥ ସିଂହାସନ ନିକଟରେ ମିଳିଲେ ବହନ । ବସିବାକୁ ମନ ମଧ୍ୟେ ହୋଇଲେ ଉଚ୍ଛନ୍ନ ॥ ଊନତ୍ରିଂଶ ପୁତ୍ତଳିକା

କହେ ଏହାଦେଖି । ଆହେ ଭୋଜରାଜ ତୁମ୍ଭେ ବାତୁଳ ହେଲ କି ॥
ଏହି ଦେବ ସିଂହାସନ ଅମୂଲ୍ୟ ଅଟଇ । ବିକ୍ରମ ଆଦିତ୍ୟ ରାଜା
ପୁରସ୍କାର ପାଇ ॥ ପୂର୍ବେ ଏହା ପରେ ବସି ପାଳୁଥିଲେ ଦେଶ । ତାଙ୍କ
ସମ ଅଟ ଯଦି ତୁମ୍ଭେ ନରଈଶ ॥ ତେବେ ଆସି ବସ ନିଜ ମନରେ
ବିଚାରି । ପଚାରିଲେ ତାହା ଶୁଣି ଭୋଜ ଦଣ୍ଡଧାରୀ । ବିକ୍ରମାଦିତ୍ୟଙ୍କ
ଠାରେ ଥିଲା କି କି ଗୁଣ । ଶୁଣିବାକୁ ପ୍ରତିଦିନ ହୁଏ ମୋର ମନ ॥
ନୂଆକଥା ଜାଣିଥିଲେ କହ ମୋ ଆଗରେ । ଆରମ୍ଭିଲା ପୁତ୍ତଳିକା
ତହୁଁ ହର୍ଷଭରେ ॥ ସର୍ବ ଗୁଣେ ପରିପୂର୍ଣ୍ଣ ବିକ୍ରମ ଆଦିତ୍ୟ । ତିନ-
ପୁରେ ତାଙ୍କ କୀର୍ତ୍ତି ଅଟଇ ବିଦିତ ॥ ବହୁବିଦ୍ୟା ଜାଣନ୍ତି ସେ ବିଦ୍ୟାର
ସାଗର । ତାଙ୍କ ସମ ଜ୍ଞାନୀ ଦାନୀ ନ ଦେଖେ ସଂସାର ॥ ତାଲ
ବେତାଳ ଏ ଦୁହେଁ ତାଙ୍କ ପାଶେ ଥାନ୍ତି । ତାଙ୍କର ବଳରେ ରାଜା
ଜଗତ ଜିଣନ୍ତି ॥ ଭାନୁମତୀ ନାମେ ଥିଲେ ଭୋଜର ନନ୍ଦିନୀ । ବିଭା
ହେଲେ ତାଙ୍କୁ ନୃପ ବାଜବିଦ୍ୟା ଜିଣି ॥ ତାହା ଶୁଣି ଭୋଜ ନରପତି
ବିସ୍ମୟରେ । ବୁଝାଇ କହ ତା ବୋଲି ପ୍ରଶ୍ନ ପଚାରିଲେ ॥ ବାଜବିଦ୍ୟା
ଜିଣିଲେ ସେ କେଉଁ ଉପାୟରେ । ତାହା ଶୁଣି ସେ ପୁତ୍ତଳି କହଇ
ସଧୀରେ ॥ ତୁମ୍ଭ ବଂଶେ ଗୁଣବାନ ଥିଲେ ଜାଣ ନୃପ । ଭୋଜବିଦ୍ୟା
ଯାଙ୍କଠାରୁ ହୋଇଗଲା ଲୋପ ॥ ତାଙ୍କ ଦୁଇ ପୁତ୍ର ନାମ ନର-
ନାରାୟଣ । ଭାନୁମତୀ ନାମେ କନ୍ୟାଟିଏ ଥିଲା ଜାଣ ॥ ତାଙ୍କ
ଦାସ ଦାସୀ ଦୁହେଁ ଥିଲେ କୁଜା କୁଜୀ । ଜାଣିଥାନ୍ତି ଏ ସମସ୍ତ ନାନା
ଭୋଜବାଜି ॥ ଭାନୁମତୀ ରୂପ ଅବା କେ ପାରିବ କହି । ଅତ୍ୟନ୍ତ
ସୁନ୍ଦରୀ ପୁଣି ପଦ୍ମିନୀ ଅଟଇ ॥ ଦିନେ ବସି ଭୋଜନୃପ ସେ କନ୍ୟା
ପ୍ରଦାନ । କରିବାକୁ ପଣ ଏକ କଲେ ନିରୂପଣ । ଭୋଜ ବିଦ୍ୟାରେ ଯେ
ମୋତେ ହିବାର ଜିଣିବ । କନ୍ୟା ଭାନୁମତୀକୁ ସେ ବିବାହ କରିବ ॥
ଏହି ସତ୍ୟ କରି ରାଜା ପଠାଇ ଦୂତଙ୍କୁ । ତାଙ୍କ ମୁଖେ ଶୁଣାଇଲେ

ବିଭିନ୍ନ ରାଜ୍ୟକୁ ॥ ଦୂତଗଣେ ଆଜ୍ଞା ଘେନି ଶୀଘ୍ରେ ଚଳିଗଲେ । ନାନା ଦେଶ ବୁଲି ଏହି ବାରତା କହିଲେ ॥ ଭୋଜନୃପଙ୍କର କନ୍ୟା ନାମ ଭାନୁମତୀ । ସୁଲକ୍ଷଣୀ ପଦ୍ମିନୀ ସେ ପୁଣି ଗୁଣବତୀ ॥ ଭୋଜବିଦ୍ୟା ଜାଣିବ ଯେ ଭୋଳ ନୃପତିଙ୍କୁ । ଭାନୁମତୀ କନ୍ୟା ବରମାଳ୍ୟ ଦେବ ତାଙ୍କୁ ॥ ରାଜାମାନେ ଏହା ଶୁଣି କନ୍ୟା ଲୋଭେ ଗଲେ । ଭୋଜ ବିଦ୍ୟାରେ ନ ଜାଣି ଲାଜରେ ଫେରିଲେ ॥ ବିକ୍ରମ ଆଦିତ୍ୟ ବୀରମୁଖୁଁ ପଣ ଶୁଣି । କନ୍ୟାଲାଭ କରିବାକୁ ମନେ ମନେ ଗୁଣି ସଭା କରାଇଲେ ଡାକି ପଣ୍ଡିତମାନଙ୍କୁ । ସବିନୟେ ପଚାରିଲେ ନୃପ ସେମାନଙ୍କୁ ॥ ଜାଣିଅଛ ନାନା ବିଦ୍ୟା ସକଳ ପଣ୍ଡିତେ । ଭୋଜବିଦ୍ୟା ଜାଣି କନ୍ୟା ଆଣିବା କେମନ୍ତେ ॥ ନୃପତିଙ୍କ ଏପ୍ରକାର ବଚନକୁ ଶୁଣି । ପଣ୍ଡିତ ବରଗ ତାଙ୍କୁ କହିଲେ ଏ ବାଣୀ ॥ କିପରି ସେ ଭୋଜବିଦ୍ୟା ଆମ୍ଭେ ଶୁଣି ନାହୁଁ । ତୁମ୍ଭେ ଯେ କରନ୍ତି ପ୍ରଶ୍ନ କହିବୁ ବା କାହୁଁ ॥ କାଳିଦାସ ତାହାପରେ ବୋଲନ୍ତି ଏପଣ । ଅକ୍ଷରଟିଏ ପାଇଲେ ଶ୍ଳୋକ ଦେବି କରି ॥ ଭୋଜବିଦ୍ୟା ନ ଜାଣେ ମୁଁ କି ପ୍ରକାର ତାହା । ବରରୁଚିଶ୍ବର ଉଠି କହିଲେ ମୁଁ ଯାହା ॥ ଜ୍ୟୋତିଷେ ବିଷୟେ ପ୍ରଶ୍ନ କରିବେ ପୂରଣ । ଲଗ୍ନ ଦଶା କାଳ ବେଳ ଆଦି ନିରୂପଣ ॥ ତାହା ଛଡ଼ା ଭୋଜବାଜି କିପରି ନ ଜାଣେ । ତାଙ୍କ ପଛେ ପଛେ ଉଠି ଧନ୍ୱନ୍ତରି ଭଣେ । ଚିକିତ୍ସା ବିଷୟ ପୁଣି ରୋଗର ନିଦାନ । ପୂରଣ କରିବ ଯେତେ ପଚାରିଲେ ପ୍ରଶ୍ନ । ଏ ବାହାରେ ଅନ୍ୟ ବିଦ୍ୟା ନ ଜାଣେ ରାଜନ । ଅପରେ ପଣ୍ଡିତ କବି ହୋଇଲେ ମଉନ ॥ ବିକ୍ରମ ମିହିର ଶୁଣି ପଣ୍ଡିତଙ୍କ କଥା । ମନ୍ତ୍ର ଜପ ଗୃହେ ପଶି କଲେ ତା ବ୍ୟବସ୍ଥା ॥ ଏକାନ୍ତରେ ସୁମରିଲେ ତାଳ ବେତାଳଙ୍କୁ । ତାଳ ବେତାଳ ଆସିଲେ ତାହାଙ୍କ ଆଗକୁ ॥ ସେ ଦୁହିଙ୍କୁ ଦେଖିବାରୁ କହିଲେ ନୃପତି । ଭୋଜରାଜାଙ୍କର କନ୍ୟା

ନାମ ଭାନୁମତୀ ॥ ଅଟଇ ପଦ୍ମିନୀ ଶ୍ରେଷ୍ଠ ପରମା ସୁନ୍ଦରୀ । ଏହି ପଣ କରିଛନ୍ତି ଭୋଜ ଦଣ୍ଡଧାରୀ ॥ ଭୋଜବିଦ୍ୟା ଇନ୍ଦ୍ରଜାଲ ଜାଣିବ ଯେ କେହି । ସେ କନ୍ୟାକୁ ଦେବେ ତାକୁ ସତ୍ୟ ଏ ଅଟଇ ॥ କେତେ ନରପତି ଯାଇ ସେ ପ୍ରତିଜ୍ଞା ଶୁଣି । ହେଲେଣି ବଞ୍ଚିତ ଭୋଜବିଦ୍ୟାରେ ନ ଜାଣି ॥ ଲଭିବା କପରି କହ ଆମ୍ଭେ ସେ କନ୍ୟାକୁ । ତା ଶୁଣି ବେତାଳ ତାଳ କହିଲେ ରାଜାଙ୍କୁ ॥ ଯାହା କହୁଥିବୁ ଆମ୍ଭେ କରିବି ଅବଶ୍ୟ । କର ଆଗେ ସତ୍ୟ ଏହି କଥା ନରଶ୍ରେଷ୍ଠ ॥ ନିଶ୍ଚେ ଆମ୍ଭେ କରାଇବୁଁ ଜୟଲାଭ ଜାଣ । ବିକ୍ରମ ମିହିର ସତ୍ୟ କଲେ ସେହିକ୍ଷଣ ॥ ବୋଇଲେ ବେତାଳେ ଏବେ ଚାଲ ନୃପବର । ନ କର ବିଳମ୍ବ ଜୟ ହୋଇବ ତୁମ୍ଭର ॥ ବେତାଳ ବଚନେ ନୃପ ଚତୁରଙ୍ଗ ବଳ । ଘେନି ସଙ୍ଗେ ବାହାରିଲେ ଦେଖି ଶୁଭବେଳ ॥ ପହଞ୍ଚିଲେ କେତେଦିନେ ଭୋଜ ରାଜ୍ୟେ ଯାଇ । ଦୂତ ହାତେ ପତ୍ର ଏକ ଦେଲେ ପଠାଇ ॥ ପାଠକରି ସେ ପତ୍ରକୁ ଭୋଜ ନରରାଣ । ଜ୍ୟେଷ୍ଠ ପୁତ୍ରକୁ ସେ ଡାକି କହିଲେ ବଚନ ॥ କନ୍ୟା ନେବାପାଇଁ ଆସେ ବିକ୍ରମ ନୃପତି । ସମାଦର କରି ତାଙ୍କୁ ଆଣ ହେ ଝଟିତି ॥ ତୋ ବାଜି ବିଦ୍ୟାରେ ତାଙ୍କୁ ପରୀକ୍ଷା କରିବୁ ତାହା ଶୁଣି ସେ କୁମର ଗଲା ବୁଦ୍ଧିସବୁ ॥ ନଦୀ ଏକ ତିଆରିଲା ବାଜି ବିଦ୍ୟାବଳେ । ବହଇ ପ୍ରବଳ ସ୍ରୋତ ପୂର୍ଣ୍ଣ ହୋଇ ଜଳେ ॥ ପହଁରନ୍ତି ପୁଣି ତହିଁ ଜଳଚର ଜୀବ । ନାଗଟିଏ ସେ ଜଳରେ ବାହୁଅଛି ନାବ ॥ ଦୁଏ ଟଳ ଟଳ ନାବ ନ ରହେ ସମାନ । ଦେଖି ସେ ନାବକୁ ଡରି ନ ବସିବେ ଜନ ॥ ଏ ରୂପରେ ମାୟାନଦୀ ତିଆରି ଭୂପତି । ବିକ୍ରମଙ୍କ ପାଶେ ଯାଇ ମିଳି ରାଜସୁତ ॥ ଯଥାମାନ୍ୟ କରି କହେ ମୁଁ ରାଜ କୁମର । ନେବାପାଇଁ ତୁମ୍ଭଙ୍କୁ ମୁଁ ପେଷିଲେ ପିଅର ॥ ବିକ୍ରମ ନୃପତି ଶୁଣି ଯଥା ମାନ୍ୟ କଲେ ।

ତାହା ସଙ୍ଗତରେ ସୈନ୍ୟଗଣ ଘେନି ଗଲେ ॥ ମାୟାନଦୀ ପାଶେ ଯାଇ ଦେଖିଲେ ସକଳେ । ନାବେ ବସି ସେ ରମଣୀ ଡାକେ କୁତୂହଳେ ॥ ବସ ଆସି ନାବେ ମୁହିଁ ପାର କରିଦେବି । ବିକ୍ରମ ଆଦିତ୍ୟ ଶୁଣି ମନେ ହେଲେ ଭାବି ॥ ପାର ହେବେ ଏହି ନାବେ କପରି ସକଳେ । ଜାଣି ତାହା ନୃପ କର୍ଣ୍ଣେ କହିଲେ ବେତାଳେ ॥ ନଦୀ ନୁହେଁ ଭୋଜରାଜ ଅଟେ ଜାଣ ଏହି । ଚାଲି ଯାଅ ଘେନି ସୈନ୍ୟ ଭୟ କିଛି ନାହିଁ ॥ ବେତାଳଙ୍କ କଥା ନୃପ ଶୁଣନ୍ତେ କର୍ଣ୍ଣରେ । ଏବେ ସତ୍ୟ କଲ କଥା ପଡ଼ିଲା ମନରେ ॥ ପାଦରେ ପାଣ୍ଠୋଇ ଥାଇ ସଇନ୍ୟଙ୍କୁ ଘେନି । ପଶିଗଲେ ଜଳରେ ସେ ମାୟାକୁ ନ ମାନି ॥ ନଦୀ ଆଦି ଯେତେ ସବୁ ମାୟା ହେଲା ଦୂର । ବିରସ ହୋଇଲା ଦେଖି ସେ ଭୋଜ କୁମର ॥ ପ୍ରଥମ ବାଜକ ଜିଣି ବିକ୍ରମ ଆଦିତ୍ୟ । ସଙ୍ଗେ ଘେନି ସୈନ୍ୟଗଣ ଚଳିଲେ ତୁରିତ ॥ ଭୋଜନୃପତିଙ୍କୁ ଯାଇ ଜଣାଇଲା ଖବର । ଜିଣିଲେ ପ୍ରଥମ ବାଜି ବିକ୍ରମ ମିହିର ॥ ଭୋଜନୃପ ତାହା ଶୁଣି ହୋଇଲେ ବିରସ । କନିଷ୍ଠ ପୁତ୍ରକୁ ତହୁଁ କହିଲେ ଏ ଭାଷ ॥ ଜାଣ ବାବୁ ଆସୁଅଛି ବିକ୍ରମ ଆଦିତ୍ୟ । ତୋ ବାଜିବିଦ୍ୟାରେ ଜିଣି ଆସ ତୁ ତୁରିତ ॥ ଏହା ଶୁଣି ପିତାଠାରୁ କନିଷ୍ଠ ନନ୍ଦନ । ବାଟେ ଦେଖିଲା ସେ ଯାଇ ଏକ ବେଣାବନ ॥ ପ୍ରକାଶିଲା ନିଜ ମାୟା ସେଠାରେ ତାହାର । ତ୍ରିତଳ ପ୍ରାସାଦ ହେଲା ଅତି ମନୋହର ॥ ପୁଷ୍କରିଣୀ ଏକ ସୁନିର୍ମଳ ଜଳେ ପୂର୍ଣ୍ଣି । ଫଳପୁଷ୍ପେ ପରିପୂର୍ଣ୍ଣ ପୁଣି ଉପବନ ॥ ରାଜପୁତ୍ର ମାୟା ବିରଚିଲା ଏହିପରି । ବିକ୍ରମଙ୍କୁ ଜିଣିବାକୁ ମନରେ ବିଚାରି ॥ ତାହା ଦେଖି ସୈନ୍ୟସଙ୍ଗେ ବିକ୍ରମ ମିହିର । ଅଟ୍ଟାଳିକା ଦେଖି ମନେ କରନ୍ତି ବିଚାର ॥ ନିତ୍ୟକର୍ମ ଏହିଠାର ରହି କରିବା । ଶୁଭମନ୍ତ୍ର ରୂପେ ଭୋଜନୃପଙ୍କୁ ଭେଟିବା ॥ ବିକ୍ରମଙ୍କ ବିପ୍ରଙ୍କୁ

ଜାଣି ସେ ବେତାଳେ । ହସି ହସି ଜଣାଇଲେ ତାଙ୍କୁ ସେହିକାଳେ ॥ ନୁହଇ ଏ ଅଟ୍ଟାଳିକା ମାୟାର ବିସ୍ତାର । ପଶି ସେ ଗୃହରେ ମଳ-ମୂତ୍ର ତ୍ୟାଗ କର ॥ ଦେଖିବ ସେ ମାୟା ସବୁ ହୋଇଯିବ ଲୀନ । ତାହା ଶୁଣି ଜଳପାତ୍ର ଘେନି ନରରାଣ ॥ ତ୍ୟାଗ କଲେ ମଳ-ମୂତ୍ର ସେ ଗୃହ ଭିତରେ । ଦେଖୁ ଦେଖୁ ମାୟା ସବୁ ପଳାଇଲା ଦୂରେ ॥ ଅଟ୍ଟାଳିକା ନାହିଁ ବେଣାବନ ହିଁ ଦିଶିଲା । ତାହା ଦେଖି ରାଜାଙ୍କର ଗହଣ ଶୁଖିଲା ॥ ଏହା ଦେଖି ଆଚମ୍ବିତେ ଭୋଜ ସାନ ସୁତ । ବିକ୍ରମ ନୃପତି ପାଦେ କରି ଦଣ୍ଡବତ ॥ ଯାଇ ପିତା ଆଗେ ସେ କଥାକୁ ଜଣାଇଲା । ଶୁଣି ଚିତ୍ତେ ଭୋଜ ନରପାଳ ବିସ୍ମିଲା ॥ ଦୁଇବାଜି ବୁଦ୍ଧିବଳେ ଜିଣିଲା ବିକ୍ରମ । ଆଉ ଏକ ବାଜି ମାତ୍ର ମୋର ମନସ୍କାମ । ସେ ବାଜିକି ଯେବେ ଜିଣି ପାରେ ଏ ନୃପତି । ନିଶ୍ଚେ ଦେବି ତେବେ ଯାଙ୍କୁ ମୋର ଭାନୁମତୀ ॥ ଏହା ଭାବି ମନ ମଧ୍ୟେ ପଠାଇ ମନ୍ତ୍ରୀକି । ବିକ୍ରମାଦିତ୍ୟଙ୍କୁ ନେଲେ ବାଟରୁ ସେ ଡାକି ॥ ବହୁ ମାନ୍ୟ କରି ତାଙ୍କୁ ଗୃହେ ରଖାଇଲେ । ବହୁ ରତ୍ନ ଖଞ୍ଜି ଏକ ସଭା ମଣ୍ଡାଇଲେ ॥ ରତ୍ନସିଂହାସନେ ପୁଣି ବସାଇ ତାହାଙ୍କୁ । ଦାସୀଙ୍କୁ କହିଲେ ଆଣ ସେ ଭାନୁମତୀକୁ ॥ ଦାସୀମାନେ ଶୁଣି ଗଲେ ହୋଇଲେ ହରଷ । ଭାନୁମତୀକି ଆଣିଲେ କରିଣ ସୁବେଶ ॥ ସେ ସମୟେ ମାୟାବଳେ ଭୋଜ ନରପତି । କଲା ଭାନୁମତୀ ପ୍ରାୟ ଅସଂଖ୍ୟ ଯୁବତୀ ॥ ସବୁ ଯୁବତୀଙ୍କ ରୂପ ଦିଶଇ ସମାନ । ନ ଦିଶଇ ଭାନୁମତୀଠାରୁ କେହି ଭିନ୍ନ ॥ ଶୋଭାପାଏ ସମସ୍ତଙ୍କ କଣ୍ଠରେ ପୁଷ୍ପହାର । ଗୁନ୍ଥା ହୋଇ ନାନା ପୁଷ୍ପେ ଦିଶେ ମନୋହର । ବୋଲେ ଭୋଜରାଜ ଆହେ ବିକ୍ରମ ଭୂପତି । ଚିହ୍ନ କିଏ ଏମାନଙ୍କ ମଧ୍ୟେ ଭାନୁମତୀ ॥ ଯେବେ ବିଭାହେବ ହସ୍ତ ଧରି ନିଅ ତାର ବିକ୍ରମ ମିହିର ଶୁଣି ହେଲେ ନିରୁତ୍ତର ॥ ଗୁପତରେ ରହି କର୍ଣ୍ଣେ

କହିଲ ବେତାଳ । ମୁଁ କହିବା କଥା କର କିଛି ହିଁ ନ ଭାଳ ॥ ଭ୍ରମର ହୋଇଣ ଦୁହେଁ ଉଡ଼ିଆସି ମୁହିଁ । ଉଡ଼ିବ ଯା ମୁଖ ପାଶେ ଭାନୁମତି ସେହି ॥ ଏହା କହି ଭାନୁମତି ପାଶେ ଗଲ ବେଗେ । ମଧୁପରୂପକୁ ଧରି ଉଡ଼ିଲ ତା ଆଗେ ॥ ଦେଖି ତାହା ହୋଇ ହୃଷ୍ଟ ବିକ୍ରମ ମିହିର । ପାଣିକୁ ଆଣିଲେ ଧରି ଭାନୁମତି କର ॥ ଭୋଜରାଜ ମାୟା ସବୁ ଗଲ ଦୂର ହୋଇ । ହେ ୍ ମ ତାହା ଦେଖି ଆନନ୍ଦିତ ହୋଇ ॥ ରଖାଇଲେ ନିଜ ଗୃହେ ବିକ୍ରମାଦିତ୍ୟଙ୍କୁ । ଡକାଇ ଆଣିଲେ ନିଜ ବନ୍ଧୁ ବାନ୍ଧବଙ୍କୁ ॥ କରାଇ ଉତ୍ସବ ନିଜ ନଗ୍ର ମଣ୍ଡାଇଲେ । କୁଳାଗ୍ରର ମତେ ସର୍ବ ଦ୍ରବ୍ୟ ସମ୍ପାଦିଲେ ॥ ବସାଇଣ ବିକ୍ରମଙ୍କୁ ରତନ ବେଦୀରେ । ସାକ୍ଷୀ କରି ଅନଳକୁ କନ୍ୟା ସମର୍ପିଲେ ॥ ବିଭା ହୋଇ ଜେମାଙ୍କୁ ସେ ବିକ୍ରମ ଭୂପତି । କୁଳାଗ୍ରର ମାନି ତହିଁ ରହିଲେ ସେ ରାତି ॥ ପରଦିନ ପ୍ରଭାତରୁ ବିକ୍ରମ ଆଦିତ୍ୟ । ଶଯ୍ୟା ତେଜି କରାଇଲେ ନିଜ ପ୍ରାତକୃତ୍ୟ ॥ ତାହାପରେ ଶ୍ୱଶୁରଙ୍କୁ ଆଣିଲେ ଡକାଇ । ମେଲାଣି ମାଗିଲେ ନିଜ ଦେଶେ ଯିବାପାଇଁ ॥ ତାହା ଶୁଣି ଭୋଜନୃପ ଦେଲେ ଯଉତୁକ । ସଂଖ୍ୟା କରି ହେବ ନାହିଁ ଏତେ ଯେ ଅଧିକ ॥ ବିକ୍ରମାଦିତ୍ୟଙ୍କ କର୍ଣ୍ଣେ କହେ ଭାନୁମତୀ । ଦାସ ଦାସୀ କୁଜା କୁଜୀ ନାମେ ଯେ ଅଛନ୍ତି ॥ ସେ ଦୁହିଙ୍କି ମାଗି ନିଅ ପିତାଙ୍କୁ ମୋହର । ବିକ୍ରମ ଆଦିତ୍ୟ ଶୁଣି ଭାନୁମତି ଗିର ॥ ତହୁଁ ମଗାଇଲେ କୁଜା କୁଜୀ ଦୁହିଙ୍କି ସେ । ତାହା ଶୁଣି ଭୋଜନୃପ କହିଲେ ସକ୍ରୋଧେ ॥ ସମ୍ପତ୍ତି ସେ କୁଜା କୁଜୀ ଅଟନ୍ତି ମୋହର । ତୁମ୍ଭେ ଯେବେ ମାଗୁଅଛ ନ ଦେବା କପଟ ॥ ଏହା କହି ସେ ଦୁହିଙ୍କି ଯଉତୁକ ଦେଲେ । ବିକ୍ରମ ଆଦିତ୍ୟ ସୁଖେ କନ୍ୟା ଘେନି ଗଲେ ॥ ବେତାଳ ସହିତେ ଗଲେ ସକଳ ସଇନ । ଯାଇ କେତେଦୂରେ ବସା କଲେ ସେ ରାଜନ ॥ ସୈନ୍ୟଗଣ ସହିତ ସେ ରହିଲେ ସେଠାରେ ।

ନିତ୍ୟ କର୍ମ ସାରି ରାଜା ସଭାରେ ବସିଲେ ॥ କୁଜୀ ଯାଇଥିଲା ତାକୁ ଦେଖିଲେ ନୃପତି । ବିରକ୍ତ ହୋଇଣ ତହୁଁ ଏପରି କହନ୍ତି ॥ ସ୍ତ୍ରୀ କଥା ଶୁଣି ମୂର୍ଖ ବୁଦ୍ଧି ହରାଇଲ । ଅସୁନ୍ଦର କୁଜା କୁଜୀ ଯୋଡାଏ ଆଣିଲ ॥ କୁଜୀ ତାହା ଶୁଣି ମନେ କଲା ଅତି କୋପ । କରିବଲ ଗୁଣ ମୋର ନ ଜାଣେ ଏ ନୃପ ॥ ଦେଖାଇବି ଗୁଣ କିଛି ତାହାଙ୍କୁ ମୁଁ ଆଜ ॥ ଏହା ଭାବି ଖଣ୍ଡେ ଦୂର ଚାଲିଗଲା କୁଜୀ ॥ ମାୟା ଆରମ୍ଭିଲା ସେହୁ କଣ୍ଟକ ବଣରେ । ମାୟା ଧୂଳି ଉଡ଼ାଇଲା ଗଗନ ପଟରେ ॥ ଘର ବାଡ଼ କୋଠା ହେଲା ହିପୁଷି ହିପୁଷ । ଶୋଭାପାଏ ଉପବନ ଫଳ ଫୁଲେ ପୂରି ॥ ମନୋହର ଶିବାଳୟ କଲା ସେ ଭିତରେ । ସ୍ଫଟିକମଣିର ଲିଙ୍ଗ ସ୍ଥାପିଲା ମାୟାରେ ॥ ଜଳପୂର୍ଣ୍ଣ ପୁଷ୍କରଣୀ ତା ନିକଟେ ହୋଇ । ପଦ୍ମ ଆଦି କୁସୁମରେ ଶୋଭନ ଦିଶଇ ॥ ଏହିପରି ମାୟାଟିଏ କରି ସମ୍ପାଦନ । କୁଜୀ ଥାଏ ଗୁପ୍ତେ ଏହିକାଳେ ନରରାଣ ॥ ବୁଲି ଯାଉଥିଲେ ସେହି ମାୟାକୁ ଦେଖିଲେ । ଦେଖି ଶିବାଳୟ ମନେ ସନ୍ତୋଷ ଲଭିଲେ ॥ ବିଚାରିଲେ ଯିବାକୁ ସେ ଶିବ ମନ୍ଦିରକୁ । ଦର୍ଶନ କରିବି ଯାଇ ତହିଁରେ ଶିବଙ୍କୁ ॥ ଏହା ଭାବି ଯିବାବେଳେ ବିକ୍ରମ ରାଜନ । ସେହିକାଳେ କୁଜୀ କଲା ମାୟାର ଭିଆଣ ॥ କାହୁଁ ଆସି ନୃପ ପାଦେ ଲାଗିଗଲା ମଳ । ଶଉଚ ହେବାକୁ ତହୁଁ ଗଲେ ତତକାଳ ॥ ମାୟାର ସେ ପୁଷ୍କରଣୀ ଜଳରେ ଝଟତି । ବୁଡ଼ନ୍ତେ ଶରୀର ଲୁଗା ତାଙ୍କର ନ ଥାନ୍ତି ॥ କଣ୍ଟା ଲାଗି ଦେହଯାକ ହେଲା ବିଦାରିତ । ଶରୀରରୁ ରକ୍ତଧାର ବହିଲା ବହୁତ ॥ ଚିନ୍ତିଲେ ତାହା ଦେଖି ବିକ୍ରମ ଆଦିତ୍ୟ । କଣ୍ଟା ଝଣ୍ଟା ଏ ଜଳରେ ପଡ଼ିଛି ବହୁତ ॥ ଦେହଯାକ ସେ କଣ୍ଟାରେ ଛିରି ହୋଇଗଲା । ସେଥିପାଇଁ ଦେହରୁ ମୋ ରକତ ବହିଲା ॥ ନରପତି ଏହିପରି ବିଚାରିବା କାଳେ । ମାୟା ସବୁ ହରି ନେଲା କୁଜୀ

ମନ୍ତ୍ରବଳେ ॥ ନପୂନ ବୁଲାଇ ତହୁଁ ବିକ୍ରମ ଆଦିତ୍ୟ । ଦେଖିଲେ ସେ ଘରଦ୍ୱାର କିଛି ହିଁ ନାହିଁ ତ ॥ ନାହିଁ ଶିବାଳୟ ପୁଣି ନାହିଁ ଜଳାଶୟ । କୁଜା ଏକା ବସିଅଛି ସବୁ କଣ୍ଟାମୟ ॥ ତା ଦେଖି ଲଭିଲେ ରାଜା ବିସ୍ମୟ ହରଷ । କରିଲେ ପ୍ରଶଂସା ତହିଁ କୁଜାର ବିଶେଷ ॥ କିଛି ନ କହିଲେ ତାକୁ ସେହି ଦିନଠାରୁ । ଆନନ୍ଦେ ରହିଲା କୁଜା ମାୟାପ୍ରକାଶରୁ ॥ କୁଜାକୁ ଦେଖିଲେ କ[illegible]ଜା ହୋନ୍ତି ଚଳ । କାହିଁକି ଅଛି ଏ ବୋଲି ବିଅନ୍ତି ସେ ରାଜା ॥ ଜାଣିପାରି ସେ କଥାକୁ ବିସ୍ମରିଲା କୁଜା ଯେତେ ଗୁଣ ଅଛି ମୋର ନ ଜାଣେ ଏ ରାଜା ॥ ମାୟା କରି କହାଇଲେ ଚିହ୍ନିବ ସେ ମୋତେ । ଏପରି ବିଚାରି କୁଜା ଚଳିଲା ତୁରିତେ ॥ ଗୁପତେ ରହିଲା ଯାଇ ରାଗରେ ସେ ଜଳି । ନଗରେ ଭେଳକି ବୋଲି ଉଡ଼ାଇଲା ଧୂଳି ॥ ଯୋଡିଲା ଅପୂର୍ବ ମାୟା ବହୁ ସୈନ୍ୟ ଆସି । ମାର ମାର ବୋଲି ସର୍ବେ ଗର୍ଜନ୍ତି ତରାସି ॥ ଡାକନ୍ତି ରେ ବିକ୍ରମ ତୁ ଆସି ଯୁଦ୍ଧ କର । ସହି ନ ପାରି ସେ ଡାକ ବିକ୍ରମ ମିହିର ॥ କ୍ରୋଧଭରେ ଆଜ୍ଞା ଦେଲେ ନିଜ ସୈନ୍ୟଗଣେ । ତାହା ଶୁଣି ସୈନ୍ୟେ ଯାଇ ପଶି ଗଲେ ରଣେ ॥ ମାୟାସୈନ୍ୟ ସଙ୍ଗତରେ ସମର କରନ୍ତେ । ରକ୍ତେ ଜରଜର ହୋଇଗଲେ ବାଣ ଘାତେ ॥ ସୈନ୍ୟଙ୍କର ପୀଡ଼ା ଦେଖି ବିକ୍ରମ ଆଦିତ୍ୟ । ଧନୁଶର କରେ ଧରି ହୋଇ କୋପାନ୍ୱିତ ॥ ଅବିଚ୍ଛିନ୍ନେ ବିନ୍ଧିଲେ ସେ ବାଣ କୋଟି କୋଟି । ଭୂମିରେ ପଡିଲେ ମରି ବହୁ ସୈନ୍ୟ ଲୋଟି ॥ ବଞ୍ଚିଥିଲେ ଯାହା ରଣ ଛାଡି ପଳାଇଲେ । ବିକ୍ରମ ଆଦିତ୍ୟ ତାହା ଦେଖି ଆନନ୍ଦରେ ॥ କେତେ ମଲେ ଶତ୍ରୁ ସୈନ୍ୟ ଦେଖିବାର ପାଇଁ । ରଣକ୍ଷେତ୍ରେ ପ୍ରବେଶିଲେ ସେହିକ୍ଷଣି ଯାଇ ॥ ଦେଖିଲାବେଳକୁ କବି କାଳିଦାସ ତହିଁ । ଧନ୍ୱନ୍ତରି ବରରୁଚି ମରିଛନ୍ତି ଶୋଇ ॥ ପ୍ରାଣ ଛାଡି ପଡିଛନ୍ତି ବରାହମିହିର । ବେତାଳ

ଲକ୍ଷ ସନ୍ଧିତେ ଘଣ୍ଟକର ପର ॥ ଯେତେ ଯେତେ ଏହିପରି ଥିଲେ ସୁପଣ୍ଡିତ । ସେ ଯୁଦ୍ଧରେ ପଡ଼ିଛନ୍ତି ହୋଇ ସର୍ବେ ହତ ॥ ସେମାନଙ୍କ ମୃତ୍ୟୁ ଦେଖି ବ୍ୟଥିତ ହୋଇଣ । ହାହାକାର କରି ନୃପ ଚେତା ହରାଇଣ । ପୁଣି ଜ୍ଞାନ ପାଇ ରାଜା କରନ୍ତି କ୍ରନ୍ଦନ । ସୁମରି ସେ ଚିରସଙ୍ଗୀ ପଣ୍ଡିତଙ୍କ ଗୁଣ ॥ ଛାଡ଼ି ତୁମ୍ଭଙ୍କୁ ମୁଁ ଆଜ କପରି ରହିବ । ତୁମ୍ଭମାନଙ୍କ ସଙ୍ଗେ ଜୀବନ ହାରିବ ॥ କୁଜା ଦେଖି ରାଜାଙ୍କର ବିକଳ କ୍ରନ୍ଦନ । ପୁଣି ମନ୍ତ୍ରବଳେ ମାୟା କରିଲା ହରଣ ॥ ନୟନ ବୁଲାଇ ଚହୁଁ ଦେଖିଲେ ରାଜନ । ରଣ ଚିହ୍ନ ନାହିଁ ସବୁ ହୋଇଅଛି ଶୂନ୍ୟ ॥ କୁଜା ଆଗେ ଠିଆ ହୋଇ ମୃଦୁ ହାସ୍ୟ ହସେ । ଯା ଦେଖି ଜାଣିଲେ ରାଜା ମାୟା କୁଜାର ସେ ॥ ସେ ଦିନୁ ସେ କୁଜାଠାରେ ହୋଇଲେ ପ୍ରସନ୍ନ । କୁଜା କୁଜୀ ନ ହୋଇଲେ ଆଉ କୋପ ମନ ॥ ଦିନାକେତେ ଯିବା ପରେ ବିକ୍ରମ ଆଦିତ୍ୟ । ସଭା କଲେ ଘେନି ସଙ୍ଗେ ସକଳ ପଣ୍ଡିତ ॥ ପାତ୍ର ମନ୍ତ୍ରୀ ଅମାତ୍ୟ ସକଳେ ଅଛନ୍ତି । ଦେବସଭା ବୋଲି ଲୋକେ ଦେଖି ବିସ୍ମରନ୍ତି ॥ ସେହିକାଳେ କୁଜା କୁଜୀ ବେଶ ଭୂଷା ହୋଇ । ସେ ସଭା ନିକଟେ ଦୁହେଁ ପହଞ୍ଚିଲେ ଯାଇ ॥ କାଳିଦାସ ଆଦି ସବୁ ପଣ୍ଡିତେ ଦେଖିଲେ । କରି ତାଙ୍କୁ ଉପହାସ କବିତା ପଢ଼ିଲେ ॥ କୁଜା କୁଜୀ ହାସ୍ୟ ତାଙ୍କ ଶୁଣିକରି ବେଗେ । ସେ ସ୍ଥାନରୁ ପଳାଇଲେ ଲଜ୍ଜାପାଇ ରାଗେ ॥ ଦୁହେଁ ବସି ଏକାନ୍ତରେ ଏ ବିଚାର କଲେ । ଯେଉଁ ମୁଖେ କବିଗଣ ଆମ୍ଭଙ୍କୁ ହସିଲେ ॥ ସେହି ମୁଖେ ତାଙ୍କୁ ଆମ୍ଭେ କନ୍ଦାଇବା ଯେବେ । ତେବେ ସିନା ଆମ୍ଭ ଗୁଣ ସେମାନେ ଜାଣିବେ ॥ ଏପରି ସେ କୁଜା କୁଜୀ ବିଚାରିଣ ଚିତ୍ତେ । ରାତି ଦୁଇ ଘଡ଼ି ଥାଉଁ ଉଠିଲେ ଗୁପତେ । ବୁଲି ନଗ୍ର ବୃକ୍ଷପାଖେ ଉଡ଼ାଇ ଧୂଳିକ । ଧୋଇଲେ ସବୁରି ଦେହେ ଲାଗରେ ଭେଳିକ ॥ ଏହା ସେ ନଗ୍ରର ଲୋକେ

ନ ଜାଣିଲେ କେହି । କୁଜା କୁଜୀ ଚାଲିଗଲେ ଭେଳକି ଲଗାଇ ॥ ବସିଲେ ବିକ୍ରମାଦିତ୍ୟ ସଭା ମଣ୍ଡାଇଣ । ଶୋଭା ପାଉଥିଲେ ସୁଧୀ ପାତ୍ର ମନ୍ତ୍ରୀ ଗଣ ॥ କୁଜା କୁଜୀ ତାହା ଦେଖି ଦୁହେଁ ମେଣ୍ଟି ଗଲେ । ମନ୍ତ୍ର ଯନ୍ତ୍ର ତନ୍ତ୍ର ବଳେ ମାୟା ଭୁଆଇଲେ ॥ ଘୋଡ଼ା ପରେ ବସି ଜଣେ କ୍ଷତ୍ରିୟ ପୁରୁଷ । ସଙ୍ଗେ ଅଛି ନାରୀ ଏକ ଧରି ବୀରବେଶ ॥ ପରମାସୁନ୍ଦରୀ ଅଟେ ସେ ନାରୀ ରତନ । ଯେଣୁ ତାକୁ ସଙ୍ଗତରେ ଆସିଲା ବାହନ ॥ ନିଜ ହସ୍ତେ ରମଣୀର ହାତକୁ ଧଇଲା । ଉତୁରି ଘୋଡ଼ାରୁ ବୀର ସଭାରେ ମିଳିଲା ॥ ବିକ୍ରମାଦିତ୍ୟଙ୍କୁ ଚାହିଁ ବୋଲଇ ସେ ଶୁଣ ଆହେ ନୃପ ତୁମ୍ଭେ ଅଟ ଧାର୍ମିକ ପୁରୁଷ ॥ ଜଗତରେ ବୋଲାଉଛ ପର ଉପକାରୀ । କେ ତୁମ୍ଭଙ୍କୁ ସତ୍ୟବାଦୀ ଗଣେ ଅବା ସରି ॥ ତାହା ଜାଣି ଆସିଅଛି ତୁମ୍ଭପାଶେ ମୁହିଁ । ଅନ୍ୟ କାହାଠାରେ ମୋର ବିଶ୍ୱାସ ନ ଥାଇ ॥ ପଡିଅଛି ଅସମ୍ଭବ ସହାୟ ହୋଇବ । ଏ ମୋର ଘରଣୀ ଯାକୁ ଯତ୍ନେ ରଖିଥିବ ଆଜ ମୋର ଇନ୍ଦ୍ରସଙ୍ଗେ ହୋଇବ ସମର । ଏହିକ୍ଷଣି ଯାଉଛି ମୁଁ ଦେଖ ସ୍ୱର୍ଗପୁର ॥ କରିବି ଇନ୍ଦ୍ରକୁ ଜୟ ଆଜ ମୁଁ ସମରେ । ନ ହେବ ସଂଶୟ କିଛି ନୃପ ଏ କଥାରେ ॥ ଅଟେ ଏ ରମଣୀ ମୋର ପ୍ରାଣରୁ ଅଧିକ । ରଖିଥିବ ଯତ୍ନକରି ମୁଁ ଆସିବାଯାକ ॥ ଛାଡ଼ିଗଲା ସ୍ତିରୀରହି ବିଶ୍ୱାସରେ ମୁହିଁ । ରଖିବ ମହତ୍ତ୍ୱ ମୋର ଧର୍ମକୁ ଅନାଇଁ ॥ ବିକ୍ରମ ରାଜନ ଶୁଣି ଏ ବଚନ ତାର । ବୋଇଲେ ପରନାରୀ ମୋ ମାତୃ ପରକାର ॥ ଯାଅ ତୁମ୍ଭେ ରହୁ ଆମ୍ଭ ଉଆସରେ ଏହି । କୁଶଳେ ଆସିଣ ତୁମ୍ଭେ ଯିବ ସଙ୍ଗେ ନେଇ ॥ ଏହା କହି ଦାସୀଗଣ ଡକାଇ ସେକ୍ଷଣି । ତାଙ୍କ ସଙ୍ଗେ ପଠାଇଲେ ଉଆସକୁ ପୁଣି ॥ ଆଜ୍ଞାଦେଲେ ସେ ବିକ୍ରମ ଶୁଣ ଦାସୀମାନେ । ଏ ନାରୀ କି ପାଳୁଥିବ ମାତାର ସମାନେ ॥ ଆଜ୍ଞା ମାନି ଦାସୀମାନେ ତାଙ୍କୁ ଆନନ୍ଦରେ । ଭିତର ପୁରକୁ ସଙ୍ଗେ ଘେନି

ହୁଲଗଲେ ॥ ଏହାପରେ ସେ ପୁରୁଷ ଘୋଡାରେ ବସିଲ । ମାର ମାର କହ ଉଚ୍ଚେ ଶୂନ୍ୟମାର୍ଗେ ଗଲ ॥ ଦେଖୁଥିଲେ ସର୍ବ ଲୋକେ ହୋଇଲ ଅଦୃଶ୍ୟ । ଶୁଭୁଥାଏ ମାର ମାର ଉଚ୍ଚ ଘୋଷ ॥ ଟାଣ ହେଲ ବେଳୁଁ ବେଳ ରଣଗୋଳ ଧ୍ୱନି । ସ୍ତବ୍ଧ ହେଲେ ସର୍ବ-ଲୋକେ କର୍ଣ୍ଣରେ ତା ଶୁଣି ॥ କଛି କାଳ ଏହିପରି ଶୁଭିଲ ଚହଳ । ତାହାପରେ ହେଲ ଯାହା ଶୁଣ ହେ ଭୂପାଳ ॥ ସେ ପୁରୁଷ ହାତ ଗୋଡ଼ ଖଣ୍ଡେ ଖଣ୍ଡେ ଛିଡ଼ି । ଆକାଶରୁ ସର୍ବ ଆଗେ ଯାଉଥାଏ ପଡ଼ି ॥ ଶେଷେ ମୁଣ୍ଡଟେଗାଟି ଛିଡ଼ି ପଡ଼ିଲ ତାହାର । ସର୍ବଲୋକେ ତାହା ଦେଖି କଲେ ହାହାକାର ॥ ଭାର୍ଯ୍ୟା ତାର ଅନ୍ତଃପୁରେ ଥାଇ ସେ କଥାକୁ । ଶୁଣି ହା ହା ନାଥ ବୋଲି ଆସିଲ ସେଠାକୁ ॥ ହାତ ଗୋଡ଼ ମୁଣ୍ଡ ସବୁ ଏକଠାବ କଲ । ବାହୁନି ବାହୁନି ତାକୁ ବକଲେ କାନ୍ଦିଲ ॥ ବକ୍ରମ ଆଦିତ୍ୟଙ୍କର ମୁଖକୁ ଅନାଇ । କାକୁତି ମିନତି ହୋଇ ରମଣୀ କହଇ । ସ୍ୱାମୀ ସଙ୍ଗେ ଯିବ ମୁହିଁ କରିଦଅ ଚିତା । ବଧବା ଜପରି ହେବ ମୁହିଁ ପତିବ୍ରତା ॥ ବକ୍ରମାଦିତ୍ୟ ତା ଶୁଣି ଚନ୍ଦନ କାଷ୍ଠରେ । ଘୃତ ଢାଳି ଜଳାଇଲେ ଚିତା ଅଗ୍ନି ଖରେ ॥ ସ୍ୱାମୀ ଦେହ ଧରି ସେହି ରମଣୀ ଉଠିଲ । ଦେଇ ହରିବୋଲ ଚିତା ଅନଳେ ପଶିଲ । ତାହା ଦେଖି ସାଧୁ ସାଧୁ କଲେ ସବ ନର । ସେ ଅନଳେ ଭସ୍ମ ହେଲ ଦୁହିଙ୍କ ଶରୀର ॥ ଦୁହେଁ ଏହିପରି ଭସ୍ମ ହୋଇଲ ଉତ୍ତାରେ । ମିଳିଲ ଆସି ସେ ବୀର ପୁରୁଷ ସଭାରେ ॥ ହସି ହସି ବୋଲେ ଗୃହିଁ ବକ୍ରମାଦିତ୍ୟଙ୍କୁ ॥ ତୁମ୍ଭ କୃପାବଳେ ନୃପ ଜିଣିଲି ଇନ୍ଦ୍ରଙ୍କୁ ॥ ଦଅ ଏବେ ଭାର୍ଯ୍ୟା ମୋର ଯିବ ନିଜ ଦେଶ । ବିସ୍ମୟେ କହିଲେ ଶୁଣି ବକ୍ରମ ନରେଶ ॥ ଶୁଣ ଆହେ ବୀର ତୁମ୍ଭ ହାତ ଗୋଡ଼ ମୁଣ୍ଡ । ପଡ଼ିଲ ଦେଖିଲୁ ସର୍ବେ ହୋଇ ଖଣ୍ଡ ଖଣ୍ଡ ॥ କାନ୍ଦିଲ ତା ଦେଖି ତୁମ୍ଭ ରମଣୀ ବହୁତ । ତୁମ୍ଭ ଗୁଣ ବାହୁନାଇ ଶିରେ ମାରି

ହାତ ॥ ତୁମ୍ଭ ଅଙ୍ଗ ପ୍ରତ୍ୟଙ୍ଗକୁ ଗୋଟାଇଲ ସେହ୍ନ । ଯେନ ତାକୁ ଅନଳରେ ପଶିଲ ଝସାଇ ॥ ସର୍ବ ସଭାଜନେ ଏହା ଦେଖିଲେ ଏଠାରେ । ଭସ୍ମ ହୋଇଗଲା ସବୁ ଚିତା ଅନଳରେ ॥ ତାହା ଶୁଣି ହସି ତାଙ୍କୁ ବୋଇଲ ସେ ବୀର । ଆହେ ନୃପ ନୁହେ ଏହା ଉଚିତ ବେଭାର ପରନାରୀ ରଖି ହେବ ବିଶ୍ୱାସଘାତକ । ଏହ୍ନ ମହାପାପେ ଜାଣ ଭୁଞ୍ଜିବ ନରକ ॥ ମଲ ବୋଲି ଯେବେ ସେହୁ ସତ୍ୟ କହୁଅଛ । ଅଳଙ୍କାର ଦିଅ ତାର କାହିଁ ରଖିଅଛ । ସଂଶୟ ଗୁଚିବ ମୋର ସେ ସବୁ ଦେଖିଲେ । ନୃପ ଶୁଣି ବିସ୍ମୟରେ ନିରୁତ୍ତର ହେଲେ ॥ ନୀରବ ହେବାରୁ ରାଜା କବି କାଳିଦାସ । ବୋଇଲେ ଅଗ୍ନିରେ ତୁମ୍ଭ ନାରୀ ଦେଲ ଝାସ ॥ କିମ୍ପା କେ ରଖିବ ଅବା ଅଳଙ୍କାର ତାର । ବୃଥା କିମ୍ପା ଛିଦ୍ର ଖୋଜ ତୁମ୍ଭେ ନୃପଙ୍କର ॥ ଏହା ଶୁଣି ବୀର ତାଙ୍କୁ ବୋଲଇ ହେ କବି । ଜାଣିଲି ମୁ ତୁମ୍ଭ କଥା ମନେ ମନେ ଭାବି ॥ ରାଜା ଆଉ ତୁମ୍ଭେ ମିଳି କଲ ଏ ବିଚାର । ନାରୀ ସେ ରଖିଲେ ନେଲ ତୁମ୍ଭେ ଅଳଙ୍କାର ॥ ପଣ୍ଡିତ ବ୍ରାହ୍ମଣ ହୋଇ ଏତେ ଲୋଭଗ୍ରସ୍ତ । ପର ଅଳଙ୍କାର ନେଇ ବଢ଼ାଇବ ଶୋଭ ॥ ତା ନ ହେଲେ ମୋ ବନିତା କଣ୍ଠୀ ଅଳଙ୍କାର । ତୁମ୍ଭ କଣ୍ଠଦେଶେ ଝୁଲେ କାହିଁ କ ପ୍ରକାର ॥ ତାହା ଶୁଣି କାଳିଦାସ କଣ୍ଠକୁ ଚାହିଁଲେ । କଣ୍ଠୀଭୂଷା ଝୁଲୁଅଛି ଚକଚକେ ଦେଖିଲେ ॥ କାଢ଼ି ତାହା ସେହ୍ନକ୍ଷଣି ପକାଇ ଭୂତଳେ । ଲଜ୍ଜାରେ ପୋଛିଲେ ମୁଖ ନେତ୍ରୁ ଅଶ୍ରୁ ଗଳେ ॥ ତୋଳି ନେଇ ଅଳଙ୍କାର ରଖିଲ ସେ ବୀର । ବିକ୍ରମାଦିତ୍ୟଙ୍କୁ ପୁଣି କହଇ ଏ ଗୀର ॥ ତୁମ୍ଭେ ପରା ସତ୍ୟବାଦୀ ନୃପ ଜଗତରେ । ସେଥିଲାଗି ଶରଣ ମୁଁ ଗଲି ତୁମ୍ଭଠାରେ ॥ ରଖିଗଲି ବିଶ୍ୱାସରେ ଆପଣା ଭାର୍ଯ୍ୟାକୁ । ଲୋଭ କରି କିମ୍ପା ତୁମ୍ଭେ ରଖିଲ ତାହାକୁ ॥ ପରଦ୍ରବ୍ୟ ପରନାରୀ ହରିଲ କେସନ ।

ପାପ ତୁଏ ଜାଣିଥିବ ଆହେ ନରରାଣ ॥ ଯାହାହେଲା ଏବେ ଛାଡ଼ି ମନରୁ ଭେଦକୁ । ଦିଅ ମୋ ରମଣୀ ମୋତେ ଯିବି ସ୍ୱଦେଶକୁ ॥ ପୁରୁଷର ଏହିପରି ବଚନକୁ ଶୁଣି । ମହାଲଜ୍ଜା ପାଇ ନୃପ କହିଲେ ସେକ୍ଷଣି ॥ ଆହେ ବୀର ଯେବେ ତୁମ୍ଭ ନାରୀ ଅଛି କହ । ଡକେ ଡାକ ଆସୁ ସେହି ଫିଟିବ ସନ୍ଦେହ ॥ ନୃପତି ମୁଖରୁ ଏହା ଶୁଣି ସେହି ବୀର । ମନ୍ଦହାସ କରି ତହୁଁ ଡାକିଲା ନେବାର । ତିନିଥର ଆଦରରେ ଡାକିଲା ଉଚ୍ଚରୁ । ସେ ରମଣୀ ବାହାରିଲା ରାଜ ଭବନରୁ ॥ ସଭାମଧ୍ୟେ ବସି ସର୍ବେ ରହିଥିଲେ ଚାହିଁ । ନିଜ ସ୍ୱାମୀ ସମୀପରେ ମିଳିଲା ସେ ଯାଇ ॥ ହସି ବୋଲେ ସେ ପୁରୁଷ ହେ ବିକ୍ରମାଦିତ୍ୟ । ନାହିଁ ନାହିଁ ବୋଲି ପରା କହୁଥିଲ ସତ୍ୟ ॥ ନ ଥିଲା ତ ତୁମ୍ଭ ଘରୁ ଆସିଲା କପରି । ଶୁଣିଣ ନୃପଙ୍କୁ ଲଜ୍ଜା ପକାଇଲା ଘାରି ॥ ତଳକୁ ଚାହିଁ ସେ ଆଉ ନ ଦେଲେ ଉତ୍ତର । କୁଜା କୁଜୀ ହରିନେଲେ ମାୟାକୁ ତାଙ୍କର ॥ ନରପତି ଆଦି ସର୍ବେ ଦେଖିଲେ ସେଠାରେ । ମାୟାର ଘଟଣା କିଛି ନାହିଁ ସେହି କାଳେ ॥ ନାହିଁ ସେ ପୁରୁଷ ସ୍ତ୍ରୀ ନାହିଁ ସେହି ବାଳ । ହେଉଛନ୍ତି ହସାହସି ବସି କୁଜା କୁଜୀ ॥ ଦେଖିକରି ସେ ଦୁହିଁଙ୍କୁ ବିକ୍ରମ ରାଜନ । ବହୁତ ପ୍ରଶଂସା କରି ଦେଲେ ବହୁ ଧନ ॥ ଚନ୍ଦ୍ରା ତେଜ କାଳିଦାସ ଆଦି କବିଗଣେ । ଧନ୍ୟ ଧନ୍ୟ କଲେ କୁଜା କୁଜୀଙ୍କୁ ବଦନେ ॥ ଆହେ ଭୋଜରାଜ ଜାଣ ଏହିପରି ଖ୍ୟାତି । ସର୍ବଗୁଣେ ଗୁଣି ଥିଲେ ବିକ୍ରମ ଭୂପତି ॥ ଯେବେ ତୁମ୍ଭେ ତାଙ୍କ ସଙ୍ଗେ ସମାନ ହୋଇବ । ତେବେ ଏହି ସିଂହାସନ ଉପରେ ବସିବ ॥ ଏହା କହି ସେ ପୁତ୍ତଳୀ ଗଲା ଶୂନ୍ୟପଥେ । ବାହୁଡ଼ିଲେ ଭୋଜରାଜ ସେଠାରୁ ତୁରିତେ ॥ ଶେଷ ହେଲା ଉନତ୍ରିଂଶ କଥା ସାଧୁଜନେ । ଜଗନ୍ନାଥ ସିଂହ ଭାବି କହେ ତୋଷମନେ ।

# ତ୍ରିଂଶତ୍ ପୁତ୍ତଳର କଥା

ତାହାପରେ ଏକ ଦିନେ ଭୋଜ ନରପାଣ । ସିଂହାସନେ ବସିବାକୁ ବଳିଲେ ମନ ॥ ନିତ୍ୟକର୍ମ ସାରି ସଙ୍ଗେ ଘେନାଇ ସମ୍ଭାର । ସିଂହାସନ ନିକଟକୁ ଗମିଲେ ସତ୍ୱର ॥ ତ୍ରିଂଶତ ପୁତ୍ତଳ ତାଙ୍କୁ ବୋଇଲା ବଚନ । ଜାଣୁ ଜାଣୁ ନୃପ। ଭୋଜ ପଶୁଅଛ ପୁଣ ॥ ବିକ୍ରମ ଆଦିତ୍ୟ ପରି ବସନ୍ତୁ ଏଥିରେ । ଅଛ କି ହେ ଗୁଣୀ ତୁମ୍ଭେ ତାଙ୍କ ସମାନରେ ॥ ତାହା ଶୁଣି ବୋଇଲେ ସେ ଭୋଜ ମହାରଥୀ । ହେ ପୁତ୍ତଳ କହ ଆମ୍ଭ ଆଗେ ସତ୍ୟ କଥା ॥ ଥିଲେ ସେ ବିକ୍ରମାଦିତ୍ୟ କେବଣ ପ୍ରକାର । ପୁତ୍ତଳିକା ବୋଲେ ତେବେ ଶୁଣ ନରବର ॥ ଏ ଉଜ୍ଜ୍ୱଳ ରାଜ୍ୟ ରଜା ବିକ୍ରମ ରାଜନ । ରାଜଧର୍ମେ କରନ୍ତି ସେ ପରଜା ପାଳନ ॥ ମନର ଆନନ୍ଦେ ଦିନେ ବୁଲି ବାହାରିଲେ । ବନଶୋଭା ଦେଖି ଦେଖି ଅରଣ୍ୟକୁ ଗଲେ ॥ ସନ୍ନ୍ୟାସୀ ଗୁଟିଏ ସେହି ବନରେ ଅଛନ୍ତି । ପର୍ଣ୍ଣକୁଟୀ କରି ତାହା ମଧ୍ୟେ ବସିଛନ୍ତି ॥ ସେମାନଙ୍କ ପାଶେ ମିଳି ବିକ୍ରମ ମିହିର । ପଚାରିଲେ କଥା ଛଳେ ତୀର୍ଥ ସମାଚାର ॥ ସାଧୁମାନେ ତାହା ଶୁଣି ହୋଇ ତୋଷମନ । କହିଲେ ଯା ଦେଖିଥିଲେ ତୀର୍ଥର ବିଧାନ ॥ ସବୁ ଶେଷେ କହିଲେ ସେ ଦକ୍ଷିଣ ଦିଗରେ । ତୀର୍ଥକରି ଯାଇଥିଲୁଁ ଦେଖିଲୁଁ ସେଠାରେ ॥ ରତ୍ନପୁରୀ ନାମେ ଏକ ରାଜଧାନୀ ଜାଣ । ଦେଖିଲୁ ସେଠାରେ ଅଛି ଏପରି ବିଧାନ ॥ ସଫଳା ନାମରେ ଦେବୀ ଅଛନ୍ତି ସେ ଦେଶେ । ନିତି ନରବଳି ରଜା ଦିଏ ତାଙ୍କ ପାଶେ ॥ ବିଦେଶୀ ଦେଖିଲେ ତାଙ୍କୁ ନିଏ ବାନ୍ଧିକରି । ଆମ୍ଭଙ୍କୁ ବି ନେଇଥିଲା ନୃପ ବଳେ ଧରି ॥ ସୌଭାଗ୍ୟରୁ ଆମ୍ଭେମାନେ ପଳାଇ ଆସିଲୁଁ । ଅନୁଭବ କଥା ତୁମ୍ଭ ଆଗେ ପ୍ରକାଶିଲୁଁ । ସାଧୁଙ୍କ ବଚନ ଶୁଣି ବିକ୍ରମ ଆଦିତ୍ୟ । ଏକା ହୋଇ ସେ ଦେଶକୁ ଚଳିଲେ ତୁରିତ ॥

ହୋଇଲେ ପ୍ରବେଶ ଯାଇ ସେହି ରତ୍ନପୁରେ । ବହୁଲୋକ ଯାଉଥିଲେ ଦେଖିଲେ ପଥରେ ॥ ସର୍ବେ ଆନନ୍ଦିତ ତହିଁ ମଧ୍ୟେ ଏକ ଜଣ । ବନ୍ଧା ଥାଇ ବିକଳରେ କରଇ କ୍ରନ୍ଦନ ॥ ବିକ୍ରମ ରାଜନ ଶୁଣି ହୃଦେ ଦୟା ବହି । ପଚାରିଲେ ସେମାନଙ୍କୁ ବିସ୍ମୟେ ଅନାଇଁ ॥ ସକଳେ ହସୁଛ କିମ୍ପା କରେ ଏ ରୋଦନ । କି କାରଣେ କରିଅଛ ଏହାର ବନ୍ଧନ ॥ ତାହା ଶୁଣି ସେ ସକଳେ ଦିଅନ୍ତି ଉତ୍ତର । ବିଦେଶୀ ଏ ଏହି ଦେଶେ ନୁହେ ଏହା ଘର ॥ କାହୁଁ ଆସିଅଛି ଆଜ ଦେବୀଙ୍କ ଇଚ୍ଛାରେ । ପଡ଼ିବ ଏ ବଳି ରୂପେ ତାହାଙ୍କ ଆଗରେ ॥ ରାଜଦୂତେ ସେହି ହେତୁ ନେଉଛନ୍ତି ବାନ୍ଧି । ପ୍ରାଣ ବିକଳରେ ତେଣୁ ପକାଏ ସେ କାନ୍ଦି ॥ ବିକ୍ରମ ଆଦିତ୍ୟ ଶୁଣି ବେଗେ ଖଡ଼୍ଗ ଧରି । ରାଜଦୂତଙ୍କର ଶିର ଦେଲେ ଛିନ୍ନ କରି । ତାହା ଦେଖି ରାଜାଙ୍କର ସକଳ ସଇନ । ବିକ୍ରମାଦିତ୍ୟଙ୍କ ସଙ୍ଗେ ଆରମ୍ଭିଲେ ରଣ ॥ ଉଗ୍ରମୂର୍ତ୍ତି ଧରି ତହୁଁ ବିକ୍ରମ ଆଦିତ୍ୟ । ଏକାକୀ ବହୁଳ ସୈନ୍ୟ ରଣେ କଲେ ହତ ॥ ବଞ୍ଚିଥିଲେ ଯେତେ ଯୋଦ୍ଧା ପଳାଇଲେ ଡରେ । ଭୟେ ଥରି ଜଣାଇଲେ ରାଜାଙ୍କ ଛାମୁରେ ॥ ହେ ରାଜନ ନେଉଥିଲୁଁ ନରବଳି ଦାଣ୍ଡେ । ଅକସ୍ମାତେ ବୀରଟାଏ କାହୁଁ ଆସି ଚଣ୍ଡେ । ଏକାକୀ ସେ ଅସି ଧରି ସକଳେ ସଇନ୍ୟ । ରଣେ ମାରି ଫିଟାଇଲା ବଳିର ବନ୍ଧନ ॥ ସାମାନ୍ୟ ସେ ନୁହେଁ ବୀର ଜାଣ ଆହେ ନୃପ । ଏକାପୁର ଜଣିପାରେ କହିଲେ ସେ କୋପ ॥ ବୋଇଲେ ନୃପତି ଦେବୀ ପୂଜା ଭଙ୍ଗେ ସେହି । ବୁଝିବେ ସେ ଦେବୀ ଲୋଡ଼ା କଳହରେ ନାହିଁ ॥ ଏହା କହି ସେ ରାଜନ ରହିଲା ନିବୃତ୍ତି । ମନ ମଧ୍ୟେ ବିଚାରିଲେ ବିକ୍ରମ ନୃପତି ॥ ରାଜଦୂତେ ନେଉଥିଲେ ଦେବୀ ପାଇଁ ବଳି । ତାଙ୍କଠାରୁ ଛଡ଼ାଇଲି ମୁହିଁ କରି କଳି ॥ ଦେବୀର ମୁଁ ପୂଜାବିଧି ଭାଙ୍ଗିଲି ଯେଭଳି । କରିବି ତା ପରିଶୋଧ ନିଜେ ହୋଇ ବଳି ॥

ଏହା ଭାବ ଗଲେ ସେହୁ ଦେବୀ ମନ୍ଦିରକୁ । ସ୍ତୋତ୍ର ମନ୍ତ୍ର ଗାନକରି
ପୂଜିଲେ ତାହାଙ୍କୁ ॥ ତାହାପରେ ହରଷରେ ଧଇଲେ ଖଡ୍ଗ ।
କାଟିବାକୁ ନିଜ ଶିର ହୋଇଲେ ସେ ବେଗ ॥ ବିକ୍ରମଙ୍କ ପବିତ୍ରତା
ଜାଣି କାତ୍ୟାୟନୀ । ସମ୍ମୁଖକୁ ଆସି ହସ୍ତୁ ଅସି ଗଲେ ଘେନି ।
ବୋଇଲେ ରାଜନ ତୁହି ପର ଉପକାରୀ । ନିଜ ପ୍ରାଣ ପରପାଇଁ
ଦେଉଅଛୁ ବଳି ॥ ଏ ସାହସ ତୋର ଦେଖି ହେଲି ମୁଁ ପ୍ରସନ୍ନ ।
ମାଗିବୁ ତୁ ଯେଉଁ ବର ଦେବି ଏହିକ୍ଷଣ । ତାହା ଶୁଣି ପ୍ରଣମି ସେ
ବିକ୍ରମ ମିହିର । ବୋଇଲେ ପ୍ରସନ୍ନ ଯେବେ ଦିଅ ଏହି ବର ॥
ନରବଳି ଆଜଠାରୁ ଆଉ ନ ପଡ଼ିବ । ମରିଛନ୍ତି ଯେତେ ସୈନ୍ୟ
ତାଙ୍କୁ ଜିଆଇବ ॥ ଏହାଶୁଣି ଠାକୁରାଣୀ ତାହା ହେଉ କହି ।
ଅମୃତ ମିଶ୍ରିତ ଜଳ ନୃପେ ଦେଲେ ନେଇ ॥ ବୋଇଲେ ଏଥିରେ
ଯୁଦ୍ଧେ ବଞ୍ଚିଥିବା ସୈନ୍ୟ । ଜୀବନ ପାଇବେ ଜାଣ ବିକ୍ରମ ରାଜନ ॥
ଏହା କହି ଭଦ୍ରକାଳୀ ଅନ୍ତର୍ଦ୍ଧାନ ହେଲେ । ଅମୃତ ଜଳକୁ ରାଜା
ଶବରେ ସିଞ୍ଚିଲେ । ପଡ଼ିଥିଲେ ଯେତେ ସୈନ୍ୟ ରଣେ ହତ
ହୋଇ । ଉଠିଲେ ସେ ପୂର୍ବପରି ଅଙ୍ଗେ ପୀଡ଼ା ନାହିଁ ॥ ପୂଜିଲେ
ଆନନ୍ଦେ ସର୍ବେ ବିକ୍ରମଙ୍କ ପଦେ । ବିକ୍ରମ କହିଲେ ଯାଅ ସ୍ୱଗୃହେ
ଆନନ୍ଦେ ॥ ଆଜଠାରୁ ନରବଳି ନ ଲୋଡ଼ିବେ କାଳୀ । ତୋଷିବ
ତାହାଙ୍କୁ ଭୋଗ ଦେଇ ସ୍ତୁତି ବୋଲି ॥ କରନ୍ତି ସେ ଏହିପରି
ପର ଉପକାର । ଆହେ ଭୋଜ ତୁମ୍ଭେ ଯେବେ ଅଟ ସେ
ପ୍ରକାର ॥ ଆନନ୍ଦରେ ବସ ଆସି ଏହି ସିଂହାସନେ । ଏହା
କହି ସେ ପୁତ୍ତଳି ଉଡ଼ିଗଲା ଶୂନ୍ୟେ ॥ ବିରସ ବଦନେ ତହୁଁ
ବାହୁଡ଼ିଲେ ଭୋଜ ଜଗନ୍ନାଥ ସିଂହ କହେ ଭଦ୍ରକାଳୀ ଭଜ ॥

# ଏକତ୍ରିଂଶ ପୁତ୍ତଳର କଥା

ଅପର ଦିବସ ପ୍ରାତେ ନିତ୍ୟ କର୍ମ ସାରି । ଭୋଜରାଜ ପାତ୍ର ମନ୍ତ୍ରୀ ଗଣ ସଙ୍ଗେ ଧରି ॥ ସିଂହାସନ ନିକଟରେ ହୁଅନ୍ତେ ପ୍ରବେଶ । ଏକତ୍ରିଂଶ ପୁତ୍ତଳିକା ହୋଇ ହସ ହସ ॥ ବୋଇଲା ବାତୁଳ କି ହେ ଭୋଜ ନୃପବର । ବାରଣ କଲେ ହେଁ ଯେତେ ବିଚାର ନ କର ॥ ବିକ୍ରମ ଆଦିତ୍ୟଙ୍କର ଏହି ସିଂହାସନ । ଗୁଣବାନ ପୁଣ୍ୟବାନ ତାଙ୍କର ସମାନ ॥ ହେଲେ ଏହି ସିଂହାସନ ଲାଗି ଯୋଗ୍ୟ ହେବ । ପଚାରିଲେ ତାହା ଶୁଣି ସେ ଭୋଜ ନୃଦେବ ॥ ବିକ୍ରମାଦିତ୍ୟଙ୍କ ଠାରେ ଥିଲା କି କି ଗୁଣ । ଜାଣ ଯେବେ ଆମ୍ଭ ଆଗେ କହ ବିସ୍ତାରିଣ ॥ ପୁତ୍ତଳିକା ବୋଲେ ଶୁଣ ସ୍ଥିର କରି ମନ । ପୃଥ୍ବୀ ଥିଲେ ସର୍ବଗୁଣେ ବିକ୍ରମ ରାଜନ ॥ ସେବିଥାନ୍ତି ତାଙ୍କୁ ନଅ ପଣ୍ଡିତ ରତନ । ଏକ ଏକ ଗୁଣେ ଲଭିଥାନ୍ତି ଶ୍ରେଷ୍ଠ ଗୁଣ ॥ ଜ୍ୟୋତିଷ ପଣ୍ଡିତ ତହିଁ ବରାହ ମିହିର । ଶୁଭଲଗ୍ନେ ପୁତ୍ର ଜାତ ହେଲା ତାହାଙ୍କର ॥ ନିଜେ ତ ଜ୍ୟୋତିଷ ବସି କୋଷ୍ଠିକ ଗଣିଲେ । ଶତେ ବର୍ଷ ଆୟୁ ହେଲା ଅଙ୍କରେ ଲେଖିଲେ ॥ ଜଡ଼ ଜଡ଼ ଏକ ମାଛି ସେ ସମସ୍ତେ ଗଲା । ଲେଖା ଶତେ ସଂଖ୍ୟା ଶେଷ ଶୂନ୍ୟରେ ବସିଲା ॥ ପଣ୍ଡିତେ ତ ନ ଜାଣନ୍ତି ବସିବାର ମାଛି । ତଳକୁ ଗୁଣିଲେ କେତେ ଆୟୁଷ ହୋଇଛି ॥ ଶେଷ ଶୂନ୍ୟ ଘୋଡ଼ାଇଣ ମାଛି ବସିଥିଲା । ସେ କଥାରେ ତାହାଙ୍କର ଲକ୍ଷ୍ୟ ନ ହୋଇଲା ॥ ଏକ ଶୂନ୍ୟ ଦେଖି ମନେ କରିଲେ ବିଚାର । ଦଶବର୍ଷ ପରମାୟୁ ହେଲା ଏ ପୁତ୍ରର ॥ ଦଶବର୍ଷ ପାଳି ଯାହା ଦେଖିବା ମରଣ । ଭଲ ହେବ ଆଜଠାରୁ କରିଲେ ବର୍ଜ୍ଜନ ॥ ଏହା ଭାବି ତାମ୍ରଘଣ୍ଟେ ସେ ଶିଶୁକୁ ଭରି । ସମୁଦ୍ରେ ଭସାଇ ଦେଇ ଗୃହେ ଗଲେ ଫେରି ॥ ଭାସି ଭାସି ତାମ୍ରଘଣ୍ଟ

ବହୁଦୂର ଗଲା । ସାଗରିକା ନାମେ ଏକ ଦ୍ୱୀପରେ ଲାଗିଲା ॥ ଏକମେଳେ ବସିଥିଲେ ରାକ୍ଷସୀ ବହୁତ । ଜାଣନ୍ତି ସେ ଗଣନାରେ ଭୂତ ଭବିଷ୍ୟତ ॥ ଗୋଚର ହୁଅଇ ତାଙ୍କୁ ତିନିପୁର କଥା । ଜ୍ୟୋତିଷ ବିଦ୍ୟାରେ ସେହୁ ଜାଣନ୍ତି ସର୍ବଥା ॥ ଆହେ ଭୋଜ ସେ ଦ୍ୱୀପରେ ପୂର୍ବେ ଏକ ରାଜା । ବାସ କରି ପାଳୁଥିଲା ଆନନ୍ଦରେ ପ୍ରଜା ॥ ମେଳ ହୋଇ ରାକ୍ଷସୀଏ ସେ ଦ୍ୱୀପେ ପଶିଲେ । ରାଜା ପ୍ରଜା ଥିଲେ ଯାହା ସବୁ ଖାଇଗଲେ ॥ ରାଜାର କନ୍ୟାଏ ଥିଲା ତାଙ୍କୁ ଯତନରେ । ରଖି ପାଳଥାନ୍ତି ସର୍ବେ ଅତ୍ୟନ୍ତ ସ୍ନେହରେ ॥ ଦିନେ ସିନ୍ଧୁକୂଳେ ଥିଲେ ସେ ରାକ୍ଷସୀଗଣ । ତାମ୍ର ଭାଣ୍ଡ ଭାସିବାର ଦେଖିଲେ ସେ ଜାଣ ॥ କୋଳାହଳ କରି ତହୁଁ ବୋଇଲେ ସକଳେ । କି ପଦାର୍ଥ ଭାସି ଆସେ ଦେଖି ସିନ୍ଧୁଜଳେ ॥ ତା ମଧ୍ୟରୁ ବୃଦ୍ଧା ଏକ କହିଲା ଏସନ । ସବୁ କଥା ଜାଣିବ ତ କରନ୍ତେ ଗଣନ ॥ ବୃଥାଟାରେ କରୁଅଛ କିମ୍ପା କୋଳାହଳ ତା ଶୁଣି ରାକ୍ଷସୀ ଏକ ଗଣିଲା ତଞ୍ଚଳ ॥ ଗଣି ଗଣି ବିଦ୍ୟାବଳେ ଜାଣିଲା ରାକ୍ଷସୀ । ତାମ୍ର ଭାଣ୍ଡେ ପୁତ୍ର ଏକ ଆସୁଅଛି ଭାସି ॥ ତାହା ଶୁଣି ରାକ୍ଷସୀଏ ଉଠିଲେ ସକଳେ । ଜଳୁ ଆଣି ତାମ୍ରଭାଣ୍ଡ ଶୀଘ୍ର ଫିଟାଇଲେ ॥ ଦେଖିଲେ ସେ ଭାଣ୍ଡେ ଅଛି ଅପୂର୍ବ ବାଳକ । ଜାଣିପାରି ଗଣନାରେ ସବୁ କଥାପାକ ଯତନରେ ନେଇ ତହୁଁ ପାଳିଲେ ଶିଶୁକୁ । ପଞ୍ଚମ ବରଷ ସହୁଁ ଚଢୁଥିଲା ତାକୁ ॥ ପଢ଼ାଇଲେ ଜ୍ୟୋତିର୍ବିଦ୍ୟା ସକଳ ରାକ୍ଷସୀ । ଜାଣିଲା ସେ ତିନିପୁର କଥାପାକ ବସି ॥ ଗଣନା ବିଦ୍ୟାରେ ସେହୁ ହୋଇଲା ପାରଙ୍ଗମ । ପନ୍ଦର ବରଷ କ୍ରମେ କଲା ଅତିକ୍ରମ ॥ ରାକ୍ଷସୀଏ ରଖିଥିଲେ ଯେ ରାଜକୁମାରୀ । ଆନନ୍ଦରେ ତାହା ସଙ୍ଗେ ଦେଲେ ବିଭାକରି ॥ ବର ନାମ ମିହିର ସେ କନ୍ୟା ନାମ ଖନା । ରାକ୍ଷସୀଏ ଦେଇଥିଲେ କରଣ ଗଣନା ॥ ବିଭା ହୋଇ ବର କନ୍ୟା ରହିଲେ

ସୁଖରେ । କଥା ହେଲେ ଏକଣ୍ଢନେ ବସି ଏକାନ୍ତରେ ॥ ମିହିର ବୋଇଲା ଧନ ଶୁଣ ମୋ ବଚନ । କଏ ପିତା କଏ ମାତା କାହିଁ ଜନ୍ମ ସ୍ଥାନ ॥ ଜାଣିବ କପରି ଏହା ନୁହଇ କଳନା । ତାହା ଶୁଣି ମିହିରକୁ କହିଲା ସେ ଖନା ॥ ଆହେ ପ୍ରାଣନାଥ କପାଁ ଚିନ୍ତା ଏତେ କର । ଖଡ଼ି ଧରି ଗଣିଗଲେ ହୋଇ ଯିବ ସ୍ଥିର ॥ କିସ ଅଛି ଅଗୋଚର ଜ୍ୟୋତିଷ ବିଦ୍ୟାରେ । ପଢ଼ା ଶୁଣା ଲେଖ ହୋଇ ପଡ଼ୁଛ ଭ୍ରମରେ ॥ ବୁଝାଇଣ ଏହିପରି କହିବାରୁ ଖନା । ମିହିର ଜାଣିଲା ସବୁ କରିଣ ଗଣନା ॥ ପିତା ମାତା ଜନ୍ମଭୂମି ପଡ଼ିଗଲା ମନେ । ଖନା ଆଗେ ତହୁଁ ଯାଇ କହିଲା ଏସନେ ॥ ପିତା ମାତା ଜନ୍ମଭୂମି ଦେଖିବି କପରି । ଖନା ବୋଲେ ଆହେ ନାଥ ରହ ଦଣ୍ଡ ଧରି ॥ ମାହେନ୍ଦ୍ର ବେଳାରେ କାର୍ଯ୍ୟ ହୁଅଇ ସଫଳ । ଯିବା ଯେବେ ଗଣିକରି ଦେଖ ସେହି ବେଳ ॥ ମିହିର ସେ କଥାଶୁଣି ହୋଇଲେ ଜାଗ୍ରତ । ଖୋଜିଲେ ମାହେନ୍ଦ୍ର ଯୋଗ ସ୍ଥିର କରି ଚିତ୍ତ ॥ ପଡ଼ିଲା ସେ ବେଳ ପଛୁଁ ଦୁହେଁ ଯିବା ପାଇଁ । ବାହାରିଲେ ସେ କଥାକୁ ନ ଜାଣନ୍ତି କେହି ॥ ଜାଣିଲେ ସେ କଥା ସର୍ବ ରାକ୍ଷସୀଏ ହିଁ । କହିଲେ ସକଳେ ମିଳି ମିହିରଙ୍କୁ ଯାଇ ॥ ସ୍ୱଦେଶକୁ ଯିବା ମନ ହୋଇଲା ତୁମ୍ଭର । ଭଲ ହେଲା ଆନନ୍ଦରେ ଶୁଭେ ଯାତ୍ରା କର ॥ ରଖିଥିଲୁ ଆମ୍ଭେ ପୁତ୍ର କନ୍ୟା ରୂପେ ପାଳି । କଲ୍ୟାଣ କରୁଛୁଁ ତୋତେ ଦେଶେ ଯାଅ ଚଳି ॥ ମଙ୍ଗଳ ପାଞ୍ଚୁଛୁଁ ତୁମ୍ଭେ ପାଇବ ସୁଖ୍ୟାତି । ଜଗତରେ ରଟାଇବ ଅମର କୀରତି । ରାକ୍ଷସୀଙ୍କ ମଧ୍ୟେ ଥିଲା ବୃଦ୍ଧା ଅତି ଯେହୁ । ଜ୍ୟୋତିଷ ବିଦ୍ୟାରେ ଅଟେ ଧୁରନ୍ଧର ସେହୁ ॥ ଅନ୍ୟ ସବୁ ରାକ୍ଷସୀଙ୍କି କହେ ଆଜ୍ଞା ଦେଇ । ତୁମ୍ଭେମାନେ ଏ ଦୁହିଙ୍କି ଟେନ୍ୟ ନେବ ବହି ॥ ଏ ଜ୍ୟୋତିଷ ପୋଥିଯାକ ସଙ୍ଗେ ନେଇଥିବ । ସାଗର ଅପର ତଟେ ତାଙ୍କୁ ଛାଡ଼ିଦେବ ॥ ପରଖିବ

ସେହିଠାରେ ବିଦ୍ୟା ତାହାଙ୍କର । ଜ୍ଞାନ ହୋଇଥିବ ଯେବେ ଉତ୍ତମ ପ୍ରକାର ॥ ଏହି ସବୁ ପୋଥି ତେବେ ଆଣିବ ଫେରାଇ । ଜ୍ଞାନ ନୋହିଥିଲେ ତାହା ଆସିବନ୍ତି ହୋଇ ॥ ଏହା ଶୁଣି ରାକ୍ଷସିଏ ପୋଥିଯାକ ଧରି । ଶୂନ୍ୟମାର୍ଗେ ସେ ଦୁହିଙ୍କି ନେଲେ ବହି କରି ॥ ପ୍ରବେଶିଲେ ଅଳ୍ପକାଳେ ସିନ୍ଧୁ ଆରକୂଳେ । ବରକନ୍ୟା ଦୁହିଙ୍କୁ ସେ ତଳେ ବସାଇଲେ ॥ ବିଦ୍ୟା ପରଖିବା ପାଇଁ କରନ୍ତେ ବିଚାର । ଦେଖିଲେ ପ୍ରସବ କରେ ଗାଈଏ ଆଗର ॥ ମିହିରଙ୍କୁ ଅନାଇ ସେ ବୋଇଲେ ରେ ବାବୁ । ପଚାରୁଛୁ ଯାହା ଆମ୍ଭେ ସ୍ୱରୂପ କହିବୁ ॥ ପ୍ରସବିବ ଏହି ଧେନୁ ଯେବଣ ବାଛୁରି । ଅଟଇ କି ବର୍ଣ୍ଣ ତାର କହ ଗଣିକରି ॥ କହିଲେ ମିହିର ତାଙ୍କୁ ଗଣି ତତକାଳ । ଯେ ବାଛୁରି ଜନମିବ ସେ ହେବ ଶୁକଳ ॥ ସେ କଥାକୁ ଜାଣିପାରି ସରସ୍ୱତୀ ଦେବୀ । ଅଇଲେ ସେ ଅଲକ୍ଷିତେ ଏହି କଥା ଭାବି ॥ ମିହିର କହିବା କଥା ହେବ ଯେବେ ସତ୍ୟ । ରାକ୍ଷସୀଏ ନେଇ ଯିବେ ଏ ପୋଥି ସମସ୍ତ ॥ ଏପରି ପାଞ୍ଚି ସେ ଧେନୁ ଗର୍ଭରେ ପଶିଲେ । ବାଛୁରି ଶରୀରେ କଳା ବୋଳିଦେଇ ଗଲେ ॥ କଳାବର୍ଣ୍ଣ ହୋଇ ତହୁଁ ଜନ୍ମିଲା ବାଛୁରି । ବିସ୍ମିତଲେ ରାକ୍ଷସୀଏ ତାହା ଦେଖି କରି ॥ ମିହିରର ଜ୍ୟୋତିଷରେ ହୋଇ ନାହିଁ ଜ୍ଞାନ । ଏହା ଭାବି ପୋଥି ତାଙ୍କୁ କଲେ ଅରପଣ ॥ ଆପଣା ଦେଶରେ ଯାଇ ମିଳିଲେ ସକଳେ । ମନରେ ପାଞ୍ଚିଲେ ବସି ମିହିର ସେକାଳେ ॥ ଜ୍ୟୋତିଷ ବିଦ୍ୟାରେ ସବୁ ସତ ଘଟୁ ନାହିଁ । ଯଥାର୍ଥରେ କହିଥିଲି ଗଣିକରି ମୁହିଁ ॥ ହଣୁଥିଲା ଶୁକ୍ଳବର୍ଣ୍ଣ ହେଲା କଳାବର୍ଣ୍ଣ । ପୋଥିସବୁ ରଖିବାରେ କେଉଁ ପ୍ରୟୋଜନ ॥ ଏହା ଭାବି ପୋଥିଯାକ ଚିରିଲେ ମହୀର । ଲୁଟିଲା ସେ କାଳେ ଗାଈ ବାଛୁରିକୁ ତାର ॥ କଳା ଛୁଡ଼ି ଯାଇ ତହୁଁ ହେଲା ଶୁକ୍ଳବର୍ଣ୍ଣ । ତାହା ଦେଖି କହେ ଖନା ଶୁଣ ପ୍ରାଣଧନ ॥ ଗଣି

ଯାହା କହିଥିଲ ସତ୍ୟ ତା ଅଟଇ । ଦେଖ ଏବେ ବାହୁଣିଛି ଶୁକଳ ହଣଇ ॥ ତା ଶୁଣି ଆନନ୍ଦେ ଯାଇ ମିହିର ଦେଖିଲେ । ଯେତେ ଆଉ ପୋଥି ଥିଲ ତାକୁ ନ ଗଣିଲେ ॥ ଗଣିବାରେ ଏକ ଭାଗ ହୋଇଥିଲ ଶେଷ । ତିନି ଭାଗ ବାକି ଆଉ ରହିଲା ଜ୍ୟୋତିଷ ॥ କହିଲେ ମିହିର ତହୁଁ ବୁଝିଁ ସେ ଖନାକୁ । ପ୍ରାଣପ୍ରିୟେ ସ୍ଥିର କରି ଯିବା କେଉଁ ଠାକୁ ॥ ତାହା ଶୁଣି ମିହିରଙ୍କୁ ବୋଲଇ ସେ ଖନା । ପିତାମାତା କାହିଁଥିବେ କର ତା ଗଣନା ॥ ଗଣନା କରି ସେ ତହୁଁ କହିଲେ ଗୋ ପ୍ରିୟେ । କାନନେ ଅଛନ୍ତି ମୋର ପିତା ଏ ସମୟେ ॥ ବରାହ ଆଚାର୍ଯ୍ୟ ନାମ ଅଟଇ ତାଙ୍କର । ସର୍ବପଣ୍ଡିତ ସେ ଜ୍ଞାଣ ବିକ୍ରମାଦିତ୍ୟର ॥ ତାତ ଆଜ କହିଛନ୍ତି ନୃପଙ୍କ ଆଗରେ । ମୁଦି ଏକ ଆକାଶରୁ ପଡ଼ିବ ବନରେ ॥ ମଧ୍ୟାହ୍ନ ସମୟ ହେଲେ ପଡ଼ିବ ସେ ତହିଁ । ସତ୍ୟ ମିଥ୍ୟା ଏ କଥାକୁ ଜାଣିବାର ପାଇଁ ॥ ମିଳିଛନ୍ତି ରାଜା ଆଦି ସେ ବନେ ସରବେ । ବୋଇଲା ସେ ଖନା ତେବେ ଚାଲ ହେ ସେଠାବେ ॥ ଇଷ୍ଟ ଦେବତାଙ୍କୁ ସ୍ମରି ଦୁହେଁ ତହୁଁ ଗଲେ । କିଛିକାଳ ପରେ ସେହି ବନରେ ମିଳିଲେ । ବିକ୍ରମାଦିତ୍ୟଙ୍କୁ ଚିହ୍ନି ମିହିର ପଣ୍ଡିତ । ଆଶୀର୍ବାଦ କଲେ ସ୍ୱସ୍ତି କହି ଟେକି ହସ୍ତ । ବୋଇଲେ ନୃପତି ତୁମ୍ଭ ପରିଚୟ ଦିଅ । ମିହିର ବୋଇଲେ ଆମ୍ଭେ ବ୍ରାହ୍ମଣ ତନୟ ॥ ଜ୍ୟୋତିଷ ବିଦ୍ୟାରୁ କିଛି କରିଛୁଁ ପଠନ । କହିପାରୁ ଭୂତ ଭବିଷ୍ୟତ ବର୍ତ୍ତମାନ । ମୁଦ୍ରିକାଏ ଏ ବନରେ ପଡ଼ିବାର ପାଇଁ । ପଣ୍ଡିତଙ୍କ ସମାଜରୁ କହିଛନ୍ତି କେହି ॥ ଆସିଅଛୁ ତାହା ଶୁଣି ଦେଖିବା ଇଚ୍ଛାରେ । ଅବଧାନ କର ମୁହିଁ କଥାଏ ପଚାରେ ॥ କେଉଁ ଠାରେ ଆକାଶରୁ ମୁଦ୍ରିକା ପଡ଼ିବ । ଗଡ଼ି ଗଡ଼ି କେଉଁ ସ୍ଥାନେ ସ୍ଥିର ସେ ହୋଇବ ॥ ତଦନ୍ତୁ ସେ ମୋ ଆଗରେ ଗଣି ଖଡ଼ି ଧରି । କହିଲେ ବରାହ ତାହା ନ ପାରେ ମୁଁ କରି । ସ୍ଥିର କରି

କହ ତୁମ୍ଭେ ଜାଣିଅଛ ଯେବେ । ସେ କଥା ମିହିରଂ ଶୁଣି ଖଡ଼ି ଧରି ଜେବେ ॥ କରଣ ଗଣନା ତାଙ୍କୁ ଦେଖାଇଲେ ଯାଇ । ପଡ଼ିବ ଯେ ସ୍ଥାନେ ମୁଦ ସ୍ଥିର ହେବ ଯନ୍ତ୍ରୀ ॥ ଏ ବଚନ ଶୁଣି ସର୍ବେ ରାଜାଙ୍କ ସହିତେ । ବସିଲେ ସେଠାରେ ଜଗି ଦେଖିବା ନିମନ୍ତେ ॥ ଆକାଶରୁ ଏ ସମୟେ ମୁଦ୍‌ରିଏ [illegible] । ମିହିର କହିବା ସ୍ଥାନେ ରହିଲା ସେ ଗଡ଼ି ॥ ପଣ୍ଡିତ ସକଳ ଦେଖି ଧନ୍ୟବାଦ ଦେଲେ । ସଙ୍ଗତେ ବିକ୍ରମାଦିତ୍ୟ ତାଙ୍କୁ ଘେନି ଗଲେ ॥ ବସା ଦେଇ ରଖିବାକୁ ବରାହ କରନ୍ତେ । ବରାହ ଆଗୁସରି ଯାଇ କହିଲେ ଏକାନ୍ତେ ॥ ଆହେ ନୃପ ଆଜ୍ଞା ଦେଲେ ଏହାଙ୍କୁ ମୁଁ ନେଇ । ନିଜ ଘରେ ସୁବିଧାରେ ଆସିବି ରଖାଇ ॥ ନୃପ ଶୁଣି ଅନୁମତି ଦିଅନ୍ତେ ତାହାଙ୍କୁ । ସନ୍ତୋଷେ ବରାହ ଡାକି ନେଲେ ମିହିରଙ୍କୁ ॥ ଖନା ସହ ସେ ମିହିର ତାଙ୍କ ସଙ୍ଗେ ଗଲେ । ବାଟରେ ବରାହ ଏହି କପଟ ଭାବିଲେ ॥ ଏ ପଣ୍ଡିତ ଥିଲେ ଲୋପ ହେବ ଆମ୍ଭ ଯଶ । ଅଟଇ ଉଚିତ ଯ୍ବାକୁ କରିବାର ନାଶ ॥ ଅତି ଶୁଭ ବେଳ ଦେଖି ବରାହ ପଣ୍ଡିତ । କରିଥିଲେ ପୂର୍ବେ ବାସଗୃହେକ ନିର୍ମିତ । ଅର୍ଦ୍ଧରାତ୍ରେ ଗୃହ ଡାକେ ପଡ଼ିବ ପଡ଼ିବ । ବରାହ, ପଣ୍ଡିତ ତାହା ନ ପାରନ୍ତି ଭାବି ॥ ବସ୍ତୁରନ୍ତି ଭାଜ ତାହା ପଡ଼ିବ ଉପରେ । ସେହେତୁ ସେ ନ ପଶନ୍ତି ସେ ଘର ଭିତରେ ॥ ରଖାଇଲେ ମିହିରଙ୍କୁ ସେ ଗୃହରେ ନେଇ । ବସ୍ତୁରିଲେ ଘର ଭାଜ ମରୁ ଆଜ ଏହି ॥ ମିହିର ସେ ଘରେ ରହି ଖନା ସହିତରେ । ରନ୍ଧନ ଭୋଜନ ସାରି ଶୋଇଲେ ନିଶାରେ ॥ ଅର୍ଦ୍ଧରାତ୍ର ହୋଇବାରୁ ଉଚ୍ଚେ ବାରମ୍ବାର । ପଡ଼ିବ ପଡ଼ିବ ବୋଲି ଡାକ ଦେଲା ଘର ॥ ମିହିର ସେ ଡାକ ଶୁଣି ଗଣି ସ୍ଥିରକଲେ । କାରଣ ତହିଁର ବୁଝି ଉତ୍ତରେ କହିଲେ ॥ ଆମ୍ଭେ ଦୁହେଁ ଶୋଇଥିବା କୋଣ ଗୋଟି ଛାଡ଼ି । ଅନ୍ୟ ତିନି କୋଣରେ ତୁ

ଅକାଡ ହୋ ପଡ଼ । ଏହାପରେ ଅନୁମତି ଦେଅନ୍ତେ ମିହିର । ରତ୍ନ ପଡ଼ି ଥିବା କୋଣେ ପୂର୍ଣ୍ଣ ହେଲା ଘର ॥ ପ୍ରଭାତରୁ ଉଠି ସେହି ଆଶ୍ଚର୍ଯ୍ୟ ବରାହ । ରାତିରେ କି ହେଲା ବୋଲି କରଣ ସନ୍ଦେହ ॥ ମିହିରଙ୍କ ବସାଘର ପାଶେ ପ୍ରବେଶିଲେ । ଗଦା ଗଦା ରତ୍ନ ପଡ଼ି ଥିବାର ଦେଖିଲେ ॥ ନିଶ୍ଚିନ୍ତେ ମିହିର ଶୋଇଥିଲେ ନିଦ୍ରାବଶେ ॥ ବରାହ ତାହାଙ୍କୁ ଦେଖି ଭାବିଲେ ମାନସେ । ବୋଧହୁଏ ଏ ପୁରୁଷ ଦେବଅଂଶେ ଜାତ । ଏହା ଭାବି ରତ୍ନ ଧରି ଗଲେ ସେ ତ୍ୱରିତ ॥ ସକାଳ ହୋଇଲା ଜାଣି ଉଠିଲେ ମିହିର । ସ୍ନାନ ଅନ୍ତେ ପୂଜାବିଧି ସାରିଲେ ତାଙ୍କର ॥ ବିକ୍ରମ ରାଜନ ତେଣେ ନିତ୍ୟକର୍ମ ସାରି । ସଭା କଲେ ଆନନ୍ଦରେ ପଣ୍ଡିତଙ୍କୁ ଧରି ॥ ବରାହ ମିହିର ଦୁହେଁ ଏହି ସମୟରେ । ପ୍ରବେଶିଲେ ବିକ୍ରମଙ୍କ ପଣ୍ଡିତ ସଭାରେ ॥ ଦୁଇ ସିଦ୍ଧ ଜ୍ୟୋତିର୍ବିଦ ପଣ୍ଡିତଙ୍କୁ ଦେଖି । ଯଥାବିଧି ମାନ୍ୟ ନୃପ କଲେ ହସ୍ତ ଟେକି ॥ ସନ୍ତୋଷ ମନରେ ତାଙ୍କୁ ବରାହ ମିହିର । ଆଶୀର୍ବାଦ କଲେ ଦୁହେଁ ପ୍ରସାରିଣ କର ॥ ନୃପ ଇଙ୍ଗିତରେ ଦୁହେଁ ବସିଲେ ଆସନେ । ନାନା ଅର୍ଥ ଯୁକ୍ତ ତର୍କ କଲେ ସଭାଜନେ ॥ ଏ ଉତ୍ତାରୁ ଯାହା ହେଲା ଶୁଣ ନୃପବର । ଉଭା ହୋଇ କର ଯୋଡ଼ି ବିନୟେ ମିହିର ॥ ପଚାରିଲେ ବରାହଙ୍କୁ ଆହେ ସୁପଣ୍ଡିତ । କେତୋଟି ତୁମ୍ଭର କନ୍ୟା କେତେଗୋଟି ପୁତ୍ର ॥ କେତୋଟି ଜୀବିତଛନ୍ତି ବାହୁଡିଲେ କେତେ । ଶୁଣିବାକୁ ଶ୍ରଦ୍ଧା ମୋର କହନ୍ତୁ ହେ ମୋତେ ॥ ମିହିରଙ୍କ କଥା ଶୁଣି ପଣ୍ଡିତ ବରାହ । କହି ଆରମ୍ଭିଲେ ମାତ୍ର ଉଠୁଥାଏ କୋହ । ଜନ୍ମିଥିଲା ଜାଣ ମୋର ଗୋଟିଏ ନନ୍ଦନ । ଲଗ୍ନ ତାର ଧରି କଲି ଦଶା ନିରୂପଣ ॥ ପରମାୟୁ ଦଶବର୍ଷ ହେବାରୁ ତାହାର । ମନଦୁଃଖେ କଲି ପୁଣ ମାନସେ ବିଚାର ॥ ଦଶବରଷରେ ଯେବେ ଏ ପୁତ୍ର ମରିବ । ସେତେବେଳେ ଶୋକ ନିଶ୍ଚେ ଗୁରୁତର ହେବ ॥ ଶ୍ରେୟ

ଅଟେ ଆଜଠାରୁ କରିଦେବା ତ୍ୟାଗ । ଏହା ଭାବି ସେ ପୁତ୍ରକୁ ନେଇ ଗଲେ ବେଗ ॥ ତାମ୍ର ଘଣ୍ଟେ ଭରିଦେଲ ସାଗରେ ଭସାଇ । ଶୋକ ବଢ଼େ ସେ କଥାକୁ ପଚ୍ଛର ହେ ନାହିଁ ॥ ମିହିର କହିଲେ ଶୁଣି ବନସ୍ତେ ବଚନ । ଯେଉଁ ଲଗ୍ନ ଧରିଥିଲ କର ତା ଗଣନ ॥ ଜାତ ଯେବେ ସେ ଲଗ୍ନରେ ହୋଇଛି କୁମର । ପରମାୟୁ ଶତେ ବର୍ଷ ହୋଇବ ତାହାର ॥ ବରାହ ସେ କଥା ଶୁଣି ବିସ୍ମିତ ହୋଇଲେ । ପୁଣି ଲଗ୍ନ ଦେଖି ସତ୍ୟ ଅଟଇ ଜାଣିଲେ ॥ ମିହିର ବୋଇଲେ ଯେବେ ଗଣା ଅଟେ ସତ୍ୟ । ଜାଣ ତୁମ ପୁତ୍ର ନିଶ୍ଚେ ଅଛିଟି ଜୀବିତ ॥ କେଉଁଠାରେ ଅଛି ଏବେ ଗଣି କର କହ । ତାହା ଶୁଣି ଗଣି ଗଣି ବୋଇଲେ ବରାହ ॥ ଅଛି ନିକଟରେ ବୋଲି କହଇ ଗଣନା । ମିହିର କହିଲେ ପୁଣି କର ହେ ଠିକଣା ॥ କଏ ତୁମ୍ଭ ପୁତ୍ର କାହିଁ ଅଛି କହିଦିଅ । ତାହା ଶୁଣି ବରାହ ଯେ ଗଣି ନିଃସନ୍ଦେହ ॥ ଜାଣିପାରି ସବୁ କଥା ହୋଇ ଆନନ୍ଦିତ । ତୁହି ମୋର ପୁତ୍ର କହି କଲେ କୋଳାଗତ । ଆନନ୍ଦରେ ବେନି ନେତ୍ରୁ ଅଶ୍ରୁ ଜାତ ହେଲ ॥ ପିତାଙ୍କ ଚରଣେ ତହୁଁ ମିହିର ନମିଲ ॥ ସଭା ମଧ୍ୟେ ପରିଚୟ ପ୍ରବ ଇତିହାସ । ମିହିର ସକଳ କହି କରିଲେ ସନ୍ତୋଷ ॥ ବିକ୍ରମ ଆଦିତ୍ୟ ରାଜା ପଣ୍ଡିତଙ୍କ ତୁଲେ । ସକଳ ବୃତ୍ତାନ୍ତ ଶୁଣି ଆନନ୍ଦ ଲଭିଲେ ॥ ସଭା ଶେଷ ହେଲ ସର୍ବେ ଗଲେ ଯେଝାପୁର । ରାଜାଠାରୁ ପୁରସ୍କାର ପାଇଲେ ମିହିର ॥ ପୁତ୍ର ପୁତ୍ରବଧୂ ଘେନି ବରାହ ସୁଖରେ ॥ ରହିଲେ ବିକ୍ରମ ଥିଲେ ଏହି ପରକାରେ ॥ ଗ୍ରାହକ ପଣରେ ରଖି ବହୁତ ପଣ୍ଡିତ । ପାଳିଥିଲେ ଧନରତ୍ନ ଦେଇ ଅପ୍ରମିତ ॥ ହୋଇବ ଗ୍ରାହକ ଯେବେ ତୁମ୍ଭେ ତାଙ୍କ ପରି । ତେବେ ବସ ସିଂହାସନେ ଭୋଜ ଦଣ୍ଡଧାରୀ ॥ ଏହା କହି ପୁତ୍ତଳିକା ସ୍ୱର୍ଗେ ଚଳିଗଲ । ଜଗନ୍ନାଥ କହେ ଆଜ ଗୋଟିଏ ରହିଲ ॥

# ଦ୍ୱାତ୍ରିଂଶ ପୁତ୍ତଳୀର କଥା

ଏଥିଉପରି ପ୍ରତିଦିନ ଭୋଜରାଜ ଯାନ୍ତି । ବସିବାକୁ ସିଂହାସନେ ଯତ୍ନ କରୁଥାନ୍ତି ॥ ଦିନକରେ ମିଳିଲେ ସେ ସିଂହାସନ ପାଶେ । ବତିଶ ପୁତ୍ତଳି ଦେଖି ମୃଦୁହାସେ ଭାଷେ ॥ ସବୁଦିନେ କଥା ଶୁଣି ଆହେ ଭୋଜରାଜ । ଫେରି ଯାଉଅଛ ପୁଣି କି ବିଚାର ଆଜ ॥ ଏକାଳୀ ମୁଁ ଅଛି ମୋହଠାରୁ କଥା ଟିଏ । ଶୁଣି ସୁବିଚାର କର ମୁହିଁ ସ୍ୱର୍ଗେ ଯାଏ ॥ ଏହା କହି ବୋଇଲା ସେ ବିକ୍ରମ ନୃପତି । ଏହି ସିଂହାସନେ ବସି ପ୍ରଜା ପାଳୁଥାନ୍ତି ॥ ଦୂରଦେଶୀ ବେପାରୀଏ ଶଗଡରେ ଲଦି । ଆଣନ୍ତି ଯା ବଳିଗଲେ ବିକ୍ରମ ଉଲଦି ॥ ଟଙ୍କା ଦେଇ କିଣି ନେଇ ତାହାର ସମ୍ପଦ । ବିଦାୟ ଦିଅନ୍ତି ଶୀଘ୍ର ଲଭେ ସେ ଆନନ୍ଦ ॥ ତାହା ଶୁଣି ଦୂରଦେଶୀ ଏକ ମହାଜନ । ଘେନାଇଲା ସଙ୍ଗତରେ ବହୁତ ରତନ ॥ ନିଶ୍ଚୟ ବିକ୍ରୟ ହେବ ବିଚାରି ମନରେ । ମିଳିଲା ଉତ୍କଳ ଗଡ଼ ନିକଟ ହାଟରେ ॥ ଦଇବରେ କେହି ତାର ନୋହିଲା ବିକ୍ରୟ । ଦିନ ଶେଷେ ଶୁଣି ନୃପ କଲେ ତାହା କ୍ରୟ ॥ ଉଚିତ ମୂଲ୍ୟ ପାଇ ସେ ରତ୍ନ ବଣିଜାର । ବିକ୍ରମଙ୍କ କୀର୍ତ୍ତି କଲା ସର୍ବତ୍ର ପ୍ରଚାର ॥ ହୀନ ବ୍ରାହ୍ମଣେକ ଥିଲା ଏକଇ ଦେଶରେ । ଯେତେ ଅର୍ଜିଲେ ହେଁ ଅନ୍ନ ନାହିଁ ତାର ଘରେ । ଦୁଃଖମନେ ସେ ବ୍ରାହ୍ମଣ ବସି ଦେବୀ ପାଶ । [illegible] ମନ୍ତ୍ର ଜପ ସ୍ତୋତ୍ର କଲା ଅହର୍ନିଶ ॥ ସାତ ଦିନ ସାତ ରାତି ଉପବାସ କଲା । ତା ଦେଖି ସେ ଦେବୀଙ୍କର ଦୟା ଜାତ ହେଲା ॥ ନିଜ ରୂପ ଦେଖାଦେଇ ଜଗତର ମାତ । ବୋଇଲେ କଲଗି ଦ୍ୱିଜ ଜପୁଅଛୁ ମନ୍ତ୍ର ॥ ପ୍ରସନ୍ନ ହୋଇଲି କି କସ ଇଚ୍ଛା ତୋର । କରଯୋଡ଼ି ବିପ୍ରବର ଦିଅଇ ଉତ୍ତର ॥ ଦରିଦ୍ର ଦଶାରୁ ମୋର ଛଡ଼ାଅ ଗୋ ମାତ । ଭଗବତୀ ବୋଲେ

ବୃଥା ହେଉ ତୁ ଭାବିତ ॥ ଯାହା ତୋର ଲଲାଟରେ ଲେଖିଛି ଦଇବ ॥ କେବେ କି ହୋ ସେହି ଲେଖା ଅନ୍ୟଥା ହୋଇବ ॥ କିନ୍ତୁ ଦୈନ୍ୟ ଦେଖି ଦେବୀ ହେଲେ କୃପାବଶ । ସରଜନା କଲେ ଏକ ଦରିଦ୍ର ପୁରୁଷ ॥ ହୋଇଅଛି ସେ ପୁରୁଷ ଲୌହରେ ନିର୍ମିତ । କୁତ୍ସିତ ଶରୀର ତାର ବଦନ ବିକୃତ ॥ ସେ ପ୍ରତିମାଟିକୁ ଦେବୀ ଦେଲେ ବ୍ରାହ୍ମଣକୁ । କହିଲେ ରେ ବିପ୍ର ଯିବ ବିକିପାରୁ ଏହାକୁ ॥ ଲକ୍ଷେ ମୁଦ୍ରା ମୂଲ୍ୟ ଦେଇ କେହି ଯେବେ ନେବ । ଦରିଦ୍ର ଅବସ୍ଥା ତୋର ନିଶ୍ଚେ ଘୁଞ୍ଚିବ ॥ ଏହା କହି ଭଗବତୀ ଅନ୍ତର୍ଦ୍ଧାନ ହେଲେ । ଦରିଦ୍ର ପୁରୁଷ ଧରି ବିପ୍ରବର ଗଲେ ॥ ଘରେ ରଖି ମନ ମଧ୍ୟେ କରେ ସେ ବିଚାର । କିମରି ବିକ୍ରୟ ହେବ ପ୍ରତିମାଟି ମୋର ॥ ଯାହାକୁ ଦେଖାଏ ନେଇ ଦେଖିଲେ ସେ ତାକୁ । ଦୂର ହୁଅ କେହି ଚଢ଼େ ନ ନିଏ ପାଶକୁ ॥ କେହି ବୋଲେ ପ୍ରତିମାର ବୃହିଁଲେ ବଦନ । ଲକ୍ଷ୍ମୀ ଛାଡ଼ିଯିବେ ସେଠୁ ହେବ ଧନ ହାନ ॥ ବୁଲି ବୁଲି ଶୁଣିଲା ସେ ବଣିକ ମୁଖରୁ । ବିକ୍ରମ ଆଦିତ୍ୟ ହାଟେ ବିକି କରିପାରୁ । ସେ କଥା ଶୁଣିଣ ବିପ୍ର ହୋଇ ହୃଷ୍ଟମନ । ପ୍ରତିମାଟି ଧରି ଗଲା ସେଠାକୁ ବହନ ॥ କେହି କେହି ମୂର୍ତ୍ତି ଦେଖି ପଚାରିଲେ ତାକୁ । ପ୍ରତିମାର ଗୁଣ କିସ କହ ହେ ଆମ୍ଭକୁ ॥ ବ୍ରାହ୍ମଣ ବୋଇଲା ତୁମ୍ଭେ ଶୁଣ ମନଦେଇ । ଦରିଦ୍ର ପୁରୁଷ ନାମ ଏହାର ଅଟଇ ॥ ଲକ୍ଷେ ଟଙ୍କା ମୂଲ୍ୟ ଅଟେ ନୁହେଁ କିଛି ଊଣା । ଘରେ ଥିଲେ ଲକ୍ଷ୍ମୀଙ୍କର କମିବ କରୁଣା ॥ ଏହା ଶୁଣି କିଣାଳିଏ ଛାଡ଼ି ପଳାଇଲେ । ଦିନ ଶେଷେ ହାଟପାଳ ଦେଖିଲା ସେଠାରେ ॥ ପଚାରି ସେ ସବୁ କଥା ଶୁଣି ବୁଝି ଗଲା । ବିକ୍ରମାଦିତ୍ୟଙ୍କ ପାଶେ ଯାଇ ଜଣାଇଲା ॥ ବିକ୍ରମ ଆଦିତ୍ୟ ରାଜା ସେ କଥାକୁ ଶୁଣି । ବିପ୍ରକୁ ଡକାଇ ଲକ୍ଷେ ମୁଦ୍ରା ଦେଲେ ଗଣି ॥ ଦରିଦ୍ର ମୂର୍ତ୍ତିକୁ ନେଇ ରଖିଲେ ଗୃହରେ । ଧୈର୍ଯ୍ୟ

ଧନ ଚିନ୍ତା କିଛି ନ କଲେ ମନରେ ॥ ରାତେ ଏକା ହୋଇ ଦ୍ୱାର ପିଟାଇ ବସିଲେ । କାହାକୁ ସେ ନିଜ ପାଖେ ରଖାଇ ନ ଦେଲେ ॥ ପ୍ରଥମ ପ୍ରହରେ ଲକ୍ଷ୍ମୀ ହୋଇଲେ ବାହାର ॥ ସତ୍ତମ ଆଦିତ୍ୟ ନାମ ପଚାରିଲେ ତାର ॥ ଶୁଣି ସେ ରମଣୀ ତାଙ୍କୁ କହିଲେ ବଚନ । ଆହେ ନୃପ ମୂର୍ଖ ତୁମ୍ଭ ରାଜଲକ୍ଷ୍ମୀ ଜାଣ ॥ ରଖିବାରୁ ଘରେ ଆଣି ଦରିଦ୍ର ପୁରୁଷ । ଚାଲି ଯାଉଛି ମୁଁ ଏଥି ନ କରିବି ବାସ ॥ ମୋତେ ଯେବେ ରଖିବାକୁ ଇଚ୍ଛା ଅଛି ତୋର । ଦରିଦ୍ର ପୁରୁଷ ମୂର୍ତ୍ତି ଶୀଘ୍ର ଦୂର କର ॥ ସତ୍ତମ ଆଦିତ୍ୟ ଶୁଣି ଲକ୍ଷ୍ମୀଙ୍କ ବଚନ । ବୋଇଲେ ମା ଯାଅ ଅବା ରହ ତୁମ୍ଭ ମନ ॥ ଫିଙ୍ଗି ଦେଇ ନ ପାରେ ମୁଁ କଦାପି ପିତୁଳା । ଶୁଣି ଏହା ରାଜଗୃହ ଛାଡ଼ିଲେ କମଳା ॥ ତାଙ୍କ ପରେ ପରେ ଏକ ସୁନ୍ଦର ପୁରୁଷ । ନୃପତି ସମ୍ମୁଖେ ଆସି ହୋଇଲେ ପ୍ରବେଶ । ପଚାରିଲେ ରାଜା ତୁମ୍ଭେ କିଏ କହ ମୋତେ । ପୁରୁଷ ବୋଲନ୍ତି ଆମ୍ଭେ ସତ୍ୟ ଅଟୁଁ ସତେ ॥ ଦରିଦ୍ର ପିତୁଳା ତୁମ୍ଭେ ଆଣି ରଖିବାରୁ । ରାଜଲକ୍ଷ୍ମୀ ଛାଡ଼ିଗଲେ ତୁମ୍ଭର ନଗରୁ ॥ ଲକ୍ଷ୍ମୀ ଛଡ଼ା ସ୍ଥାନେ ଆମ୍ଭେ ନ ପାରିବୁ ରହି । ତାହା ଶୁଣି ଧୈର୍ଯ୍ୟ ଧରି ସତ୍ତମ କହଇ ॥ ଯାଅ ଅବା ରହ ତୁମ୍ଭେ ତୁମ୍ଭର ଇଚ୍ଛାରେ । କଦାପି ମୁଁ ପିତୁଳାକୁ ବରଜି ନ ପାରେ ॥ ତାହା ଶୁଣି ପଳାଇଲେ ସେ ନଗରୁ ସତ୍ୟ । ଦୟା ଆସି ନାରୀ ରୂପେ ହେଲେ ଉପସ୍ଥିତ ॥ ପଚାରିଲେ ଦେଖି ତାଙ୍କୁ ସତ୍ତମ ମିହିର । କିଏ ତୁମ୍ଭେ ଯାଉଅଛ [illegible] ମୋହର । ସେ ବୋଇଲେ ଜାଣ ନୃପ ଅଟଇ ମୁଁ ଦୟା । କହୁଅଛି ତୁମ୍ଭ ପାଶେ ନ କରଣ ମାୟା ॥ ଶୁଣେ ମୂର୍ଖ, ସତ୍ୟ ବିନା ନ ରହିବ ନୃପ । ସତ୍ୟ ଗଲେ ଯିବ ମୂର୍ଖ କହିଲି ସ୍ୱରୂପ ନମସ୍କାର କରି ନୃପ କହିଲେ ତାହାଙ୍କୁ । ଯାହା ଇଚ୍ଛା କର ମୁହିଁ ନ ଛାଡ଼ିବି ମୂର୍ତ୍ତିକୁ ॥ ନରପତି କଥା ଶୁଣି ଦୟା ପଳାଇଲେ ।

ଧବଳ ପୁରୁଷ ବେଶେ ଧର୍ମ ପଡ଼୍ଡ଼ଲେ ॥ ପରିଚୟ ଦେଇ ପୁଣି କାରଣ କହାଇ । ଧର୍ମ ଚଳିଗଲେ ନୃପ କାତର ନ ହୋଇ ॥ ଧୈର୍ଯ୍ୟ ଧରି ନ ଛାଡ଼ିଲେ ଦରିଦ୍ର ପୁରୁଷ । ତା ପରେ ପୁରୁଷ ବେଶେ ପଡ଼୍ଡ଼ଲେ ଯଶ ॥ ଯଶଙ୍କର ପରିଚୟ ବିକ୍ରମ ପାଇଲେ । ଚଳିଯିବା କାରଣ ସେ ପଚ୍ଛ ବୁଝିଲେ ॥ ତଥାପି ସାହସେ ନିଜ ବଚନ ରଖିଲେ । ଦରିଦ୍ର ପୁରୁଷ ମୂର୍ତ୍ତି ମୋହନ ନ ଛାଡ଼ିଲେ ॥ ତାହାପରେ ପୁଂରୁଷେକ ହୋଇଲେ ପ୍ରବେଶ ॥ ତାଙ୍କୁ ମଧ୍ୟ ପୂର୍ବପରି ପୁଚ୍ଛିଲେ ନରେଶ ॥ ବୋଇଲେ ସେ ସାହସ ମୁଁ ତୁମ୍ଭର ଦେହରେ । ରହିଥାଏ ହେ ବିକ୍ରମ ରଜ ସବୁବେଳେ ॥ ଲକ୍ଷ୍ମୀ ସତ୍ୟ ଦୟା ଧର୍ମ ଯଶ ଆଦି ଗଲେ । ଶେଷେ ଯାଏ ଥିଲି ଏବେ ଯାଉଛି ମୁଁ ଭଲେ ॥ ବିକ୍ରମ ଆଦିତ୍ୟ ଶୁଣି କରି ନମସ୍କାର । ବୋଇଲେ ଉଚିତ ଏହା ଅଟେ କି ତୁମ୍ଭର ॥ ଦରିଦ୍ର ପୁରୁଷ ରଖି ଛାଡ଼ିଲେ ସକଳ । ଏଡ଼େ ବଡ଼ କାର୍ଯ୍ୟ କଲି ଲଭ କାହା ବଳ ॥ ଛାଡ଼ ନାହିଁ ତୁମ୍ଭଙ୍କୁ ମୁଁ ଜାଣିଛ ତ ଏହା । ଛାଡ଼ିବ କପରି ମୋତେ କହ ଏବେ ତାହା ॥ ସାହାସ ଏ କଥା ଶୁଣି ଲଜ୍ଜିତ ହୋଇଲେ । ନ ଯାଇ ସେ ନରପତି ଶରୀରେ ରହିଲେ ॥ ନିଶ୍ଚିନ୍ତ ହୋଇଲେ ରଜା ସାହସର ବଳେ । ଲକ୍ଷ୍ମୀ ଧର୍ମ ଦୟା ଆଦି ବାହୁଡ଼ିଲେ ଖରେ ॥ ସବ ଗୁଣେ ବିଭୂଷିତ ହେଲେ ପୂର୍ବପରି । ସେ ବିକ୍ରମ ସାହସକୁ ଥିବାରୁଟି ଧରି ॥ ତୁମ୍ଭେ ତାଙ୍କପରି ଯେବେ ସୁସାହସୀ ହେବ । ଏ ବତିଶ ସିଂହାସନ ଉପରେ ବସିବ ॥ ଏହା କହି ପୁତ୍ତଳିକା ଗଲେ ସ୍ୱର୍ଗପୁରେ । ଭୋଜରଜା ବାହୁଡ଼ିଲେ ମନ ବିରସରେ ॥ ବତିଶ ପୁତ୍ତଳି କଥା ହୋଇଲା ସମ୍ପୂର୍ଣ୍ଣ ଜଗନ୍ନାଥ କହେ କର ଦୁର୍ଗା ନାମ ଧ୍ୟାନ ॥

---

ଜୟକୃଷ୍ଣ କଳିକା ପ୍ରେସ କଟକ-୧
୧୯୭୫